# କଳାହାଣ୍ଡି

## କଳା ଓ ସଂସ୍କୃତି



ମହାବୀର ସାଂସ୍କୃତିକ ଅନୁଷ୍ଠାନ
ଭବାନୀପାଟଣା

Digitized by srujanika@gmail.com

# କଳାହାଣ୍ଡି କଳା ଓ ସଂସ୍କୃତି



ମହାବୀର ସାଂସ୍କୃତିକ ଅନୁଷ୍ଠାନ
ଭବାନୀପାଟଣା, କଳାହାଣ୍ଡି ।

Digitized by srujanika@gmail.com

# କଳାହାଣ୍ଡି କଳା ଓ ସଂସ୍କୃତି

**ସଂପାଦନା :**

ସଂପାଦନା ମଣ୍ଡଳୀ ( ରଜତ ଜୟନ୍ତୀ ପାଳନ କମିଟି )



ପ୍ରକାଶକ :

ଶ୍ରୀ ନୀଳକଣ୍ଠ ବେହେରା



ମୁଦ୍ରଣ :

ଅଖିଳ ପ୍ରେସ
ମହାବୀରପଡା
ଭବାନୀପାଟଣା, କଳାହାଣ୍ଡି,



ପ୍ରଚ୍ଛଦ :

ଶିଳ୍ପୀ ମୁକୁନ୍ଦ ରେଡ୍ଡି



ସର୍ବସତ୍ତ୍ୱ :

ମହାବୀର ସାଂସ୍କୃତିକ ଅନୁଷ୍ଠାନ
ଭବାନୀପାଟଣା, କଳାହାଣ୍ଡି



ପ୍ରଥମ ସଂସ୍କରଣ : ୧୯୮୯

ଦ୍ୱିତୀୟ ସଂସ୍କରଣ : ୧୯୯୨



ମୂଲ୍ୟ : ଟ. ୩୦/– ( ତିରିଶି ଟଙ୍କା ମାତ୍ର )



Digitized by srujanika@gmail.com

# କଳାହାଣ୍ଡି କଳା ଓ ସଂସ୍କୃତି

## ✻ ସୂଚୀପତ୍ର ✻



Digitized by srujanika@gmail.com

# ସୌଜନ୍ୟ ସଂପାଦକଙ୍କ କଲମରୁ:-

ଓଡ଼ିଆ ଭାଷା ଓ ଲିପିର ଏକ ବିଧିବଦ୍ଧ ରୂପରେଖ ଗଜପତି କପିଳେନ୍ଦ୍ର ଦେବଙ୍କ କାଳରୁ ଆତ୍ମପ୍ରକାଶ କଲା । ଓଡ଼ିଆ ଜାତିର ଆଦିକବି ସାରଳାଦାସ ଙ୍କ ମହାଭାରତ ତାହାର ଏକ ପରିପୂର୍ଣ୍ଣ ପ୍ରକାଶ । ଅବଶ୍ୟ ଏଥି ପୂର୍ବରୁ ଓ ଏହାର ପରେ ବି ପ୍ରାକୃତ ଓ ଅପଭ୍ରଂଶ ଭାଷାଦେଇ ଲୌକିକ ଭାଷାମାନଙ୍କର କ୍ରମ ବିବର୍ତ୍ତିତ ରୂପ ଲୋକ ସାହିତ୍ୟ ମଧ୍ୟରୁ ପ୍ରତ୍ୟକ୍ଷ କରାଯାଇ ପାରେ । ସେହି ଦୃଷ୍ଟିରୁ, ସାରଳା ଦାସଙ୍କ ମହାଭାରତ ସେହିକାଳର ଲୌକିକ- କଥିତ ଭାଷାର ଲିଖିତ ରୂପଛଡ଼ା ଅନ୍ୟକିଛି ନୁହେଁ । ତେଣୁ ସାରଳା ମହା-ଭାରତର ଭାଷା କେବଳ ପୂର୍ବ ଓଡ଼ିଶାର ଭାଷାକୁ ଧରିନାହିଁ ବରଂ ଭୋଜପୁରୀ, କୋଶଳୀ ପ୍ରାକୃତ ଆଦିର ନିକଟବର୍ତ୍ତୀ । ଓଡ଼ିଆ ଭାଷା ରାଢ଼ ଓ ମହାକୋଶଳ ଦେଇ ଆସିଥିବା ଆର୍ଯ୍ୟ ଭାଷା ସହିତ ସ୍ଥାନୀୟ ଦ୍ରାବିଡ଼ ଓ କଳିଙ୍ଗ ଭାଷାର ତ୍ରୀବେଣୀ ସଂଗମ । ଏହିପରି ପ୍ରେକ୍ଷୀରେ ଦକ୍ଷିଣ କୌଶଳ ବା ପଶ୍ଚିମ ଓଡ଼ିଶା ଦେଇ ଦୀର୍ଘ ଦୁଇହଜାର ବର୍ଷରୁ ମହା-ନଦୀ କୂଳଦେଇ ଏହି ଅଞ୍ଚଳର ସଂସ୍କୃତି ଓ ସଭ୍ୟତାର ଧାରା ଓଡ଼ିଶାର ସଂସ୍କୃତି, ଧର୍ମ, କଳାସ୍ଥାପତ୍ୟ, ଭାଷା, ଲିପି ଓ ସାହିତ୍ୟକୁ କେତେ ପରିପୁଷ୍ଟ କରିଛି ; ପୁଣି ଓଡ଼ିଆ ସଂସ୍କୃତି ଓ ସାହିତ୍ୟରେ ଏହି ପଶ୍ଚିମାଞ୍ଚଳୀୟ ସଂସ୍କୃତିଟି କେମିତି ସ୍ପଷ୍ଟବାରି ହୋଇପଡ଼ୁଛି ସେ ସବୁର ଅନୁଧ୍ୟାନ ପାଇଁ ଅବକାଶ ଥିଲେ ସୁଦ୍ଧା ତଦ୍‌ବିଦ୍ ମାନଙ୍କ ଦ୍ୱାରା ବିଧିବଦ୍ଧ ଉଦ୍ୟମ ହୋଇନାହିଁ କହିଲେ ଚଳେ ।

ଓଡ଼ିଶାରେ ସୋମ, ଗଂଗ, ସୂର୍ଯ୍ୟ, ଭୋଇବଂଶ ଆଦି ରାଜବଂଶ ଶାସନ କରିଆସୁଥିଲା-ବେଳେ ଓଡ଼ିଶାର ଧର୍ମ-ସଂସ୍କୃତିର ମୂଳାଧାର ଶ୍ରୀ ଜଗନ୍ନାଥଙ୍କ ନାମରେ ହିଁ ରାଜ୍ୟଟିକୁ ଶାସନ କରୁଥିଲେ । ରାଜ୍ୟ ପରିବ୍ୟାପ୍ତଥିଲା ଗଂଗାଠାରୁ ଗୋଦାବରୀ । ଧର୍ମୀୟ ସଂହତି ହିଁ ଜାତୀୟ ସଂହତିର ସ୍ଥିତି ସ୍ଥାପକତା ରଖିଥିଲା । ଐତିହାସିକମାନେ କହନ୍ତି ମହା-କୋଶଳର ମହାନଦୀର ଉଦ୍‌ଗମ ସ୍ଥଳରୁ ଅନତି ଦୂରରେ ; ଯୋଙ୍କନଦୀ ଓ ମହାନଦୀର ମିଳନସ୍ଥଳରେ-ଶବରୀ ନାରାୟଣ ଯେଉଁଠି ପୂଜା ପାଆନ୍ତି ଜଗନ୍ନାଥ ସେଇଠାରୁ ଉଦ୍‌ଭବ ହୋଇଥିଲେ । ପଣ୍ଡିତ ନୀଳକଣ୍ଠ ଓ ସୁରେନ୍ଦ୍ର ମହାନ୍ତି ଆଦି ପ୍ରବୁଦ୍ଧ ସାହିତ୍ୟକମାନେ ଏହି କଥାର ଗୁରୁତ୍ୱ ଉପଲବ୍ଧି କରିଛନ୍ତି । ମଧ୍ୟ ଭାରତୀୟ ସ୍ଥାନୀୟ ଲୋକପରଂପରା, ଧର୍ମ ଓ ଚଳଣି ବି ଏହି କଥାକୁ ସମର୍ଥନ କରେ । ଏହି ଭୂମିରୁ ଏବେ ମଧ୍ୟପ୍ରଦେଶର ମହା-ସମୁନ୍ଦ ( ମହାସମୁଦ୍ର ? ମହୋଦଧି ? ) ମହାନଦୀ ସଭ୍ୟତାର ଧାରା ଉତ୍କଳଖଣ୍ଡକୁ ପ୍ଲାବିତ କରିଛି । ଏଠି ଆମେ ନିଚ୍ଛକ ଐତିହାସିକତାକୁ ଗୁରୁତ୍ୱ ଦେବାନାହିଁ- ବରଂ ଧର୍ମୀୟ

Digitized by srujanika@gmail.com

ସଂହତିର ସ୍ଥାପକତାକୁ ଓ ଲୋକ ପରଂପରାର ବିଶ୍ୱାସକୁ ଗୁରୁତ୍ୱ ଦେବା । ଜଗନ୍ନାଥ ଆର୍ଯ୍ୟ ଆଦିବାସୀ ସଂସ୍କୃତିର ଏକ ସମନ୍ୱୟ ଓ ସଂଶ୍ଲେଷଣ ପ୍ରକ୍ରିୟାରୁ ଉଦ୍ଭୂତ। ଏହି ସମନ୍ୱୟର ମୂଳ ଧାର୍ମିକ ଓ ରାଜନୈତିକ । ଷୋଡ଼ଶ ସପ୍ତଦଶ ଶତାବ୍ଦୀରେ ପଶ୍ଚିମ ଓଡ଼ିଶାରେ ଦଧିବାମନଙ୍କ ପୂଜା ଏହି ସଂହତିର ଅନ୍ୟଏକ ସଙ୍କେତ । ଏହି ସୂତ୍ରରୁ ଓଡ଼ିଆ ଭାଷା, ଧର୍ମ, ସାହିତ୍ୟ ଓ ସଂସ୍କୃତିର ବ୍ୟାପ୍ତି ତଥା ଆଦାନପ୍ରଦାନକୁ ବୁଝିବାକୁ ହେବ । ବିଶେଷତଃ ମହାକୋଶଳ ଓ ମହାକାନ୍ତାରର ମହାଭାବ ଏହି ପରଂପରାକୁ ଏପରି ଆପଣେଇ ନେଇଛି ଯେ ତାହାର ପ୍ରକୃଷ୍ଟ ପ୍ରମାଣ ଏହି ଦଧିବାମନ ପୂଜା । ପୁଣି ଲକ୍ଷ୍ୟଣୀୟ ଯେ, କଳାହାଣ୍ଡିର ୫ମ ଶତାବ୍ଦୀରେ ସ୍ତମ୍ଭେଶ୍ୱରୀଙ୍କ ପୂଜନ ପରବର୍ତ୍ତୀକାଳରେ ସୁଭଦ୍ରାରୂପେ ପୂଜା ପାଇବାର ସଂଯୋଗ ଓ ସମନ୍ୱୟ ଏହି ପରଂପରାକୁ ଦୀର୍ଘକାଳରୁ ବାନ୍ଧିରଖିଛି । ଧର୍ମୀୟ ପରଂପରାକୁ ଯେପରି ନିଜର କରିଛି— ନିଜର ମାତୃଭାଷା ସ୍ଥାନୀୟ ଓଡ଼ିଆ ଭାଷା ହେଲେ ସୁଦ୍ଧା ଷ୍ଟାଣ୍ଡାର୍ଡ ଓଡ଼ିଆରେ ଏହି ଅଞ୍ଚଳ ଯେପରି ସାହିତ୍ୟ ସୃଷ୍ଟିର ସୁବିସ୍ତୃତ ପରଂପରା ସୃଷ୍ଟି କରିଛି ତାହା ବାସ୍ତବରେ ବିସ୍ମୟକର । ନାଟକ ଓ ସଂଗୀତ କ୍ଷେତ୍ରରେ ତଥା ସମାଜର କେତେକ ଚଳଣିରେ ଏହି ସାଂସ୍କୃତିକ ସମନ୍ୱୟର ସଂକେତ ପୃଷ୍ଠଭୂମିରେ ରହିଛି ଓଡ଼ିଆ ସଂସ୍କୃତିର ପ୍ରତିଫଳନ । ଏହି ସବୁ ଦୃଷ୍ଟିରୁ ତଥା ସାଂସ୍କୃତିକ ଆନ୍ତଃକ୍ରିୟା ଦୃଷ୍ଟିରୁ ପଶ୍ଚିମ ଓଡ଼ିଶା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଉଲ୍ଲେଖନୀୟ କୀର୍ତ୍ତିର ଅଧିକାରୀ ।

କବି ପ୍ରତାପରାୟଙ୍କ ଶଶୀସେଣା କାବ୍ୟ, ଖଡ଼ିଆଳର କବି ଚୈତନ୍ୟ ଦାସଙ୍କ ରଚନାବଳୀ, କବି ଯୁଗଦାସଙ୍କ ନୃସିଂହ ଚରିତ, ଭୀମଭୋଇଙ୍କ ଅମ୍ଳାନର ରଚନାବଳୀ, କବି ବ୍ରଜରାଜଙ୍କ ଭଞ୍ଜୟ କାବ୍ୟାଦର୍ଶାନୁସାରୀ ରଚନାବଳୀ ପ୍ରକୃତି କବି ଗଙ୍ଗାଧରଙ୍କ ସାରସ୍ୱତ ସୃଷ୍ଟି, ନାଟ୍ୟକାର ବାରବିକ୍ରମଙ୍କ ଜାତୀୟବାଦୀ ନାଟ୍ୟକୃତି ପ୍ରମୁଖ ଓଡ଼ିଆ ବାଣୀ ମନ୍ଦିରର ଅମ୍ଳାନ ପ୍ରଦୀପ ସଦୃଶ୍ୟ ଚିର ଜାଜ୍ୱଲ୍ୟମାନ ।

ଏହି ପୃଷ୍ଠ ଭୂମି ଓ ପରଂପରାରୁ ଓଡ଼ିଆ ସାହିତ୍ୟ ସାଧନା କ୍ଷେତ୍ରରେ କଳାହାଣ୍ଡିର କବି ଲେଖକଙ୍କ ଭୂମିକା ବିଗ୍ରଣୀୟ । ଅଷ୍ଟାଦଶ ଶତାବ୍ଦୀରୁ ଏବେ ପର୍ଯ୍ୟନ୍ତ ଏଠିକାର ସାହିତ୍ୟିକଙ୍କ ରଚନାବଳୀ ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିଅଛି । ଏହାର ତିନୋଟି ଧାରା ରହିଅଛି । ପ୍ରଥମଟି ହେଉଛି ଏହି ଅଞ୍ଚଳର ଲୋକ ସାହିତ୍ୟ । ଏହାର ପୃଷ୍ଠପୋଷକ ସମଗ୍ର ସମାଜ । ଲୋକ ଜୀବନର ସ୍ପନ୍ଦନ ଏହି ଲୋକ ମୌଖିକ ପରଂପରାରେ ନିହିତ । ଅଯତ୍ନ ବର୍ଦ୍ଧିତ ହେଲେ ହେଁ ଏହାର ସମାହିତି ଲୋକ ହୃଦୟରେ ଓ ବାଣୀରେ ।

ଲିଖିତ ସାହିତ୍ୟର ପୃଷ୍ଠ ପୋଷକତା ଓ ପୃଷ୍ଠଭୂମି ସର୍ବଦା ଦୁଇଟି ବିଭବକୁ ଆଶ୍ରୟ କରି ବର୍ଦ୍ଧିତ । ଓଡ଼ିଆ ସାହିତ୍ୟର ବିକାଶ ଓ ଅଭିବୃଦ୍ଧି ଏହି ଦୁଇ ବିଭବକୁ ଅବଲମ୍ବନ କରିଅଛି । ପ୍ରଥମଟି ହେଲା କୌଣସି ଦରବାରୀ ସାହାଯ୍ୟ କିମ୍ବା ପୃଷ୍ଠପୋଷକତାର ଅପେକ୍ଷା

Digitized by srujanika@gmail.com

ନରଖି କିମ୍ବା ସେଥି ସଂପର୍କରେ ଅବହିତ ନହୋଇ ନିଜ ଉପଲବ୍ଧି ଓ ହୃଦୟର ଆବେଗାନୁଭୂତି ଦ୍ୱାରା ଅନୁରୁଦ୍ଧ ହୋଇ ରଚନା କରିବା । ଅନ୍ୟଟି ରାଜ ଦରବାର ଦ୍ୱାରା ପୃଷ୍ଠପୋଷକତା ପାଇ ସାହିତ୍ୟ ସୃଷ୍ଟି କରିବା । କଳାହାଣ୍ଡିର ସାହିତ୍ୟ ସାଧନା କ୍ଷେତ୍ରରେ ବି ଏହି ପ୍ରମୁଖ ଧାରାଟି ସ୍ପଷ୍ଟ ହୋଇଉଠେ । ପ୍ରାକ୍‌ସ୍ୱାଧୀନ କାଳରୁ କବି ଚୈତନ୍ୟଦାସ, ହରିଦାସ, ଦାମୋଦର ପାତ୍ର, ଗଦାଧର ମିଶ୍ର, ମନୋହର ମେହେର, ପରଶୁରାମ ମୁଣ୍ଡ ପ୍ରମୁଖ ଏହି ଶ୍ରେଣୀର କବି ଯେଉଁମାନେ ସାହିତ୍ୟକୁ ଜୀବନର ଏକ ଅଙ୍ଗରୂପେ ଗ୍ରହଣ କରିଛନ୍ତି । ଏମାନଙ୍କ ରଚନାରେ ସାହିତ୍ୟ ବିଳାସ ରୂପେ ପରିଗୃହୀତ ନୁହେଁ ବରଂ ଏହା ଜୀବନର ସକଳ ଦିଗକୁ ଆଲୋକିତ ଓ ପରିପ୍ରକାଶିତ କରିଛି । ଦ୍ୱିତୀୟଟି ହେଲା ପୃଷ୍ଠପୋଷକତା ପ୍ରାପ୍ତ ସାହିତ୍ୟ । ଭାରତୀୟ ଶିଷ୍ଟ ପରଂପରାର ଶିକ୍ଷା, ସଂସ୍କୃତି, ଧର୍ମ, ଆଦି ସକଳଶାସ୍ତ୍ର କେବଳ ସମାଜର ବ୍ରାହ୍ମଣ ଓ ରାଜନ୍ୟବର୍ଗ ଠାରେ ଉପଲବ୍ଧ ଥିଲା । ମୁଷ୍ଟିମେୟ ବୁଦ୍ଧିଜୀବୀଙ୍କୁ ଅବଲମ୍ବନ କରି ରାଜା କିମ୍ବା ବ୍ରାହ୍ମଣ ଶାସନମାନଙ୍କରେ ପ୍ରଥା ଓ ପରଂପରାନୁକ୍ରମେ ଯେଉଁ ବିଦ୍ୟାଧ୍ୟୟନ କାବ୍ୟ, ପୁରାଣ ଶାସ୍ତ୍ର ଚର୍ଚ୍ଚା ହେଉଥିଲା । ତାହା ଉତ୍ତରାଧିକାର ସୂତ୍ରରେ ଗଢ଼ିଆସୁଥିଲା । ସମସ୍ତ ସୁବିଧା ସୁଯୋଗ ପାଇ ଏହି ସ୍ରଷ୍ଟାମାନେ ସାହିତ୍ୟ ଶାସ୍ତ୍ରାଦି ରଚନାରେ ମନୋନିବେଶ କରି ନିଜ ସର୍ଜନା ଶକ୍ତିର ପରିଚୟ ଦେଉଥିଲେ । ନିଜେ ରାଜାମହାରାଜାମାନେ ବି କାବ୍ୟକବିତା ଲେଖି ଅମରକୀର୍ତ୍ତି ଅର୍ଜ୍ଜିବାର ଅଭୀପ୍ସା ରଖୁଥିଲେ । କବି ସମ୍ରାଟ ଉପେନ୍ଦ୍ରଙ୍କ ପ୍ରଭାବରେ ଓଡ଼ିଶାରେ ଅନେ ବହୁତ ଏହିପରି ରାଜବଂଶ ସାହିତ୍ୟରେ ସାଧନାରେ ନିଜକୁ ବ୍ରତୀ କରିଥିବାର ଜଣାଯାଏ । ମହାନ୍ ପରଂପରାର ଅନୁକରଣରେ ଅନେକ ଅନୁକାରୀ ପ୍ରତିଭା ରାଜଦରବାରକୁ କେନ୍ଦ୍ରକରି ସୃଷ୍ଟି ହେଉଥିଲେ । ସଂସ୍କୃତ ଓ ଓଡ଼ିଆ କାବ୍ୟନାଟକ ସଙ୍ଗୀତ ନୃତ୍ୟ ଆଦିର ଚର୍ଚ୍ଚା ଏହି ରାଜନ୍ୟ ପରଂପରାମାନଙ୍କ ଦ୍ୱାରା ଏକ ଦରବାରୀ ଅନୁଷ୍ଠାନରୂପେ ପୃଷ୍ଠପୋଷକତା ପାଇ ଆସୁଥିଲା । ଏହି ପୃଷ୍ଠଭୂମିରୁ କଳାହାଣ୍ଡିର ସାହିତ୍ୟ ସାଧନାର ଅୟମାରମ୍ଭ ।

କଳାହାଣ୍ଡି, ଖଡ଼ିଆଳ, ଲାଞ୍ଜିଗଡ଼, ମଦନପୁର–ରାମପୁର, ଜୟପାଟଣା ଆଦିର ରାଜା ଓ ଜମିଦାରମାନେ ସାହିତ୍ୟ ସଙ୍ଗୀତ ଚର୍ଚ୍ଚାକୁ ନିଜ ନିଜ ଦରବାରୀ ଅନୁଷ୍ଠାନ ରୂପେ ପ୍ରତିଷ୍ଠା କରିଥିଲେ । କଳାହାଣ୍ଡି ମହାରାଜା ଶ୍ରୀ ଉଦିତ୍ ପ୍ରତାପ ଦେବ ( ୧୮୫୩-୧୮୮୧ ) ନିଜ ରାଜ୍ୟରେ ଶିକ୍ଷା ଓ ସାହିତ୍ୟର ପ୍ରଚାରପାଇଁ ଗଞ୍ଜାମ ଓ ସମ୍ବଲପୁର ଅଞ୍ଚଳରୁ ବ୍ରାହ୍ମଣ ଅଣାଇ ସେମାନଙ୍କୁ ଭୂମିବୃତ୍ତି ଦେଇ ରଖିଥିଲେ । ମୁଖ୍ୟତଃ ଏହି କାଳରୁ କଳାହାଣ୍ଡିରେ ସାହିତ୍ୟ ସର୍ଜନାର ଆନୁଷ୍ଠାନିକ ଉନ୍ମୁଖତା ଦେଖାଗଲା । ଏହି ଦରବାରରେ ନିଯୁକ୍ତ ପଣ୍ଡିତଙ୍କ ଦ୍ୱାରା ଖଡ଼ିଆଳର ରାଜକବି ବ୍ରଜରାଜଙ୍କ ଶିକ୍ଷା ଓ ସାହିତ୍ୟ ଶାସ୍ତ୍ରାଦି ଅଧ୍ୟୟନର ସୂତ୍ରପାତ

Digitized by srujanika@gmail.com

ହୋଇଥିଲା । ମହାରାଜା ଉଦିତ ପ୍ରତାପ ତଥା ତାଙ୍କରାଣୀ ଆଶାକୁମାରୀ ଉଭୟେ ବିଦ୍ୱତା ଅର୍ଜନ କରିଥିଲେ ।

ଖଡ଼ିଆଳର ରାଜା ବ୍ରଜରାଜ ସିଂହଦେବ ରୀତିଯୁଗୀୟ ଅସ୍ତରାଗର ଅନ୍ତିମ ଲୋହିତ କିରଣ ସେ ବେଳାକରେ ଦ୍ୱିତୀୟ ଉପେନ୍ଦ୍ର ଭଞ୍ଜ ରୂପେ ଖ୍ୟାତଥିଲେ । ଖ୍ରୀ ୧୮୮୩ ରେ ସେ ଖଡ଼ିଆଳ ଦରବାରରେ ଖଡ଼ିଆଳ ସାହିତ୍ୟ ସମିତି ସ୍ଥାପନ କରିଥିଲେ । ଏହାର ଆଭିମୁଖ୍ୟ ଥିଲା ସାହିତ୍ୟ ଓ ସଙ୍ଗୀତ ଚର୍ଚ୍ଚା । ଓଡ଼ିଶାରେ ଜାତୀୟତା ଜାଗରଣର ଶୁଭ ସଙ୍କେତ ବ୍ରଜ-ରାଜ ପାଇଥିଲେ ସୁଦ୍ଧା ସେ ରୀତିଯୁଗୀୟ କାବ୍ୟାଦର୍ଶର ନିର୍ମୋକ ମଧ୍ୟରୁ ମୁକ୍ତି ପାଇ ପାରିନଥିଲେ । କିନ୍ତୁ ତାଙ୍କ ପୁତ୍ର ନାଟ୍ୟକାର ବୀରବିକ୍ରମ ଏହି ପରିବର୍ତ୍ତନରେ ନିଜକୁ ପୂର୍ଣ୍ଣ ସମର୍ପଣ କରିଥିଲେ । ଉତ୍କଳସମ୍ମିଳନୀରେ ବୀରବିକ୍ରମଙ୍କ ସଂପୃକ୍ତି ତଥା ଓଡ଼ିଆ ନାଟକର ଉନ୍ମେଷ କାଳରେ ତାଙ୍କ ଭୂମିକା, ଜାତୀୟବାଦୀ ଓ ସଂସ୍କାରଧର୍ମୀ ନାଟକ ଲେଖି ତାକୁ ମଞ୍ଚସ୍ଥ କରିବାରେ ଉଲ୍ଲେଖଯୋଗ୍ୟ । ଏହି ନାଟକ ସବୁ ତଥା ତାଙ୍କ କାର୍ଯ୍ୟକଳାପ ଖଡ଼ିଆଳ ପରି ଏକ ଉପାନ୍ତ ହିନ୍ଦୀଭାଷୀ ଅଞ୍ଚଳରେ ଓଡ଼ିଆ ଜାଗରଣର ପ୍ରଦୀପ ପ୍ରଜ୍ୱଳିତ କରି ରଖିଥିଲା । ବୀରବିକ୍ରମଙ୍କ କାଳରେ ତାଙ୍କ ପୂର୍ବଜ ବ୍ରଜରାଜଙ୍କ ସମୟର ସାହିତ୍ୟକାର ମାନଙ୍କ ରଚନାରେ ; ଖଡ଼ିଆଳ ଅଞ୍ଚଳ ବାଣୀ ଆରାଧନାର ବନ୍ଦନାରେ ମୁଖର ହୋଇ-ଉଠିଥିଲା ।

ଖ୍ରୀ ୧୯୨୦ରୁ ରାମପୁର ଜମିଦାର ଦୁର୍ଗାମାଧବ ପ୍ରସାଦ ସିଂହ ଦେଓଙ୍କ 'ଚନ୍ଦ୍ରମଣି ରଙ୍ଗମଞ୍ଚ' ନିର୍ମାଣ, ନାଟକରଚନା ତଥା ଅର୍ଦ୍ଧଶତାବ୍ଦୀକାଳ ଶତାଧିକ ନାଟକ ମଞ୍ଚାୟନ କଳାହାଣ୍ଡି ନାଟ୍ୟକଳାର ବିକାଶରେ ଏକ ଉଲ୍ଲେଖଯୋଗ୍ୟ ଅବଦାନ । ନିଜେ ରାଜା ଜଣେ ନାଟ୍ୟ-କାର ରୂପେ ତଥା ତଦୀୟ ଦୁର୍ଗବାସୀ ମଞ୍ଚଶିଳ୍ପୀ ରୂପେ ଏହି ଅଞ୍ଚଳରେ ନାଟ୍ୟପରଂପରା ସୃଷ୍ଟି କରିଥିଲେ ।

ଆଲୋଚ୍ୟ କାଳରେ ସାହିତ୍ୟ, ସଂଗୀତ ଓ ନାଟକର ଏକ ବିଦଗ୍ଧ ପୃଷ୍ଠପୋଷକ ରୂପେ ଲାଞ୍ଜିଗଡର ରାଜା ମାହେଶ୍ୱରୀ ପ୍ରସାଦ [illegible] ଭୂଷଭୂତ ହୁଅନ୍ତି । ତାଙ୍କ ସାହିତ୍ୟାନୁରାଗ ଓ ପୃଷ୍ଠପୋଷକତାର ପ୍ରମାଣ ତତ୍କାଳୀନ ଓଡ଼ିଆ ପତ୍ରପତ୍ରିକାରେ ତଥା ତଦୀୟ ସାହାଯ୍ୟ ପ୍ରାପ୍ତ ସାହିତ୍ୟକଙ୍କ ବିବରଣୀରୁ ଉପଲବ୍ଧ । ସେ ୧୯୧୭ ମସିହାରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ନାରୀଦର୍ପଣ ପୁସ୍ତକର ମୁଦ୍ରଣଭାର ବହନ କରିଥିଲେ । ୧୯୨୫ରେ ଏହି ରାଜାଙ୍କ ଦ୍ୱାରା କଳାହାଣ୍ଡି ହାଇସ୍କୁଲର ଶିକ୍ଷକ ଧର୍ମାନନ୍ଦ ତ୍ରିପାଠୀଙ୍କ ଦ୍ୱାରା ରଚିତ ପ୍ରକୃତବନ୍ଧୁ ନାଟକ ଲାଞ୍ଜିଗଡ଼ ଦୁର୍ଗରେ ମଞ୍ଚସ୍ଥ ହୋଇଥିଲା । କଟକର 'ଉତ୍କଳ ସାହିତ୍ୟ ସମାଜ' ଅନୁଷ୍ଠାନରେ ବର୍ଷର ଅଭିନୀତ ଶ୍ରେଷ୍ଠ ନାଟକ ପାଇଁ ଏହି ରାଜା "ଲାଞ୍ଜିଗଡ ପୁରସ୍କାର" ସ୍ୱରୂପ ଟ ୧୦୦/–ରଖିଥିଲେ । କବି ଶେଖର ଚିନ୍ତାମଣିଙ୍କ ଅନେକ ପୁସ୍ତକର

Digitized by srujanika@gmail.com

ମୁଦ୍ରଣଙ୍କର ସେ ବହନ କରିଥିଲେ । କଳିଙ୍ଗଗଡର ଐତିହ୍ୟ ଓ ପ୍ରକୃତିକୁ ଉପଜୀବ୍ୟ କରି କବି ଚିନ୍ତାମଣି ଏକ ଖଣ୍ଡକାବ୍ୟ ତାଙ୍କ ଗ୍ରନ୍ଥାବଳୀରେ ସନ୍ନିବେଶିତ କରିଛନ୍ତି ।

ମହାରାଜା ଉଦିତ ପ୍ରତାପଙ୍କ ରାଜତ୍ୱକାଳରୁ ଅଧୁନାତନ ସମୟ ପର୍ଯ୍ୟନ୍ତ ନାଟକ ସାହିତ୍ୟ ଓ ଇତିହାସ ଚର୍ଚ୍ଚା ପାଇଁ କଳାହାଣ୍ଡି ରାଜାଙ୍କ ଉଦ୍ୟମ ଅବିସ୍ମରଣୀୟ । ଖ୍ରୀ ୧୯୪୨ରେ କଳାହାଣ୍ଡି ମହାରାଜା ପ୍ରତାପ କେଶରୀ ଦେଓ ଭବାନୀପାଟଣା ଠାରେ ନନ୍ଦହାର ଥିଏଟର ନିର୍ମାଣ କରିଥିଲେ । ଏହି ଥିଏଟରରେ ଓଡ଼ିଶାର ପ୍ରଖ୍ୟାତ୍ ନାଟ୍ୟ ନିର୍ଦ୍ଦେଶକ ବଳରାମ ଦାନାଙ୍କ ନିର୍ଦ୍ଦେଶନା ଦେଉଥିଲେ । ଆଧୁନିକ ମଞ୍ଚ କୌଶଳ ପ୍ରସ୍ତୁତ କରାଇ ସେ ଅନେକ ଐତିହାସିକ, ପୌରାଣିକ ଓ ସାମାଜିକ ନାଟକ ମଞ୍ଚସ୍ଥ କରାଇଥିଲେ । ଏହି ସମୟର ଅଭିନେତାଗଣ ଉଦୟନାଥ ନନ୍ଦ, ବାସୁଦେବ ବେହେରା, ଅନନ୍ତ ପ୍ରଧାନ, ନୃସିଂହ ଚରଣ ମିଶ୍ର, ଆଦଲଖାଁ, ସୋମନାଥ ମିଶ୍ର, ଅସରଫ ଅଲିଖାଁ, ଗଙ୍ଗାଧର ମହାପାତ୍ର ପ୍ରମୁଖଙ୍କ ସଂପୃକ୍ତି ଏହି ଥିଏଟରରେ ଉଲ୍ଲେଖ ଯୋଗ୍ୟ । ଏହି ନାଟ୍ୟ ପରଂପରାର ପ୍ରବାହମାନଧାରା ନାଟ୍ୟରଶ୍ମି ପ୍ରଫୁଲ୍ଲ କୁମାର ରଥଙ୍କ ନାଟ୍ୟସୃଷ୍ଟି ତଥା ମୁକ୍ତମଞ୍ଚ ଆନ୍ଦୋଳନ ପର୍ଯ୍ୟନ୍ତ ସଂପ୍ରସାରିତ ।

ଖ୍ରୀ ୧୯୪୩ରେ କଳାହାଣ୍ଡି ମହାରାଜା ପ୍ରତ୍ନତତ୍ତ୍ୱ ବିଭାଗ ଖୋଲି ଐତିହାସିକ କେଦାରନାଥ ମହାପାତ୍ରଙ୍କୁ ଅଧ୍ୟକ୍ଷରୂପେ ନିଯୁକ୍ତ କରିଥିଲେ । ଏହି କାଳରେ ସେ ବ୍ରଜମୋହନ ସାହିତ୍ୟ ସମିତି ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ କଳାହାଣ୍ଡି, ଷ୍ଟେଟ୍ ଛାପ ଖାନା ବସାଇ 'କଳାହାଣ୍ଡି' ପତ୍ରିକା ପ୍ରକାଶ କଲେ । କଳାହାଣ୍ଡି ଜିଲ୍ଲାର ପ୍ରତ୍ନତାତ୍ତ୍ୱିକ ଗୁରୁତ୍ୱ ଉପଲବ୍ଧି କରି ସେ ପାଟଣା ମହାରାଜାଙ୍କ ସହିତ ମିଶି 'କଳିଙ୍ଗ ଐତିହାସିକ ଗବେଷଣା ପରିଷଦ' ଗଠନକରି ତାର ମୁଖପତ୍ର ରୂପେ Journal of the Kalinga Historioal Research Society ପ୍ରକାଶକଲେ । ଏହାର ପ୍ରଥମ ସଂଖ୍ୟା ତା ୩–୯–୧୯୪୬ ରେ ବାହାରିଥିଲା । ଭାରତ ତଥା ଓଡ଼ିଶାର ବହୁ ବିଶିଷ୍ଟ ଐତିହାସିକ ଏହି ପତ୍ରିକାରେ ଲେଖା ଦେଉଥିଲେ ।

ଏହି କାଳରେ ବ୍ରଜମୋହନ ସାହିତ୍ୟ ସମିତି ଆଧୁନିକ ଓଡ଼ିଆ ସାହିତ୍ୟ ସର୍ଜନା କ୍ଷେତ୍ରରେ ଯେଉଁ ଭୂମିକା ଗ୍ରହଣ କରିଥିଲେ । ତାହା ଉଲ୍ଲେଖନୀୟ । ଏହି ସମିତିର ବିଶିଷ୍ଟ ସଦସ୍ୟ ରୂପେ କବି ଓ ଲେଖକ ଯଥା ପଣ୍ଡିତ ଖଗେଶ୍ୱର ରଥ ବାଚସ୍ପତି, ଲୋକନାଥ ମହାପାତ୍ର, ମାର୍କଣ୍ଡ ରଥ, ଦେଓ୍ୱାନ୍ ଉମାଚରଣ ଦାସ, ରାମଚନ୍ଦ୍ର ଦାସ, ପରଶୁରାମ ମୁଣ୍ଡ, ସୋମେଶ୍ୱର ବେହେରା, କୃଷ୍ଣ ବେହେରା, ରାମକୃଷ୍ଣ ରଥ, ଧର୍ମାନନ୍ଦ ତ୍ରିପାଠୀ, ଚିନ୍ତାମଣି ପଟ୍ଟନାୟକ, ମହେନ୍ଦ୍ର ପଟ୍ଟନାୟକ ଭୁବନେଶ୍ୱର ବେହେରା ପ୍ରମୁଖ ରହିଥିଲେ । ଏହି ଲେଖକଙ୍କ

Digitized by srujanika@gmail.com

ମଧ୍ୟରୁ କତିପୟ ପ୍ରାଚୀନ କାବ୍ୟାଦର୍ଶାନୁଯାୟୀ ରଚନାରେ ବ୍ରତୀ ହୋଇଥିଲେ ହେଁ ଅଧିକାଂଶ ସଦସ୍ୟ ଆଧୁନିକ ଓଡ଼ିଆ ଗଳ୍ପ, କବିତା, ଉପନ୍ୟାସ ଓ ନାଟକାଦି ରଚନା କରୁଥିଲେ । ଏମାନଙ୍କ ରଚନା ତେଣୁ ପାରମ୍ପରିକ ଦରବାରୀ କାବ୍ୟଚର୍ଚ୍ଚା ମୁଖ୍ୟ ଉପଜୀବ୍ୟ ନହୋଇ ଯୁଗୋପଯୋଗୀ ଚେତନା ଦ୍ୱାରା ଅନୁପ୍ରାଣିତ ହୋଇଥିଲା । ଏହି ସମିତିରେ ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ସର୍ବଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ପରମାନନ୍ଦ ଆଚାର୍ଯ୍ୟ, ସୁଧାକର ପଟ୍ଟନାୟକ, ବିଚ୍ଛନ୍ଦ ପଟ୍ଟନାୟକ, ବୈକୁଣ୍ଠନାଥ ପଟ୍ଟନାୟକ, କାଳିନ୍ଦୀ ଚରଣ ପାଣିଗ୍ରାହୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଚିନ୍ତାମଣି ମହାନ୍ତି, ଶ୍ରୀଧର ଶତପଥୀ, ଚିନ୍ତାମଣି ଆଚାର୍ଯ୍ୟ, ସତ୍ୟନାରାୟଣ ରାଜଗୁରୁ, ରାଜକିଶୋର ରାୟ, ମାୟାଧର ମାନସିଂହ, ହରିହର ମହାପାତ୍ର ପ୍ରମୁଖ କବି ଓ ଲେଖକମାନେ ସାମ୍ବତ୍ସରିକ ଉତ୍ସବ ମାନଙ୍କରେ ଯୋଗଦାନ କରୁଥିଲେ । ଏହି ସମିତି ସାହିତ୍ୟିକଙ୍କ ଉତ୍କୃଷ୍ଟ ରଚନା ମୁଦ୍ରଣ ଓ ପ୍ରକାଶନ ସାହିତ୍ୟିକଙ୍କୁ ସମ୍ବର୍ଦ୍ଧନା ତଥା ଲେଖକଙ୍କୁ ପୁରସ୍କାରାଦି ଦେବାର ପରମ୍ପରା ରଖିଥିଲା ।

ପ୍ରାକ୍-ସ୍ୱାଧୀନ କାଳୀନ କଳାହାଣ୍ଡିରେ ସାହିତ୍ୟ ସଙ୍ଗୀତ ଇତିହାସ ନାଟକାଦି ଚର୍ଚ୍ଚାର ଗୁଣାତ୍ମକତା ଏହିପରି ଉନ୍ନତ ପରିଦୃଷ୍ଟ ହୋଇଥିଲା । କିନ୍ତୁ ରାଜତନ୍ତ୍ରଶାସନ ହେତୁ ତଥା କଳାହାଣ୍ଡି ଦେଶୀୟ ରାଜ୍ୟ ହେତୁ ଏଠି ଭାରତର ସ୍ୱାଧୀନତା ଆନ୍ଦୋଳନ ତଥା ସମ୍ବଲପୁର ଦେଶମିଶ୍ରଣ ଆନ୍ଦୋଳନ କାଳରେ ନିଷ୍କ୍ରିୟ ରହିଥିବା ଯୋଗୁଁ ଏହା ଓଡ଼ିଶାର ତତ୍କାଳୀନ ବହୁ ଜନନାୟକଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ରାଜତନ୍ତ୍ର ଶାସନର ଦୁର୍ଲଂଘନୀୟ ପ୍ରଭାବ ହେତୁ ଏଠିକାର ଜନଚେତନା ସ୍ୱାଧୀନତାର ଦୁରନ୍ତ ଡ଼ାକରେ ପ୍ରବୁଦ୍ଧ ଜାଗ୍ରତ ହୋଇ ପାରିନଥିଲା । ଅବଶ୍ୟ, ରାମପୁର ଜମିଦାର, ଖଡ଼ିଆଳ ରାଜ୍ୟର ବୀରବିକ୍ରମ ଓ ଶିବନାରାୟଣ, ଲକ୍ଷ୍ମଣ ପଟ୍ଟନାୟକ, ଆପୁଡ଼ୁ ସାହୁ ତଥା ସଂଘମିତ୍ରାଦେବୀ ପ୍ରମୁଖ ସ୍ୱାଧୀନତା ଓ ସଂସ୍କାର ପାଇଁ ଆଜୀବନ ସଂଗଠନାତ୍ମକ ଓ ଆନ୍ଦୋଳନାତ୍ମକ କାର୍ଯ୍ୟରେ ନିଜକୁ ନିୟୋଜିତ କରି ଏହି ଅଞ୍ଚଳରେ ଜନଚେତନାକୁ ଉଦ୍‌ବୁଦ୍ଧ କରିଥିଲେ ।

ବର୍ତ୍ତମାନ କାଳରେ ଖଡ଼ିଆଳ ମଧ୍ୟପ୍ରଦେଶାନ୍ତର୍ଗତ ଥିବାରୁ ତଥା ଏହା ଓଡ଼ିଆ ସାରସ୍ୱତ ସାଧନାର ମୁଖ୍ୟ ପ୍ରାଣକେନ୍ଦ୍ର ଥିବାରୁ ଭାଷା ସୁରକ୍ଷାପାଇଁ ଏଠାରେ ପ୍ରବଳ ଆନ୍ଦୋଳନ ହୋଇଥିଲା । ପଣ୍ଡିତ ଗୋପବନ୍ଧୁ, ନୀଳମଣି ବିଦ୍ୟାରତ୍ନ ପ୍ରମୁଖ ଏହି ଅଞ୍ଚଳକୁ ଆସି ଏଠି ଓଡ଼ିଆ ଜାତୀୟତା ରକ୍ଷାପାଇଁ ଉଦ୍ୟମ କରିଥିଲେ । ଏହି ସଂଗଠନ ଓ ଆନ୍ଦୋଳନରେ ଶିବନାରାୟଣ ଦେବ, ଶିବପ୍ରସାଦ ପ୍ରହରାଜ, ଲକ୍ଷ୍ମଣ ପଟ୍ଟନାୟକ ପ୍ରମୁଖ ତଥା ପରବର୍ତ୍ତୀ କାଳରେ ରାଜେନ୍ଦ୍ର ମାଧବ, ଦୀନବନ୍ଧୁ ପଟ୍ଟନାୟକ, ପ୍ରୟାଗଦତ୍ତ ଯୋଷୀ ପ୍ରମୁଖ ବଞ୍ଚାଇ ରଖିଥିଲେ ।

Digitized by srujanika@gmail.com

ସ୍ୱାଧୀନୋତ୍ତର କଳାହାଣ୍ଡିରେ ସାଂଗଠନିକ—ସଚେତନ ସାଧନା ପାଇଁ ପ୍ରବୃତ୍ତି ଦେଖାନଦେଇ ବରଂ ବ୍ୟକ୍ତିଙ୍କ ସାଧନା ଦ୍ୱାରା ସାହିତ୍ୟକର୍ମମାନେ ଅନୁରୁଦ୍ଧ ହୋଇଥିବାର ଜଣାଯାଏ । ପ୍ରାକ୍ ସ୍ୱାଧୀନ କାଳରେ ସାହିତ୍ୟର ଆଭିମୁଖ୍ୟ ସଂସ୍କାରଧର୍ମୀ ତଥା ଜାତୀୟ ଚେତନା ଦ୍ୱାରା ଅଭିମନ୍ତ୍ରିତ ହୋଇଥିଲେ ସ୍ୱାଧୀ ମୁକ୍ତିକାମୀ ଚେତନା ଓ ଦଳିତ ପତିତ ମଣିଷର ଚିନ୍ତା ବୀରବିକ୍ରମ, ଲକ୍ଷ୍ମଣ ପଟ୍ଟନାୟକ, ଶିବନାରାୟଣ, ଗଦାଧର ମିଶ୍ର ତଥା ପରଶୁରାମ ମିଶ୍ରଙ୍କ ଲେଖା କୁ ଛାଡ଼ିଦେଲେ ଅନ୍ୟାନ୍ୟ ଲେଖକଙ୍କ ଲେଖନୀରେ ରୂପ ପାଇଥିଲା ପରି ମନେହୁଏ ନାହିଁ । କିନ୍ତୁ ସ୍ୱାଧୀନୋତ୍ତର କଳାହାଣ୍ଡିର ଅନେକ କବି ଲେଖକଙ୍କ ଲେଖନୀରେ ନିଛକ ଭାବେ ଏହି ଭୂମିର ମଣିଷର ହସକାନ୍ଦ, ସୁଖଦୁଃଖ ଓ ଚଳଣି ରୂପାୟିତ । ଚେତନା ଆଞ୍ଚଳିକତା ଠାରୁ ଜାତୀୟ ଓ ଆନ୍ତର୍ଜାତିକତା ପର୍ଯ୍ୟନ୍ତ ସଂପ୍ରସାରିତ । ସ୍ୱାଧୀନୋତ୍ତର ଭାରତ ତଥା ଓଡ଼ିଶାର ରାଜନୈତିକ ସ୍ଥିତି ଓ ସମ୍ଭାବନା, ଗାନ୍ଧୀଙ୍କ ରାମରାଜ୍ୟ, ଗଣତାନ୍ତ୍ରିକ ସମାଜବାଦ ଓ ମଣିଷର ସମତା ପାଇଁ ଆହ୍ୱାନ ଉତ୍ତର ଷାଠିଏର ନେତୃତ୍ୱ ସଂକଟ, ଗଣତନ୍ତ୍ରର ବିଫଳତା, ସମାଜରେ ଶ୍ରେଣୀ ସଂଘର୍ଷର ଚେତନା, ଦେଶର ଅନ୍ୟାୟ, ଦୁର୍ନୀତି ଓ ଲାଞ୍ଚଖୋରି ଆଦର୍ଶ ଓ ନୈତିକହାନତା ମଧ୍ୟରେ ଯୁଗୀୟ ଅବକ୍ଷୟ ; ସାଂପ୍ରତିକ ଜନଜୀବନର ଯନ୍ତ୍ରଣା ଏକ ପକ୍ଷରେ, ଅପର ପକ୍ଷରେ କଳାତ୍ମକ ଦୃଷ୍ଟି କୋଣ ନେଇ ବିଶ୍ୱ ସାହିତ୍ୟ ଓ ସମକାଳୀନ ଭାରତୀୟ ସାହିତ୍ୟର ରୂପ ରୂପାନ୍ତରକୁ ଭିତ୍ତିକରି ଏଠିକାର ସାହିତ୍ୟକାର ଓ କବିଙ୍କ ଚେତନା ଯାହା ସୃଷ୍ଟି ଓ ସମୀକ୍ଷା କରିଛି ତାହା ଓଡ଼ିଆ ସାହିତ୍ୟକୁ ନାନା ଦିଗରୁ ପରିପୁଷ୍ଟ କରିବା ସଙ୍ଗେ ସଙ୍ଗେ କଳାହାଣ୍ଡିର ସାହିତ୍ୟ ଚେତନାକୁ ସଂପ୍ରସାରିତ କରିଛି । ଏହି ପରିପ୍ରେକ୍ଷୀରେ କବି ସୌରଭ ଅନନ୍ତଙ୍କ ଭାବବାଦୀ କବିତାବଳୀ, ଔପନ୍ୟାସିକ ପରଶୁରାମଙ୍କ ଆଞ୍ଚଳିକ ଉପନ୍ୟାସ ଓ ଗଳ୍ପ ସମୂହ, ପ୍ରଫେସର ଭୁବନେଶ୍ୱର ବେହେରାଙ୍କ ଆଞ୍ଚଳିକତାରୁ ଆନ୍ତର୍ଜାତିକ ଚେତନା ପର୍ଯ୍ୟନ୍ତ ପରିବ୍ୟାପ୍ତ ଗଳ୍ପ ଓ ରମ୍ୟରଚନା, ନାଟ୍ୟରଶ୍ମି ପ୍ରଫୁଲ୍ଲ କୁମାରଙ୍କ ସମାଜବାଦୀ ଓ ସ୍ଥିତିବାଦୀ ଚିନ୍ତା ଚେତନାର ମୁକ୍ତକ ନାଟ୍ୟକୃତି, ଉମାଶଙ୍କରଙ୍କ ରୋମାଣ୍ଟିକ୍ ଉପନ୍ୟାସ ଓ କବିତା, ନାରାୟଣ ପ୍ରସାଦ ଶୁଭେନ୍ଦୁ, ଶଶାଙ୍କ, ବିପିନବିହାରୀ ଦାଶରଥି, ଯଶୋଧାରା, ଉତ୍ତମ କୁମାର ପ୍ରମୁଖଙ୍କ ଗଳ୍ପ, ନାଟକ ଓ କବିତା ସମୂହ ସାଂପ୍ରତିକ ଓଡ଼ିଆ ସାହିତ୍ୟ ଭୂମିରେ ଉଲ୍ଲେଖନୀୟ ଆସନର ଅଧିକାରୀ । ଏତଦ୍‌ଭିନ୍ନ କବି ନୀଳଲୋହିତ, ବିଶ୍ୱବନ୍ଧୁ, ଲଳିତ କାନୁନ୍ ଗୋ, ଗୋବର୍ଦ୍ଧନ, ପ୍ରଭାତ ହୋତା, ଜୟନ୍ତ ବେହେରା, ମୋହନଲାଲ ପ୍ରମୁଖଙ୍କ ଲେଖନୀ ସମକାଳୀନ ଚେତନାଦ୍ୱାରା ଅନୁବୃଦ୍ଧି ଓ ପ୍ରତିଶ୍ରୁତି ବଦ୍ଧ । ମୋଟାମୋଟି ଭାବେ କଳାହାଣ୍ଡିର ଏହି ସାଂସ୍କୃତିକ ଭୂୟୋବିକାଶର ଏହି ପଟଭୂମିରୁ କଳା ଓ ସାହିତ୍ୟର ଆକଳନ କରାଯାଇ ପାରେ ।

Digitized by srujanika@gmail.com

ସାହିତ୍ୟ ଚର୍ଚ୍ଚା କଳାଚର୍ଚ୍ଚାର ଏକ ବିଶିଷ୍ଟ ବିଭବ । ସଂସ୍କୃତିର ବହୁ ବର୍ଣ୍ଣାଳୀ ମଧ୍ୟରୁ ଏହା ଏକତମ । କଳାହାଣ୍ଡିର କଳା ଓ ସଂସ୍କୃତି କହିଲେ ଏଠିକାର ଲୋକ ପୌର ଜନ-ଜୀବନର ସାମଗ୍ରୀକ ମୂଲ୍ୟବୋଧକୁ ବୁଝାଏ । ସଂସ୍କୃତିର ସ୍ୱରୂପକୁ କଳା ଓ ସାହିତ୍ୟ, ସଙ୍ଗୀତ, ବଡ଼ ସୂକ୍ଷ୍ମଭାବେ ଧରି ରଖିଥାଏ । କଳା ଓ ସାହିତ୍ୟ କଳାହାଣ୍ଡିର ସଂସ୍କୃତିକୁ ତଥା ମାନବ ସଭ୍ୟତାର ଧାରାକୁ କେତେ ସୁସଂହତ ଭାବେ ଧରି ରଖିଛି ତାହାର ଏକ ମୂଲ୍ୟାୟନ ପାଇଁ ପ୍ରସ୍ତୁତ ସଙ୍କଳନଟିର ପରିକଳ୍ପନା । କଳାହାଣ୍ଡିର ଇତିହାସ ଓ ପ୍ରତ୍ନତତ୍ତ୍ୱ, ଧର୍ମ, କଳା-ସ୍ଥାପତ୍ୟ,, ଲୋକସଂସ୍କୃତି ଲୋକନୃତ୍ୟ, ନାଟ୍ୟକଳା, ତଥା ସାହିତ୍ୟର ବିଭିନ୍ନ ବିଭବ ଉପରେ ହିଁ ଏହି ସାଂସ୍କୃତିକ ମୂଲ୍ୟାୟନର ସୌଧ ଦଣ୍ଡାୟମାନ । ଏହି ପରିପ୍ରେକ୍ଷୀରେ କଳାହାଣ୍ଡିର ସର୍ଜନଶୀଳ ପ୍ରତିଭାର ମୂଲ୍ୟାୟନ ଓ ସମକାଳୀନ ଓଡ଼ିଆ ସାହିତ୍ୟର କ୍ରମୋ ଉରଣରେ ସେମାନଙ୍କର ସ୍ଥାନ ଓ ଅବଦାନ ବିଷୟରେ ଜାଣିବା ଓ ଜଣାଇବା ପାଇଁ, ମୋ ଜାଣିବାରେ ଏହା ପ୍ରଥମ ଉଦ୍ୟମ । ପ୍ରସ୍ତୁତ ସଙ୍କଳନଟି ଏହି ଦୃଷ୍ଟିରୁ ଆମର ଏହି ଲକ୍ଷ୍ୟ ପୂରଣରେ ସହାୟକ ହୋଇପାରିବ । କଳାହାଣ୍ଡିର ସାଂସ୍କୃତିକ ବିଭବ ଓ ସାହିତ୍ୟ ସର୍ଜନାର ବିଚିତ୍ରବର୍ଣ୍ଣୀ ରୂପକୁ ଓଡ଼ିଆ ପାଠକଙ୍କ ଆଗରେ ଉପସ୍ଥାପିତ କରିବାପାଇଁ ଏହି ସଙ୍କଳନ ଅଭିପ୍ରେତ । ସଙ୍କଳନର ପ୍ରତ୍ୟେକଟି ପ୍ରାବନ୍ଧିକ କଳାହାଣ୍ଡିର ସଂସ୍କୃତିର ଏକ ଏକ ବିଭବକୁ ନେଇ ଗବେଷଣା କରୁଛନ୍ତି ।

ସ୍ଥାନିକ ଶ୍ରୀ ଜିତାମିତ୍ର ପ୍ରସାଦ ସିଂହ ଦେଓଙ୍କ Heritage of Kalahandi ପ୍ରବନ୍ଧ ଦକ୍ଷିଣ କୋଶଳର ଐତିହ୍ୟର ପୃଷ୍ଠ ଭୂମିରେ ରଚିତ । ଏହି ପ୍ରବନ୍ଧରେ କଳାହାଣ୍ଡିର ବହୁ ଅନାବିଷ୍କୃତ ତଥ୍ୟ ଉଦ୍‌ଘାଟିତ ତଥା ଏହି ଭୂମି ଭାରତୀୟ ଇତିହାସରେ ଯେଉଁ ସ୍ଥାନରେ ରହିବା କଥା ତାହା ଦର୍ଶିତ । ଡ଼: ଦୋଳଗୋବିନ୍ଦ ବିଶୀ କଳାହାଣ୍ଡିର ଇତିହାସର ଧାରା

Digitized by srujanika@gmail.com

ଅଧ୍ୟାପକ ସୁଦର୍ଶନ ପଣ୍ଡାଙ୍କ "ଭୁବନେଶ୍ୱର ବେହେରଙ୍କ ସାହିତ୍ୟ ମାନସ" ପ୍ରବନ୍ଧ ରାଜ୍ଞି-କଙ୍କ ଉପରେ ତଥା ତାଙ୍କ ସୃଷ୍ଟି କର୍ମ ଉପରେ ଯଥାର୍ଥ ବିଶ୍ଳେଷଣ । ଅଧ୍ୟାପକ ପଣ୍ଡା ଶ୍ରୀ ବେହେରଙ୍କ ସୃଷ୍ଟି ମାନସକୁ ପହଞ୍ଚି ସେହି ସୂତ୍ରକୁ ପାଠକଙ୍କ ପାଖରେ ପହଞ୍ଚାଇବାରେ ସମର୍ଥ ହୋଇଛନ୍ତି ।

"ଉମାପଣ୍ଡାଙ୍କ କବିତା" ପ୍ରବନ୍ଧ ପ୍ରାବନ୍ଧିକ ମଙ୍ଗଳୁ ଚରଣ ବିଶ୍ୱାଳଙ୍କ ଗଭୀର ଭାବ ସମ୍ବେଗ ବାହକ । କବିତାର ସମ୍ପର୍କରେ କହୁଥିବା କଥା ନିଜେ ହିଁ କବିତା । ପ୍ରବନ୍ଧଟି ଉମା-ପଣ୍ଡାଙ୍କ କବିତା ବୁଝିବା ପାଇଁ ଚାବିକାଠି । ତରୁଣ ରୋମାଣ୍ଟିକ କବି ଅନୁପଙ୍କ କାବ୍ୟ ପ୍ରତିଭାକୁ ପରିଚୟ କରାଇଛନ୍ତି ପ୍ରାବନ୍ଧିକ ମୋହିତ ମୋହନ ମହାପାତ୍ର । ତାଙ୍କ ସାମଗ୍ରୀକ ସୃଷ୍ଟିର ଅନ୍ତର୍ଲୋକରେ ବିଚରଣଶୀଳ ପ୍ରାବନ୍ଧିକ ସୃଷ୍ଟିକୁ ସମୀକ୍ଷାକରି ପାଠକଙ୍କ ଆଗରେ ଉପସ୍ଥାପିତ କରିଛନ୍ତି ।

କଳାହାଣ୍ଡିର ଲୋକନୃତ୍ୟ ଘୁମୁରା ଓ ନାଟ୍ୟ ପରମ୍ପରା ଉପରେ ଶ୍ରୀ ମୂର୍ତ୍ତିମନ୍ତ ସାହୁ ପ୍ରବନ୍ଧ ନୂତନ ତଥ୍ୟର ଉଦ୍‌ଘାଟକ । ପୂର୍ବ ଭାରତୀୟ ଲୋକନୃତ୍ୟ ଘୁମୁରାର ଐତିହ୍ୟ ଓ ସ୍ୱରୂପ ସମ୍ପର୍କରେ ଶ୍ରୀ ସାହୁଙ୍କ ପ୍ରବନ୍ଧ ଉଲ୍ଲେଖ ଯୋଗ୍ୟ ।

ଶ୍ରୀ ଉମାଶଙ୍କର କର କଳାହାଣ୍ଡିର ପ୍ରାଚୀନ ପ୍ରତ୍ନତତ୍ତ୍ୱ କ୍ଷେତ୍ର ଯଥା – ଅସୁରଗଡ଼ ସଲଗ୍ନ ଏକ ଅନାବିଷ୍କୃତ ପ୍ରତ୍ନତାତ୍ତ୍ୱିକ ଅବଶେଷ ସମ୍ପର୍କରେ ଅଧ୍ୟୟନ କରିଛନ୍ତି । ଅମଠ-ଗଡ଼କୁ ବଜ୍ରଗଡ଼ ରୂପେ ନାମିତ କରିବା ସମ୍ପର୍କରେ ତାଙ୍କ ପ୍ରବନ୍ଧରେ ମତବ୍ୟକ୍ତ କରିଛନ୍ତି ।

ଏହି ଲେଖକ ଦ୍ୱାରା ' କଳାହାଣ୍ଡିର ସ୍ରଷ୍ଟା ଓ ସୃଷ୍ଟି ' ଶୀର୍ଷକ ପ୍ରବନ୍ଧଟି ସନ୍ନିବେଶିତ କରାଯାଇଛି । ଏହା ପୂର୍ଣ୍ଣାଙ୍ଗ ନୁହେଁ । କାରଣ ଜିଲ୍ଲାର ସମସ୍ତ ଅଞ୍ଚଳରୁ ଲେଖକ ପରିଚୟ ସଂଗ୍ରହ ଏଥିପାଇଁ ଏକାନ୍ତ ଆବଶ୍ୟକ ; ତଥାପି ଯଥା ସାଧ୍ୟ ଚେଷ୍ଟାକରି ଏକ ପରିଚୟାତ୍ମକ ନିବନ୍ଧଟିଏ ଲିଖାଯାଇଛି ।

Digitized by srujanika@gmail.com

ଆଭିଜାତ୍ୟପୂର୍ଣ୍ଣ ସଂସ୍କୃତ ପ୍ରତିସ୍ପର୍ଦ୍ଧୀ ଶବ୍ଦର କ୍ରମ ଅବଲୁପ୍ତିକୁ ପୁନଃ ପ୍ରତିଷ୍ଠା ଦେବାପାଇଁ ସେ ଗୁଡ଼ାଏ ଦୁର୍ବୋଧ୍ୟ ଶବ୍ଦର ପ୍ରୟୋଗ କରି ଛାନ୍ଦରୀତିରେ କବିତା ରଚନା କରିଛନ୍ତି । ସେ ପୁଣି କହନ୍ତି ଏଥିପାଇଁ ତାଙ୍କୁ ପଣ୍ଡିତ କାଳୀଚରଣ ରଥ ଉଦ୍ଦୀପିତ କରିଥିଲେ । ଯଦି ଏହା ସତ, ତେବେ ପାଣ୍ଡିତ୍ୟର ସ୍ପର୍ଶରେ କବି ଅମ୍ଭାର ଅଧୋପତନ ଛଡ଼ା ଅନ୍ୟ କିଛି ନୁହେ । ବରଂ ଦୁଃଖ ଯେ ଯେଉଁ କବି ଇତିକା ମୂର୍ଚ୍ଛନାର କବି ସେହି କବିର କ୍ରମୋତ୍ତରଣ ନ ଘଟି କ୍ରମାବକ୍ଷର ଶିକାର ହୋଇ କେବଳ ବାଣୀ- ଡ଼ମ୍ବରୁ- ଶବ୍ଦଶିଳ୍ପ ମଧ୍ୟରେ ହିଁ ସୀମିତ ରହି ଯାଇଛି । ଅନୁଧ ସାହିତ୍ୟ ପରିକ୍ରମା ବେଳେ ଏହି କ୍ରମୋତ୍ତରଣ ଧାରା ଓ କ୍ରମାବକ୍ଷୟୀ ଧାରାକୁ ଅବଲୋକନ କଲେ ବାସ୍ତବିକ ଜଣେ ସଚେତନ ସମକାଳୀନ କବି ଚେତନାର ଅନ୍ତଃସଲିଳା ସ୍ରୋତସ୍ୱିନୀର କଳକଳ ନାଦିନୀ ସଙ୍ଗମତ ଓ ଭବଧାରା ହଠାତ୍ ଗତିପରିବର୍ତ୍ତନ କରି ସ୍ରୋତର ପ୍ରତିକୂଳ ଦିଗରେ ଗତି କରିବାର ଦୁର୍ଗଣା କରିବା ବ୍ୟତୀତ ଅନ୍ୟ କିଛି କରିବା ହିଁ, କହିବା ସତ୍ୟର ଅପଳାପ ହେବ ।

କବିଙ୍କ ସାମଗ୍ରିକ ସାହିତ୍ୟ ସାଧନାର ପରିକ୍ରମା କଲାବେଳେ ଚେତନାର ଏହି ବିଚ୍ଛେଦଟି ସ୍ପଷ୍ଟ ଧରାପଡ଼େ । ତେଣୁ ତାଙ୍କୁ ପ୍ରାଚୀନ କାବ୍ୟ ପରଂମ୍ପରା ସମୃଦ୍ଧ ପରିବାରରୁ ସଂସ୍କୃତ ଏକ ଆଧୁନିକ ଭାବବାଦୀ କବି ରୂପେ ପ୍ରଥମେ ପାଇଲା ପରେ ତାଙ୍କୁ ଉତ୍ତର ବୟସରେ ପ୍ରାଚୀନ ରୀତିର ପ୍ରୟୋଗବାଦୀ କବିରୂପେ ଦେଖୁ । ଯୁଗୀୟ ପରିବର୍ତ୍ତନ ସହିତ ଏହାର ବିସଙ୍ଗତି ସାହିତ୍ୟ ଜଗତରେ ମର୍ମନ୍ତୁଦ । ତେବେ ବି ଉଦାରବାଦୀ ସମାଲୋଚକ ଦୃଷ୍ଟିରୁ ଉଭୟ ପକ୍ଷରୁ ବିଗ୍ଭର କଲେ କବି ଅନୁପଙ୍କ କବିତାର ଉଭୟ ଧାରାରେ କବି ଆମ୍ଭାର ସ୍ୱବିମଳ ପ୍ରକାଶ ନିରନ୍ତର ସ୍ପଷ୍ଟ ହୁଏତ ତାହା କେଉଁଠି ନାରୀ– କେଳ ପାକ । ଏହି ପ୍ରବନ୍ଧରେ ତାଙ୍କ ସାମଗ୍ରିକ କବିତାର ଏକ ପରିକ୍ରମା କଲାବେଳେ ପ୍ରଥମତଃ ୧୯୫୭ ପର୍ଯ୍ୟନ୍ତ କବିଙ୍କ କ୍ରମୋତ୍ତରଣ ଓ କ୍ରମାବକ୍ଷୟକୁ ନିମ୍ନଚିତ୍ରରେ ଚିହ୍ନିତ କରାଯାଇ ପାରେ:–




Digitized by srujanika@gmail.com

୧୯୪୨ -- ୧୯୫୭ : ଆଧୁନିକ ସାହିତ୍ୟାଦର୍ଶ
୧୯୬୮ -- ୧୯୮୫ : ପ୍ରାଚୀନ କାବ୍ୟା ଦର୍ଶ

ଏହି ପରିପ୍ରେକ୍ଷୀରେ କବି ସୌରଭଙ୍କ କବିତାଗ୍ରନ୍ଥ ସବୁକୁ ବିଗ୍ଭର କଲେ ଯାଏ ତେବେ ତାହାର ସ୍ପଷ୍ଟ ପ୍ରମାଣ ମିଳେ । ତାଙ୍କ କବିତାବଳି ବହୁ ବିଷମ ଅଭିଜ୍ଞତାର ମଞ୍ଜୁଳ ସମନ୍ୱୟରେ ଉଦ୍ଭୋଦାପ୍ତ ଆଧୁନିକ ମାନବର ପ୍ରତ୍ୟେକ ଅନୁଭୂତିରେ ସୋଦିତ ହେ କେଉଁଠି ବ୍ୟର୍ଥ ପ୍ରେମିକ, ଭଗ୍ନହୃଦୟ, ଆତ୍ମକୈନ୍ଦ୍ରିକ—କେଉଁଠି ତ ସେ ରୋମାଣ୍ଟିକ୍ ।

## ଆରତି

ଆରତି ୬୮ ଗୋଟି ଉଚ୍ଛ୍ୱାସମୟୀ କବିତା ସଂକଳନ । ପ୍ରତ୍ୟେକଟି କବିତାରେ ଭବା-ବେଗ ଏତେ ପ୍ରବଳ ଯେ ଶିରୋନାମ ବିହୀନ । ଏଥିରେ ସ୍ୱପ୍ନ ପ୍ରବଣତା, ଯୌବନ ବନ୍ଦନା, ପ୍ରଣୟ ବନ୍ଦନା, ପ୍ରଣୟିନୀ ସହ ବିହାର ପ୍ରବଣତା, ମିଳନ ଅପେକ୍ଷା ବିରହରେ ଦୁଃଖବାଦୀ ହୋଇ ପ୍ରିୟା ସ୍ମୃତିର ଗୁଣ କୀର୍ତ୍ତନ ଲକ୍ଷଣୀୟ । ଟିକିଏ ମୁହୂର୍ତ୍ତର ଦେଖାକୁ ଝୁରି ଝୁରି କବି ଗାଇଛନ୍ତି:-

ପୂର୍ବବର ଭଗ୍ୟେ ଦେଖିଲି ମୁଁ ତୋତେ
ନ ପାରିବି ଏବେ ଭୁଲି
ଲାଜ କରି ମୋତେ ଅତି ଛଟକରେ
ଚପଳେ ଗଲୁଟୁ ଚ୍ଛଲି । ୬/୧ ॥

ସେହି କବିଙ୍କର ପୁଣି ଆତ୍ମଚେତନା:-

ଗ୍ଭହୁଁ ଯଦି ପ୍ରାଣେ ଲଭିବାକୁ ଶାନ୍ତି
କୃଷ୍ଣ କୃଷ୍ଣ ରଧେ ବୋଲ । ୩/୬୧ ॥

ଏହା ( ୧୯୪୨ ଓ ୪୬ ରେ ପ୍ରକାଶିତ ) କବିତା ଗୁଚ୍ଛ । ତେଣୁ କବିଙ୍କ ହୃଦୟର ପ୍ରେମର ଆରତି, ମିଳନ ବିରହର ସ୍ମୃତିର ଆରତି । ଜୀବନକୁ ପ୍ରେମମୟ କରି ଆକଣ୍ଠ ପ୍ରେମରସ ପାନକରି ପ୍ରେମଦୀପ ଜଳାଇବାରେ ମାନସ ଉଦ୍ଭୁତ ଏ ଆରତି ।

## ଉର୍ମି

ଏ କବିତା ଗ୍ରନ୍ଥରେ ମଧ୍ୟ କବିଙ୍କ ପ୍ରଣୟାତୁର ଭବ ଭବନା ପ୍ରକାଶିତ ହୋଇଛି । ଶୃଙ୍ଗାର ରସକୁ ମୁଖ୍ୟରସ ରୂପେ ଏହି କବିତା ମାନଙ୍କରେ ସ୍ଥାନ ଦେଇ ପ୍ରେମିକ ଓ

Digitized by srujanika@gmail.com

**ପ୍ରକୃତି ପ୍ରେମ :** କବି ପ୍ରକୃତିକୁ ନିବିଡ ଭାବରେ ଦେଖି, କଥା କହି, ଭାବ ବିନିମୟ କରି ପ୍ରକୃତିର ଜୀବନଧ ଗର୍ଭରୁ ସେ ସୃଷ୍ଟିର ମୂଳ ରହସ୍ୟ-ଗ୍ରନ୍ଥି ଉନ୍ମୋଚନ କରି ପ୍ରକୃତି ସହିତ ଆତ୍ମାର ସମ୍ବନ୍ଧ ସ୍ଥାପନ କରିଛନ୍ତି । ବାହ୍ୟ ପ୍ରକୃତିର ଇଙ୍ଗିତରୁ ସେ ପାଉଛନ୍ତି ଅନ୍ତଃପ୍ରେରଣା । ଆଲୋକର ବିନ୍ଦୁଏ ଝଲକ କବି ଚେତନାକୁ କରିଛି ଆଲୋକିତ । ସୌନ୍ଦର୍ଯ୍ୟର ଉପାସକରୂପେ ଗୋଲାପର ସ୍ନିଗ୍ଧତାରେ ମୁଗ୍ଧ । ପ୍ରଭାତ ବର୍ଣ୍ଣନା, ବାଦଲ, ଅଭିସାରିକା ଆଦି କବିତାରେ ପ୍ରକୃତି ଚିତ୍ରଣ ହୃଦୟ ଉଲ୍ଲାସକ ।

**ବାସ୍ତବବାଦ ଓ ମାନବବାଦ :** କବି ମାନବତାର ଜୟଗାନ କରି ମୋକ୍ଷକୁ ସ୍ପୃହା ତୁଚ୍ଛ ମଣି ଗାହାନ୍ତି :-

ଚିରନ୍ତନ ବହୁଥାଉ ଜୀବନ-ଯମୁନା
ଜଣାଉଛି ଏହି ମୋର ଅନ୍ତିମ କାମନା । (ପୃ. ୩୨)

ଏକ ନିଛକ୍ ବାସ୍ତବବାଦୀ କବି ରୂପେ 'କ୍ଷୁଧା'ରେ କ୍ଷୁଧାର ପ୍ରତିକ୍ରିୟାକୁ ଚିତ୍ରଣ କରିଛନ୍ତି :-

ଅଶରୀରି-ରୂପେ ସମ୍ମୁଖେ ଦେଖି
ଗଲ ଆହେ ଦୁର୍ବିନୀତ,
ଧ୍ୱସ୍ତ ଜନତା ତୁମରି ପରଶେ
ଜ୍ଞାନ ବିବେକ ନତ ।×× ପୃ. ୮୬)

**ଜାତୀୟତାବାଦ :** ଦେଶଦ୍ରୋହୀଙ୍କ ପ୍ରତି ଗଭୀର କ୍ଷୋଭର ସହିତ କବି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି :-

ହାୟରେ ତୁ ନିମକ ହାରମ
ତୁଇ ପୁଣି ଏ ଦେଶର ପୁଅ
ଇତିହାସ-ବୁକୁ ଚିର ଘାତକ ତୁ -
ଛୁଟାଇଛୁ କେତେ ଲୋତ ସୁଅ ! (ପୃ. ୩୪)

**ଭକ୍ତିର ମୂର୍ଚ୍ଛନା :** 'ଶ୍ରୀ ରାମଛାମୁରେ ଜଣାଣ' ଓ 'ପ୍ରଭୁ !' କବିତାରେ ମୂର୍ଚ୍ଛିତ ।

ଭାଷା ଓ ଛନ୍ଦ ଦିଗରୁ ବିଚାର କଲେ ଗଡ଼ନାୟକ ଓ ସବୁଜ ଯୁଗର ମାତ୍ରାବୃତ୍ତ ଛନ୍ଦକୁ କବି ଆଦର୍ଶ ରୂପେ ଗ୍ରହଣ କରିଛନ୍ତି ପରି ମନେହୁଏ ।

## ସମୁଚ୍ଚୟ

ଦର୍ଶନ ତଥ୍ୟ ସମନ୍ୱିତ ରହସ୍ୟବାଦୀ ଚଉତିଶା ସଂକଳନ । ଅଦୃଷ୍ଟର ସନ୍ଧାନ ପାଇଁ ଜ୍ଞାନ ସୀମିତ ନୁହେଁ, ବୁଦ୍ଧି ଯାହାକୁ ଜାଣିପାରେ ନାହିଁ, ପ୍ରଜ୍ଞା ବା intellect

Digitized by srujanika@gmail.com

ମାହାଯ୍ୟରେ ତାହା ସମ୍ଭବପର ହୋଇ ପାରେ । ତେଣୁ କବି ସେହି ଦିବ୍ୟ ଯଜ୍ଞା ଗଳରେ ପରମ ଅପରୂପକୁ କିପରି ଅନୁଭବ କରିଛନ୍ତି ବର୍ଣ୍ଣିତ । ଆଜି ବାସ୍ତବବାଦୀ ଚିନ୍ତାଧାର ସାର ବିଶ୍ୱକୁ ଗ୍ରାସ କରିଛି । ଆଧ୍ୟାତ୍ମିକ ଚିନ୍ତା, ନୈତିକ ମୂଲ୍ୟବୋଧ ହ୍ରାସ ପାଉଛି । ମାନବ ସମାଜର ଧ୍ୱଂସମୁଖୀ ଚେତନାକୁ ଦେଖି କବି ବ୍ୟଥିତ । ମାନବ ଚେତନାରେ ଭଗବତ୍ ଚେତନା ଉଜ୍ଜୀବିତ ହେଲେ ମାନବ ଦେହରେ ଦେବତ୍ୱର ବିକାଶ ଦ୍ୱାରା ବିଶ୍ୱରେ ଶାନ୍ତି ପ୍ରତିଷ୍ଠିତ ହେବ ବୋଲି ସେ ମତ ଦେଇଛନ୍ତି । ଧର୍ମାନ୍ଧତାରୁ ସୃଷ୍ଟିର ବିନାଶ ହୁଏ । ତେଣୁ କବି ଗାଇଛନ୍ତି :—

କ୍ଷୌଣୀ ହୋଇବ ଧ୍ୱଂସ ପ୍ରସୂତି ଯିବ ନାଶ<br>
କ୍ଷାଳିତ ନ ହେଲେ ବିଦ୍ୱେଷି<br>
କ୍ଷିପ୍ରେ 'ଅନୂପ' ବାଣୀ ଘେନି ଏକତ୍ୱ ଆଣି<br>
କ୍ଷେମ–ଜବୁ'ର ଜଳ ବୃଷ୍ଟି । ୩୪ ॥ (ବିମର୍ଶ)

କବି 'ସମୀକ୍ଷା', 'ଉନ୍ମେଷ', 'ବିମର୍ଶ', 'ଅନ୍ୱେଷ', 'ବିତର୍କର' ସୋପାନ ଅତିକ୍ରମ କରି ଶେଷରେ 'ତ୍ରିଗୁଣାତ୍ମ'ରେ ଉପନୀତ । କବିଙ୍କ ରହସ୍ୟବାଦୀ କବିତାମାନଙ୍କ ମଧ୍ୟରୁ ସମୁଚୟ ସାର୍ଥକ ରହସ୍ୟବାଦୀ ଚେତନା ବହନ କରିଛି ।

ଆତ୍ମିକ ଦିଗରୁ ଏହା ଯୁଗୋପଯୋଗୀ କିନ୍ତୁ ଆଙ୍ଗିକ ଦିଗରୁ ଏହା ନାରିକେଳ ପାକ ସଦୃଶ । କାରଣ ପ୍ରକାଶ ଭଙ୍ଗୀ ସମ୍ପୂର୍ଣ୍ଣ କ୍ଲିଷ୍ଟ ଶବ୍ଦାବଳୀ ହେତୁ ଭାବ ଉପଲବ୍ଧି ଆୟାସ ସାଧ୍ୟ ।

## ତ୍ରିପତ୍ରୀ

୧୯୫୬ରେ ଏକଦା ଭାବବାଦୀ କବି ତାଙ୍କ ଜୀବନର ଉତ୍ତର କାଳରେ ବାସ୍ତବବାଦୀ ସାମାଜିକ ତତ୍ତ୍ୱକୁ କବିତା ରୂପ ଦେଇଛନ୍ତି । ସମାଜ ତାତ୍ତ୍ୱିକ ଦୃଷ୍ଟିକୋଣରୁ କ୍ଷୟିଷ୍ଣୁ ସମାଜ ଓ ଅପସଂସ୍କୃତିର କାରଣ ଓ ବର୍ତ୍ତମାନର କାର୍ଯ୍ୟକଳାପ, ଶାସନ ଇତ୍ୟାଦିକୁ ବିଶ୍ଳେଷଣ କରିଛନ୍ତି 'ପରିତାପ', 'ଦିଷର ମାହାତ୍ମ୍ୟ' ଓ 'ବିପଦ ବାଞ୍ଛା'ରେ କବିଙ୍କ ଚିନ୍ତାଧାର ଏକ ଜାତୀୟବାଦୀ, ଦେଶପ୍ରେମୀ ରୂପେ ପରିଚିତ କରାଇଛି । କବିଙ୍କ ପ୍ରତ୍ୟକ୍ଷ ଅନୁଭୂତିର ଶୋକୋଚ୍ଛ୍ୱାସ କ୍ଲିଷ୍ଟ ପ୍ର–ଯୋଜନା ମଧ୍ୟରେ ବର୍ଣ୍ଣିତ ହେଲେ ମଧ୍ୟ ଯୁଗୋପଯୋଗୀ ତଥା ଶାଳୀନତା ଅଛି । ଆଜିର ଧ୍ୱଂସମୁଖୀ ବିଶ୍ୱରେ ଇଷ୍ଟ ପରିବର୍ତ୍ତନର କୌଣସି ଉପାୟ ନ ଦେଖି କବି ଚେତନା ମର୍ମାହତ ହୋଇ ଗଭୀର ଆତ୍ମନିବେଦନ :—

Digitized by srujanika@gmail.com

ବିନଷ୍ଟ ହେଲେ ତବ ସମ୍ମୁଖରେ
ବିରାଟ ସୃଷ୍ଟି, ତ୍ରାତା ହେବ କାରେ ?
ବିପନ୍ନାଶ୍ରୟ ନାମେ କିଳ୍ବିଷ
ବୋଲି ନ ହେବ କି, ହେ ବିଶ୍ୱଈଶ !

## ବିରହବାରିଧି

ବିରହବାରିଧି ଚଉତିଶାରେ କବି ରାଧାକୃଷ୍ଣ ଶ୍ରୟୀ ବିପ୍ରଲମ୍ଭର ବର୍ଣ୍ଣନା କରି ମିଳନ ପାଇଁ ଯଜତଙ୍କୁ (ଶିବଙ୍କୁ) ପ୍ରାର୍ଥନା କରି ଗାଇଛନ୍ତି :–

ହରିକେଶ ଦୟା ହେଲେ    ଖଞ୍ଜ ଲଘେ ଧରାଧରେ
ଅକ୍ଷ ଲଭେ ସରସିଜ ମଞ୍ଜୁ-ଈକ୍ଷଣ
ହୀନପରେ କ୍ଷୀଣ ଦୟା    ହେଲେ ସପ୍ତନବବୟା
ମିଳନେ ଭୁଲଇ ଦାରୁଣ ହୃଦ କଷଣ
ହରଗତି ଓଜ ଗୁମାନ
ହସିହସି କରନ୍ତି ମୁଁ ହେଲେ ଦମନ । ୩୩ ॥

ଆତ୍ମିକ ଦିଗରୁ ଚଉତିଶାଟି ରସାଳ କିନ୍ତୁ ଆଙ୍ଗିକ ଦିଗରୁ ଏହା 'ସମୁଚ୍ଚୟ' ଓ 'ଦ୍ୱିପଦୀ'ର ସହୋଦରୀ ।

କବି କେଉଁଠି ଇନ୍ଦ୍ରିୟାନୁଭୂତିର ନିବିଡ ସ୍ପର୍ଶରେ ଆତ୍ମହରା–କେଉଁଠି ପୁଣି ସୃଷ୍ଟିର ମୂଳ ରହସ୍ୟ ଉନ୍ମୋଚନ ପାଇଁ ଆତୁର ହୃଦୟ–କେଉଁଠି ସ୍ୱର୍ଗୀୟ ଓ ପ୍ରେମର ନିଃସର୍ଗ ସୁଷମା ପାଇବା ପାଇଁ ବ୍ୟାକୁଳ–କେଉଁଠି ମାନବ ହୋଇ ମାନବୋଚିତ ମାଧୁରିମା ଆହରଣ ପାଇଁ ଜନ୍ମେ ଜନ୍ମେ ମାନବ ହୋଇ ଜନ୍ମିବାକୁ ଭଗବାନଙ୍କୁ ପ୍ରାର୍ଥନା କରିଛନ୍ତି । କବିଙ୍କ ଲେଖନୀ ଅଦ୍ୟାପି ସାରସ୍ୱତ ସାଧନାରେ ଜୀବନ୍ତ । **ଲେଖକର କବିଙ୍କ ସମ୍ବନ୍ଧରେ ପ୍ରକାଶିତ ପ୍ରବନ୍ଧମାନ :–**

୧– ଓଡ଼ିଆ ସାହିତ୍ୟରେ ଖଡ଼ିଆଳର ଅନନ୍ୟ ସାଧକ ବୃନ୍ଦ –
**ସପ୍ତର୍ଷି**, ଜାନୁୟାରୀ, ୧୯୮୩ ପୃ. ୩୩-୩୪ ।

୨– କବି ସୌରଭ-**ଗିରିସ୍ୱର**, ନିଖିଳ ଭାରତୀୟ କବି ସମ୍ମେଳନ ବିଶେଷାଙ୍କ- ୧୯୮୪

୩– ସାହିତ୍ୟକ ଅନୂପ ସଂହ ଦର୍ଶ–**ସପ୍ତପ୍ରଜ୍ଞା**, ଉତ୍କଳ ପାଠକ ସଂସଦ, କଟକ–୧୯୮୭

୪– ମୂର୍ଚ୍ଛନାରେ କବି ସୌରଭଙ୍କ ରୋମାଣ୍ଟିକ୍ କାବ୍ୟ ଚେତନା–**ସପ୍ତର୍ଷି**,
ଜାନୁୟାରୀ, ୧୯୮୮



ଉପ-ସଭାପତି, ଖଡ଼ିଆଳ ସାହିତ୍ୟ ସମିତି,
ପୋ: ଖଡ଼ିଆଳ, ଜି: କଳାହାଣ୍ଡି, ପିନ-୭୬୬୧୦୭

Digitized by srujanika@gmail.com



# ଔପନ୍ୟାସିକ ପରଶୁରାମ ମୁଣ୍ଡ : ଏକ ଅମ୍ଳାନ ସାରସ୍ୱତ ପ୍ରତିଭା

ଡ. ମହେନ୍ଦ୍ର ମିଶ୍ର

ସ୍ୱର୍ଗତ କବି ତଥା ଔପନ୍ୟାସିକ ଶ୍ରୀ ପରଶୁରାମ ମୁଣ୍ଡ କଳାହାଣ୍ଡିର କାଶୀବାହାର ଗ୍ରାମରେ ୧୯୧୯ ମସିହାରେ ଜନ୍ମଗ୍ରହଣ କରିଥିଲେ । ଆଜୀବନ ଏକ ଆଦର୍ଶ ଶିକ୍ଷକ; କବି ତଥା ଔପନ୍ୟାସିକ; ଗବେଷକ ଓ ସମାଲୋଚକ ରୂପେ ଓଡ଼ିଆ ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ ତାଙ୍କର ବିଶେଷ ଅବଦାନ ରହିଅଛି । ତାଙ୍କ ରଚିତ ମୂଲିଆ ପିଲା (୧୯୫୧) ମୁକ୍ତି ପଥର ଦୁଇଟି ଯାତ୍ରୀ (୧୯୬୫) ବସୁନ୍ଧରାର ମାଟି (୧୯୮୨) ଉପନ୍ୟାସ ତ୍ରୟ ତଥା ମିଗ୍‌ନିନା (୧୯୮୩) ଗଳ୍ପ ସଙ୍କଳନ; 'ବ୍ରଜମୋହନ ଦେଓ' ଓ 'ଉତ୍କଳ ଶାରଳା' କାବ୍ୟ ତଥା 'ସାବ୍ୟସାଚୀର ଗାନ' କବିତା ସଙ୍କଳନ ପ୍ରକାଶିତ । ତାଙ୍କ ରଚନାରେ କଳାହାଣ୍ଡିର ଭୂଇଁ ଫୋଡ଼ ସଂସ୍କୃତି ଓ ଜନଜୀବନର ନଗ୍ନସତ୍ୟ ରୂପ ପରିଗ୍ରହ କରିଅଛି । ଏହି ସ୍ରଷ୍ଟାଙ୍କର ତିରୋଭାବ ଘଟିଲା ତା ୨୭·୬·୮୫ରେ ତାଙ୍କ ମୌଳିକ ସୃଷ୍ଟିର ପ୍ରାରମ୍ଭିକ ମୂଲ୍ୟାୟନ ଏଯାବତ୍ ହୋଇନାହିଁ କହିଲେ ଚଳେ । ଓଡ଼ିଆ ଆଞ୍ଚଳିକ ଉପନ୍ୟାସ ରଚନା କ୍ଷେତ୍ରରେ ଗୋପୀନାଥ ମହାନ୍ତିଙ୍କ ସମକାଳୀନ ରୂପେ ଔପନ୍ୟାସିକ ପରଶୁରାମ ସର୍ବଦା ସ୍ମରଣୀୟ ହୋଇ ରହିବେ । କଳାହାଣ୍ଡିର ଗ୍ରାମ୍ୟଜୀବନ ଓ ଆଦିବାସୀ ସଂସ୍କୃତି ତାଙ୍କ ପ୍ରତ୍ୟେକ ଉପନ୍ୟାସର ପୃଷ୍ଠପଟ । ତାଙ୍କ ସାର୍ଥକ ରଚନାବଳୀରେ ମାନବ [illegible] ନୈତିକ ମୂଲ୍ୟବୋଧ ଓ ଜୀବନଚର୍ଯ୍ୟା ଏକାନ୍ତ ଭାବେ ପ୍ରମୂର୍ତ୍ତ । ତାଙ୍କ ରଚନାରେ [illegible] ଅଳର ମାନବ କାହାଣୀ ମଧ୍ୟ ଦେଇ ନିଖୁଣ ମଣିଷର କଥା ଗୁମ୍ଫିତ ।

ଏକ ସାର୍ଥକ ଶିଳ୍ପସିଦ୍ଧି ଉପନ୍ୟାସ ରୂପେ 'ମୂଲିଆ ପିଲା' ଲେଖକଙ୍କ ସର୍ବଶ୍ରେଷ୍ଠ କଳାକୃତି । ଏହି ଉପନ୍ୟାସରେ କଳାହାଣ୍ଡିର ଗ୍ରାମ୍ୟ ଗଉନ୍ତିଆଙ୍କ ଦ୍ୱାରା ସ୍ଥାନୀୟ କୃଷି-ଭିତ୍ତିକ ସମାଜର ସଂଘର୍ଷମୟ ଶୋଷିତ ଜୀବନର ଚିତ୍ର ନିହିତ । କଳାହାଣ୍ଡିର ସ୍ଥାନୀୟ ଭୂମିପୁତ୍ର ମାନଙ୍କର ସ୍ତରହୀନ ସମାଜ ଓ ଆର୍ଥିକ ବ୍ୟବସ୍ଥା ମଧ୍ୟରେ ରାଜାଶ୍ରିତ କୁଳତା ଓ ବ୍ରାହ୍ମଣାଦିଙ୍କ ଅନୁପ୍ରବେଶ ଓ ଭୂମି ହସ୍ତାନ୍ତରଣ-ଭୂମିପୁତ୍ର ମାନଙ୍କର ପ୍ରତିକ୍ରିୟା ସ୍ୱରୂପ ୧୮୮୨ର ଐତିହାସିକ କନ୍ଧମେଳି–ଏହାର ଦମନ ତଥା ଆଗନ୍ତୁକଙ୍କ ବିଜୟ, ଚିରିଚର ଭୂ-ସମ୍ପତ୍ତି ଛାଡ଼ି ଅରଣ୍ୟାନୀ ମଧ୍ୟରେ ନୂତନ କୃଷି–ସମାଜ ଗଠନ, କେତେକ

Digitized by srujanika@gmail.com

ବିଜିତ ବିଜେତାଙ୍କଠାରେ ସ୍ୱାଧୀନ କୃଷକ ସ୍ତରରୁ ପରାଧୀନ କୃଷି ଶ୍ରମିକ ସ୍ତରକୁ ଅବରୋହଣ, ଏହାହିଁ ଏ ମାଟିର ଆର୍ଥିକ ଶୋଷଣ ଓ ସାମାଜିକ ବୈଷମ୍ୟର ନଗ୍ନଚିତ୍ର । ବସ୍ତୁତଃ ଏହାହିଁ ଶ୍ରୀ ମୁଣ୍ଡଙ୍କ ଉପନ୍ୟାସର ପୃଷ୍ଠଭୂମି । ଧର୍ମଭୀରୁ, ସରଳ ଓ ଅଜ୍ଞ କୃଷି-ଭିତ୍ତିକ ସମାଜକୁ ଗ୍ରାମ୍ୟ ଗଉନ୍ତିଆର 'ମାଧବସାହୁ'ର ଶୋଷଣ ଓ ଶାସନର କ୍ରମପରିଣତି ସ୍ୱରୂପ ପିତୃ ମାତୃହୀନ ଚଳିହୋଇନ୍ତ 'ଘନା' ପରି ମୂଲିଆ ପିଲର ସୃଷ୍ଟି । ସେହିପରି ଆର୍ଥିକ କଷଣରେ ଜର୍ଜରିତ 'ଭେବ' ପରି ନଅ ଦଶ ବର୍ଷର ଝିଅକୁ ଗଉନ୍ତିଆ ପାଖରେ ତାର ବାପା ମାଁ କେତେ ମାଣ ଧାନ ବଦଳରେ ବିକି ଦେବାର ଘଟଣା ଲେଖକଙ୍କ ଉପନ୍ୟାସରେ ନିଷ୍ଠୁର ସତ୍ୟ ରୂପେ ବର୍ଣ୍ଣିତ । ଏହି ଆର୍ଥିକ ବୈଷମ୍ୟ ହିଁ କଳାହାଣ୍ଡିର ପଲ୍ଲୀବକ୍ଷୀର ପୃଷ୍ଠଭୂମି । ଏଠି ମଣିଷର ଭାଗ୍ୟ ଦେବତା ଦ୍ୱାରା ନିୟନ୍ତ୍ରିତ ନୁହେଁ– ମଣିଷ ଦ୍ୱାରା । ତେଣୁ 'ଘନା' ରେବକୁ ବିବାହ କରିପାରିନି କିମ୍ବା ତା ପୈତୃକ ସମ୍ପତ୍ତି ମାଧବ ସାହୁଠାରୁ ମୁକୁଳାଇ ପାରିନି । ଶେଷରେ ବିଫଳ ହୋଇ ଆତ୍ମହତ୍ୟା କରିଛି । ଏହାହିଁ ମୂଲିଆ ପିଲର ଶେଷ ପରିଣତି ।

ଠିକ୍ ଏହି ପୃଷ୍ଠଭୂମିରେ ହିଁ ଔପନ୍ୟାସିକଙ୍କ ପରବର୍ତ୍ତୀ ଉପନ୍ୟାସ "ବସୁନ୍ଧରର ମାଟି"ର ପରିକଳ୍ପନା । ଏହି ଉପନ୍ୟାସର ନାୟକ ଚଇତନ କନ୍ଧ ତାର ଗାଁ ମହାଜନ ଅନନ୍ତ ସାହୁ ପାଖରେ ଦବି ଯାଇନାହିଁ । ତାର ଶୋଷଣକୁ ମୁଣ୍ଡପାତି ସହିଯାଇ ନାହିଁ । ଶ୍ରେଣୀ ସଂଘର୍ଷର ଶିକାର ନହୋଇ ସେ ସ୍ୱତନ୍ତ୍ର ସ୍ଥାନରେ ବାସଗୃହ ଓ ଜମି ନିର୍ମାଣ କରିଛି । ଗାନ୍ଧୀଙ୍କ ଅହିଂସାନୀତି ଦ୍ୱାରା ପ୍ରଯୋଜିତ ଓ ଆତ୍ମ ପ୍ରତ୍ୟାହାର ଆଦର୍ଶରେ ଚଇତନ କନ୍ଧ ଅନୁପ୍ରାଣିତ ହୋଇ ଏକକ ସଂଗ୍ରାମ କରି ଏକ ଶ୍ରେଣୀ ବିହୀନ ସମାଜ ଗଠନରେ ସେ ସଫଳ ହୋଇଛି । ପ୍ରଥମ ଉପନ୍ୟାସର ଅସଫଳ ଇଚ୍ଛା ଦ୍ୱିତୀୟଟିରେ ପୂର୍ଣ୍ଣତା ପ୍ରାପ୍ତ ହୋଇଛି ।

ଲେଖକଙ୍କ 'ମୁକ୍ତି ପଥର ଦୁଇଟି ଯାତ୍ରୀ' (୧୯୬୫) ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଜୀବନୀ ଉପରେ ଆଧାରିତ ଏକ ସୁଖପାଠ୍ୟ ଉପନ୍ୟାସ । ତାଙ୍କ 'ମିରୁନିନା' ଗଳ୍ପ ସଂକଳନ କଳାହାଣ୍ଡିର କିମ୍ବଦନ୍ତୀ, ଲୋକ କଳାକାର ଜୀବନୀ, ବିଭିନ୍ନ ଜାତି ତଥା ଗୋଷ୍ଠୀର ବିଭିନ୍ନ ସାମାଜିକ ଓ ବ୍ୟକ୍ତିଗତ ଅନୁଭୂତି ଓ ସମସ୍ୟା ସମ୍ପର୍କରେ ରଚିତ ସାତୋଟି ଗଳ୍ପର ସମାହାର ।

ଲେଖକଙ୍କ ଅପ୍ରକାଶିତ ଦଶଗୋଟି ଉପନ୍ୟାସ କଳାହାଣ୍ଡିର ଐତିହ୍ୟ ଓ ସଂସ୍କୃତି ବିଭିନ୍ନ ରାଜବଂଶର କାହାଣୀ, ଆଦିବାସୀ ଗୋଷ୍ଠୀଙ୍କ ସଂସ୍କୃତି ଉପରେ ଭିତ୍ତି କରି ରଚିତ । ତାଙ୍କ ରଚିତ 'ଟିକ୍ରାଜାନି' 'ଚଇତ ସିଂ' 'ଅମ୍ଳାନଫୁଲ' ଓ 'ମାଧୁରୀ' କଳାହାଣ୍ଡିର

Digitized by srujanika@gmail.com

ଆଦିବାସୀ ସଂପ୍ରଦାୟ ଉପରେ ଏକ ଏକ ସାର୍ଥକ ଉପନ୍ୟାସ । 'ଅଭ୍ୟୁଦୟ' ଓ 'ଦିଗ୍‌ବିଜୟୀ ନନ୍ଦିର' ତାଙ୍କ ଦୁଇଟି ଐତିହାସିକ ଉପନ୍ୟାସ । କଳାହାଣ୍ଡିର ରାଜପରଂପରାରେ ପ୍ରଥମେ ଗୋଟିଏ କନ୍ଧ ଯୁବତୀକୁ ବିବାହ କରିବା ପରଂପରାର ଭିତ୍ତିଭୂମିରେ 'ପାଟରାଣୀ' ଉପନ୍ୟାସର ପରିକଳ୍ପନା । କଳାହାଣ୍ଡିର ଇଷ୍ଟ ଦେବୀ ମାଣିକେଶ୍ୱରୀଙ୍କ ପୃଷ୍ଠଭୂମିରେ ତନ୍ତ୍ର ସାଧନା ସମନ୍ୱିତ୍ ଉପନ୍ୟାସ 'ମହାରାଣୀ ରତ୍ନମଞ୍ଜରୀ' ଶ୍ରୀ ମୁଣ୍ଡଙ୍କ ସାର୍ଥକ ସୃଷ୍ଟି । ତାଙ୍କ 'ସ୍ୱର୍ଣ୍ଣମୃଗ' ଓ 'ଗାନ୍ଧୀବାବା' ଦୁଇଟି ରାଜନୈତିକ ଉପନ୍ୟାସ ଯହିଁରେ ସମକାଳୀନ ସମାଜର ରାଜନୈତିକ ସାମାଜିକ ଚିତ୍ର ସହିତ ଗଣତାନ୍ତ୍ରିକ ଦେଶରେ ଅଶିକ୍ଷିତ ଜନମାନସର ଚିନ୍ତାଧାରା ପ୍ରକଟିତ ।

ଏହି ଔପନ୍ୟାସିକ କଳାହାଣ୍ଡିର ଲୋକପରଂପରା, ଚଳଣି ଓ ଲୋକଗୀତ, ଲୋକନୃତ୍ୟ, ଲୋକବିଶ୍ୱାସ ଆଦିକୁ ତାଙ୍କ ଉପନ୍ୟାସରେ ଅବିକଳ ଭାବେ ସ୍ଥାନିତ କରି ଅଛନ୍ତି । ଏହି ଦୃଷ୍ଟିରୁ ତାଙ୍କର ପ୍ରତ୍ୟେକ ଉପନ୍ୟାସ କଳାହାଣ୍ଡିର ଲୋକସଂସ୍କୃତିର ସାର୍ଥକ ସମ୍ବାହକ । ଉପନ୍ୟାସ ମଧ୍ୟରେ ବିଭିନ୍ନ ଚରିତ୍ର ମାଧ୍ୟମରେ ଏହି ଅଞ୍ଚଳର ଲୋକଗୀତ, ଧାଙ୍ଗଡାଧାଙ୍ଗଡୀଙ୍କର ନୃତ୍ୟ, ଗ୍ରାମରେ ବିଶେଷ ପର୍ବପର୍ବାଣି ତଥା ବିଭିନ୍ନ ଋତୁରେ ଗ୍ରାମ୍ୟ ପ୍ରକୃତିର ମନୋରମ ଚିତ୍ର ତାଙ୍କ ଲେଖନୀରେ ପ୍ରାଣବନ୍ତ ହୋଇ ଫୁଟି ଉଠିଛି । ଚିରିତ୍ରାଭିମୁଖୀ ସଂଳାପ ଆଞ୍ଚଳିକ ଭାଷାଯୁକ୍ତ ହେତୁ ତାହା ସ୍ୱାଭାବିକ ଓ ଅକୃତ୍ରିମ ଗୁଣଯୁକ୍ତ ।

ଜଣେ ଯୁଗସଂଚେତନ କବି ଆମ୍ଭର ପ୍ରତିନିଧି ରୂପେ ଶ୍ରୀ ମୁଣ୍ଡଙ୍କ ଲେଖନୀ ନିଃସୃତ– ବ୍ରଜମୋହନ ଦେଓ ଓ ଉତ୍କଳେଶ୍ୱରୀ କାବ୍ୟ ତାଙ୍କ ଜାତୀୟ ଚେତନାର ସ୍ମାରକୀ । ଉତ୍କଳେଶ୍ୱରୀ କାବ୍ୟରେ କଂଗ୍ରେସର ଜାତୀୟ ଆନ୍ଦୋଳନଠାରୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପୁଣି ୧୯୫୪ ମସିହା ପର୍ଯ୍ୟନ୍ତ ଉତ୍କଳର ସାମାଜିକ ରାଜନୈତିକ ଚିତ୍ର ସହିତ ସେହି ପୃଷ୍ଠଭୂମିରେ ଓଡ଼ିଶାର ପ୍ରାଚୀନ ଐତିହ୍ୟ ଓ ସଂସ୍କୃତି, ଦେବା ଦେବୀ, ମନ୍ଦିର, କବିକୁଳ, ଉତ୍କଳୀୟ କଳା ସ୍ଥାପଣ ଓ ସାହିତ୍ୟର ଚିତ୍ର ବର୍ଣ୍ଣିତ । ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ମିଶଣ ସଂପର୍କରେ ଓଡ଼ିଶା ନେତୃବର୍ଗଙ୍କ ଉଦାସୀନତାକୁ ଲକ୍ଷ କରି କବି ଲେଖୁଛନ୍ତି :–

ଦେଓ ଭୋଗ ଫୁଲଝର, ବିଦ୍ୱାନ୍ ଆଗତ,
ଖାଣ୍ଟି ଓଡ଼ିଆ ଅଞ୍ଚଳ ମଧ୍ୟ ପ୍ରଦେଶର
ରହିଗଲା ଚଉଦିଗେ ସାମାଦାନୀ ଝଡ଼
ସାକ୍ଷୀ ଦେଲେ ବଡ଼ା ବଡ଼ା ପ୍ରତିନିଧି ଦଳ ।।

ବିଚ୍ଛିନ୍ନାଞ୍ଚଳ ଓଡ଼ିଆ ସଂସ୍କୃତିର ବିପର୍ଯ୍ୟୟ ସଂପର୍କରେ କବି ବ୍ୟଥିତ ହୋଇ ଗାଇଛନ୍ତି–

ବିଚ୍ଛିନ୍ନ ଅଞ୍ଚଳେ ରହି ଓଡ଼ିଆ ସଂସ୍କୃତି,
ହେଲା ବିପର୍ଯ୍ୟସ୍ତ । ମାତୃଭାଷା ଓଡ଼ିଆର

Digitized by srujanika@gmail.com

ହେଉ ଅବଲୁପ୍ତ । ଧ୍ୱସ୍ତ ହୋଇଯାଉ ଜାଗୃତ,
ପ୍ରବାସୀ ଓଡ଼ିଆ ନେତ୍ରୁଁ ବହେ ଅଶ୍ରୁଧାର ।

କବି ଶ୍ରୀ ମୁଣ୍ଡ କଳାହାଣ୍ଡିର ଲୋକଚେତନାର ଜାଗରଣ ପାଇଁ କଳାହାଣ୍ଡିର ଘୁମୁରା–ଲୋକନୃତ୍ୟକୁ ମାଧ୍ୟମ ରୂପେ ବ୍ୟବହାର କରିଥିଲେ । ସେ ଏଥି ପାଇଁ ସାବ୍ୟସାଚୀର ଗାନ’ ନାମକ ଏକ ଗୀତିକବିତା ସଙ୍କଳନ ରଚନା କରି ପ୍ରକାଶ କରିଥିଲେ । ଏଥିରେ ପ୍ରେମଗୀତି, ରାଜନୈତିକ, ଦେଶାତ୍ମବୋଧକ, ବ୍ୟଙ୍ଗଶ୍ଳେଷାତ୍ମକ ତଥା ପ୍ରକୃତି-ପ୍ରେମ ଓ ବ୍ୟକ୍ତିକ ଅନୁଭୂତିର ସଫଳ ରୂପ ସ୍ଥାନ ପାଇଅଛି ।

ଜଣେ ସଫଳ କବି ଓ ଔପନ୍ୟାସିକ ତଥା ଲୋକସଂସ୍କୃତିର ଜଣେ ସାର୍ଥକ ପୂଜାରୀ ରୂପେ ଶ୍ରୀ ମୁଣ୍ଡଙ୍କ ରଚନାବଳୀ କଳାହାଣ୍ଡି ସମେତ ପଶ୍ଚିମ ଓଡ଼ିଶାର ଲୋକସଂସ୍କୃତିର ବିଭିନ୍ନ ବିଭବାକୁ ଆଶ୍ରୟକରି ଲେଖନୀ ଚାଳନା କରିଛନ୍ତି । ଜଣେ ମାନବବାଦୀ କଥାକାର ରୂପେ କଳାହାଣ୍ଡିର ଅପାଂକ୍ତେୟ ବନ୍ୟ ସଂସ୍କୃତିର ବିଭିନ୍ନ ଆଶୟ ଗୁଡ଼ିକୁ ବଡ ମର୍ମସ୍ପର୍ଶୀ ଓ ପ୍ରାଣବନ୍ତ ଭାବେ ତାଙ୍କ ସୃଷ୍ଟି ମଧ୍ୟରେ ସଂଚାରିତ କରି ସେ ଚାଲି ଯାଇଛନ୍ତି । ସଂସ୍କୃତି ଓ ସାହିତ୍ୟର ଅଙ୍ଗାଙ୍ଗୀ ଭାବରେ ଜଣେ ସାର୍ଥକ ସଂଯୋଜନକାରୀ ଶିଳ୍ପୀ ରୂପେ ତଥା ଓଡ଼ିଆ ଆଞ୍ଚଳିକ ଉପନ୍ୟାସର ଜଣେ ପଥପ୍ରଦର୍ଶକ ରୂପ ଔପନ୍ୟାସିକ ଶ୍ରୀ ମୁଣ୍ଡଙ୍କ ଅମର ଅବଦାନ ଓଡ଼ିଆ ଭାଷା ଓ ଜାତିର ଚିରସ୍ମରଣୀୟ ହୋଇ ରହିବ ଏଥିରେ ସନ୍ଦେହ ନାହିଁ ।



ସିନାପାଲି, କଳାହାଣ୍ଡି
୭୬୬୧୦୮



ପରଶୁରାମ ମୁଣ୍ଡ

Digitized by srujanika@gmail.com

# ଭୁବନେଶ୍ୱର ବେହେରାଙ୍କ ସାହିତ୍ୟ ମାନସ

ଅଧ୍ୟାପକ ସୁଦର୍ଶନ ପଣ୍ଡା



ସମକାଳିନ ଓଡ଼ିଆ ସାହିତ୍ୟରେ ଭୁବନେଶ୍ୱର ବେହେରା ଅନ୍ୟତମ ସଫଳ ଗଦ୍ୟ-ଶିଳ୍ପୀ । ଜନଜୀବନର ନିବିଡ ସମ୍ପର୍କରେ ଆସି ସେ ଅନୁଭୂତି ବହୁଳ ଜୀବନଭାଷ୍ୟ ରଚନା କରିଛନ୍ତି । ପ୍ରବନ୍ଧ, କ୍ଷୁଦ୍ରଗଳ୍ପ ଓ ଭ୍ରମଣ ବୃତ୍ତାନ୍ତର ଲେଖକ ଭାବରେ ଓଡ଼ିଆ ସାହିତ୍ୟରେ ସେ ସୁପରିଚିତ । ସାମ୍ପ୍ରତିକ ମଣିଷର ସାମାଜିକ ଜୀବନ, ଏକ ପକ୍ଷରେ ପରମ୍ପରାର ପ୍ରତିଧ୍ୱନି ଓ ଅପର ପକ୍ଷରେ ବାହ୍ୟଶୃଙ୍ଖଳତାର ଆଟୋପ ଭିତରେ ବହୁ ଜଟିଳ ପରିସ୍ଥିତି ନେଇ ଗତିଶୀଳ । ମଣିଷର ଏଇ ଜଟିଳ ମାନସିକ ଅବସ୍ଥା ଭୁବନେଶ୍ୱର ବେହେରାଙ୍କ ସାହିତ୍ୟରେ ପ୍ରତିଫଳିତ ହୋଇଛି । ଜୀବନର ପରିଣତ ଅବସ୍ଥାରେ ଓଡ଼ିଆ ଭାଷାରେ ଲେଖନୀ ଚାଳନା କରି ସ୍ୱକୀୟ ବୈଶିଷ୍ଟ୍ୟରେ ଓଡ଼ିଆ ସାହିତ୍ୟକୁ ଗୌରବମଣ୍ଡିତ କରିଛନ୍ତି ।

ଭୁବନେଶ୍ୱର ବେହେରା ୧୯୧୭ ମସିହା ଆଷାଢ଼ର ପ୍ରଥମ ଦିବସରେ ପୂର୍ବତନ ଗଡଜାତ ରାଜ୍ୟ କଳାହାଣ୍ଡିର କାଶୀବାହାଲ ଗ୍ରାମରେ ଜନ୍ମଗ୍ରହଣ କରନ୍ତି । ପିତା ଲକ୍ଷ୍ମଣ ପ୍ରସାଦଙ୍କର ସରଳତା, ସଂସାର ବାଦିତା, ଦେଶାତ୍ମବୋଧକତା ତଥା ଉଭୟ ପିତାମାତାଙ୍କ ଧର୍ମ ପରାୟଣଭାବ ଭୁବନେଶ୍ୱରଙ୍କୁ ପିଲାଦିନୁ ପ୍ରଭାବିତ କରେ । ତଦାନିନ୍ତନ କଳାହାଣ୍ଡିର ଏକମାତ୍ର ହାଇସ୍କୁଲ, ବି. ଏମ୍. ହାଇସ୍କୁଲରେ ସେ ୧୯୩୫ ମସିହାରେ ମାଟ୍ରିକୁଲେସନ୍ ପାଶ କରି ପରବର୍ତ୍ତୀ କାଳରେ ସେତେବେଳର ଓଡ଼ିଶାର ଏକମାତ୍ର କଲେଜ, ରେଭେନ୍ସା କଲେଜରେ ପଦାର୍ଥ ବିଜ୍ଞାନ ଅନର୍ସ ସହ ବି. ଏସ୍. ସି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଅନ୍ତି । ଏହାପରେ ପାଟଣାରେ ସିଭିଲ ଇଂଜିନିୟରିଂ ପଢି ୧୯୪୩ ମସିହାରେ ପ୍ରଥମ ଶ୍ରେଣୀରେ କୃତିତ୍ୱ ହାସଲ କରନ୍ତି । ୧୯୪୫ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାରେ ସିଭିଲ ଇଂଜିନିୟରିଂରେ ସର୍ବୋଚ୍ଚ ଡ଼ିଗ୍ରୀ ପ୍ରାପ୍ତ ହୁଅନ୍ତି । ଏହାପରେ ହିଁ ଭୁବନେଶ୍ୱର ବେହେରାଙ୍କ କର୍ମମୟ ଜୀବନର ହୁଏ ଆରମ୍ଭ । ୧୯୪୮ ରୁ ୧୯୫୬ ପର୍ଯ୍ୟନ୍ତ ହୀରାକୁଦ ନଦୀବନ୍ଧ ନିର୍ମାଣରେ ଯନ୍ତ୍ରୀ ଭାବରେ ଦାୟିତ୍ୱ ନିର୍ବାହ, ୧୯୫୬ ମସିହାରେ ରାଉରକେଲା ଇଂଜିନିୟରିଙ୍ଗ କଲେଜର ଅଧ୍ୟାପନା, ୧୯୭୧ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ଏବଂ କୁଳପତିତ୍ୱର କାର୍ଯ୍ୟକାଳପୂର୍ଣ୍ଣ ହେବାପରେ ଆଫ୍ରିକାଠାରୁ ଫେରି

Digitized by srujanika@gmail.com

ଲୋକ ସେବା ଆୟୋଗର ସଭ୍ୟରୂପେ ଦକ୍ଷତା ଓ ସାଧୁତା ସହ କାର୍ଯ୍ୟ ନିର୍ବାହ କରି ଅବସର ଗ୍ରହଣ କରନ୍ତି । ଛାତ୍ର ଜୀବନରେ ମହାତ୍ମା ଗାନ୍ଧୀଙ୍କର ବ୍ୟକ୍ତିତ୍ୱ ଭୁବନେଶ୍ୱର ବେହେରଙ୍କ ମାନସରେ ବିଶେଷ ଆଲୋଡନ ସୃଷ୍ଟି କରେ । ଦେଶପ୍ରେମୀ ଲକ୍ଷ୍ମଣ ପ୍ରସାଦଙ୍କର ସନ୍ତାନ ଭାବରେ ଯେଉଁ ଜାତୀୟ ଚେତନା ଶ୍ରୀଯୁକ୍ତ ବେହେରଙ୍କ ପ୍ରାଣରେ ଉଦ୍‌ଜୀବିତ ଥାଏ, ତାହା ପାଟଣାଠାରେ ସିଭିଲ ଇଂଜିନିୟରଂ ଅଧ୍ୟୟନ କାଳରେ ବହୁବିକଶିତ ହୁଏ । କିନ୍ତୁ ପରିସ୍ଥିତିର ପରିବର୍ତ୍ତିତ ମୋଡ଼ରେ ଭୁବନେଶ୍ୱର ସ୍ୱାଧୀନତା ଆନ୍ଦୋଳନର ଶିବିରରେ ଯୋଗଦେବାକୁ ସକ୍ଷମ ନହୋଇ ଭାବୀ ସ୍ୱାଧୀନ ଭାରତର ନବ-ନିର୍ମାଣ କ୍ଷେତ୍ରରେ ଅନ୍ୟତମ ନିର୍ମାତାର ଭୂମିକା ନେବା ଉଦ୍ଦେଶ୍ୟରେ ସୁଅଧ୍ୟୟନର ପରି-ସରରେ ନିଜକୁ ନିୟୋଜିତ କରନ୍ତି । ଏଣୁ ପରାଧୀନ ଭାରତର ବହୁ ସମସ୍ୟା ଏବଂ ଭାବୀ ସ୍ୱାଧୀନ ଭାରତର ସ୍ୱପ୍ନ ସମ୍ପର୍କରେ ପ୍ରତ୍ୟକ୍ଷ ଭାବରେ ଭୁବନେଶ୍ୱର ବେହେରା ସଚେତନ । ସ୍ୱାଧୀନ ଭାରତରେ ନିଜର କର୍ମମୟ ଜୀବନ ଭିତରେ କାରିଗରି ଶିକ୍ଷା ଓ ସାଂସ୍କୃତିକ କ୍ଷେତ୍ରରେ ସେ ବିଶେଷ ଜଡ଼ିତ । ଏଣୁ ସମାଜର ନିମ୍ନଶ୍ରେଣୀରୁ ସମ୍ଭ୍ରାନ୍ତ ଶ୍ରେଣୀ, ଅଶିକ୍ଷିତରୁ ଶିକ୍ଷିତ ଏବଂ ଉଚ୍ଚଶିକ୍ଷିତ ସମ୍ପ୍ରଦାୟ ପର୍ଯ୍ୟନ୍ତ ବିଭିନ୍ନ ସ୍ତରରେ ଲୋକଙ୍କର ଜୀବନ ଓ ଜଂଜାଳ ସମ୍ପର୍କରେ ସେ ଅବହିତ । ଏଣୁ ଜୀବନ ଓ ସମସ୍ୟାର ଅନୁଶୀଳନାତ୍ମକ ଦୃଷ୍ଟିଭଂଗୀର ସରସ ଅଭିବ୍ୟକ୍ତି ହିଁ ତାଙ୍କର ସାହିତ୍ୟରେ ପରିଲକ୍ଷିତ ।

ଭୁବନେଶ୍ୱର ବେହେରଙ୍କ ଲେଖନୀରୁ କ୍ଷଣପରୀକ୍ଷ (୧୯୭୮), ସହାବସ୍ଥାନ (୧୯୭୯) ନାମରେ ଦୁଇଟି ପ୍ରବନ୍ଧ ପୁସ୍ତକ, ପଶ୍ଚିମ ଆଫ୍ରିକାରେ ଓଡ଼ିଆ ଢ଼େଙ୍କି (୧୯୭୯ ନାମକ ଭ୍ରମଣ ବୃତ୍ତାନ୍ତ, କଥା ଓ ଇଥା ୧୯୭୯), ଫର୍‌ଫର୍ ଉଡ଼େ ୧୯୮୦), ଆନ୍‌ସାରୀ ଗଳ୍ପ ଓ ଅନ୍ୟାନ୍ୟ ଗଳ୍ପ (୧୯୮୫) ନାମରେ ତିନୋଟି ଗଳ୍ପ ସଙ୍କଳନ ସ୍ଥାନେ ପ୍ରକାଶିତ । 'କ୍ଷଣପରୀକ୍ଷ' ଓ 'ସହାବସ୍ଥାନ'ର ଲଳିତ ନିବନ୍ଧ ସକଳରେ ସାହିତ୍ୟ ସାଧକ ଭୁବନେଶ୍ୱର ସ୍ୱାଧୀନୋତ୍ତର ପାଶ୍ଚାତ୍ୟ ଅଭିମୁଖୀ ସ୍ୱେଚ୍ଛାବାଦୀ ଭାରତୀୟ ଜୀବନରେ ଉପୁଜିଥିବ ସାମା-ଜିକ, ଶିକ୍ଷା ଏବଂ ସାଂସ୍କୃତିକ, ରାଜନୈତିକ ଓ ଅର୍ଥନୈତିକ ସମସ୍ୟା ଓ ସଙ୍କଟକୁ ବିଚାର କରିଛନ୍ତି । ଅପର ପକ୍ଷରେ ଗଳ୍ପ ସମୂହରେ ସ୍ୱାଧୀନୋତ୍ତର ଭାରତର ନବନିର୍ମାଣ ଯୁଗରେ ସ୍ୱାଧୀନ ଭାରତର ସ୍ୱପ୍ନଭଂଗର ଚିତ୍ରକୁ ସମାଜର ନିମ୍ନସ୍ତରରେ ଚିରିବାରୁ ଉଚ୍ଚସ୍ତରର ଚରିତ୍ର ମଧ୍ୟରେ ପ୍ରତିଫଳିତ କରିଛନ୍ତି । ଏଣୁ ତାଙ୍କରି ସାହିତ୍ୟ ସମକାଳିନ ଜୀବନଧାରାର ପୃଷ୍ଠଭୂମି ଉପରେ ସାମ୍ପ୍ରତିକ ମଣିଷର ବହୁବର୍ଣ୍ଣ ଚରିତ୍ରର ଚିତ୍ରହିଁ ଉଦ୍‌ଭାସିତ ହୋଇଛି । ବ୍ୟକ୍ତିଗତ ଅନୁଭୂତି, ଅଧ୍ୟୟନ ଓ ଅନୁଶୀଳନ ସ୍ପର୍ଶସଞ୍ଜାତ ହେତୁ ଚରିତ୍ରାବଳୀ ଓ ବିଷୟ-ବସ୍ତୁ ବାସ୍ତବ ଓ ମର୍ମସ୍ପର୍ଶୀ ହୋଇ ପାରିଛି ।

ପ୍ରାବନ୍ଧିକ ବେହେରା ପ୍ରବନ୍ଧ ସମୂହରେ ବିଭିନ୍ନ ସମସ୍ୟା ଉପସ୍ଥାପନ କରି ଏକ ସୁଚିନ୍ତିତ ଦିଗ୍‌ଦର୍ଶନ ପ୍ରଦାନ କରିଛନ୍ତି । ଦୀର୍ଘ ୨୧ବର୍ଷ କାଳ ଶିକ୍ଷାକ୍ଷେତ୍ରରେ କର୍ମମୟ

Digitized by srujanika@gmail.com

ଜୀବନ ଅତିବାହିତ କରିବା ଅବସରରେ ସେ ବିଭିନ୍ନ ସ୍ଥଳରେ ବହୁ ଛାତ୍ରଛାତ୍ରୀ—ଯୁବକ ଯୁବତୀଙ୍କ ସଂପର୍କରେ ଆସିଛନ୍ତି । ସେ ଦେଖିଛନ୍ତି ଯେ, ଆଜିର ଯୁବଛାତ୍ରମାନେ ପାଣ୍ଡବ କୁଳର ପରୀକ୍ଷିତ ନରନାଥଙ୍କ ପରି ବୃଦ୍ଧ ଗୁରୁଜନମାନଙ୍କ ଗଳାରେ ମଲାସାପ ଝୁଲାଇ ଦେବାପାଇଁ ଉତ୍କଣ୍ଠିତ ନହେଲେ ମଧ୍ୟ ପଶ୍ଚାତପଦ ନୁହନ୍ତି । ସେଦିନର ପରୀକ୍ଷିତ ଏବଂ ଆଜିର ପରୀକ୍ଷିତଙ୍କ ଭିତରେ ଯଥେଷ୍ଟ ପ୍ରଭେଦ । ପରୀକ୍ଷିତଙ୍କ ସର୍ପଦଂଶନରେ ମୃତ୍ୟୁ ହୋଇଥିଲା କିନ୍ତୁ ଆଜିର ପରୀକ୍ଷମାନଙ୍କ ଭିତରୁ କେତେକ ଗରଳଭକ୍ଷୀ, ତେଣୁ ସର୍ପ-ଦଂଶନରେ ତାଙ୍କର ମୃତ୍ୟୁ ସମ୍ଭବ ନୁହେ । ତେଣୁ ସେହି ଅଭିଶପ୍ତ ଓ ଅନଭିଶପ୍ତ ଛାତ୍ରଙ୍କ ସଂସ୍କାର ଉଦ୍ଦେଶ୍ୟରେ 'ଶ୍ରେଣୀପରୀକ୍ଷା' ରଚିତ । ପ୍ରାବନ୍ଧିକ ସାମ୍ପ୍ରତିକ ସମାଜ ଜୀବନରେ ଅନୁସୃତ ରୀତିର ତର୍ଜମା କରି ପୁରାଣ ଏବଂ ସଂସ୍କୃତ କଥା ସାହିତ୍ୟର ବିଭିନ୍ନ କାହାଣୀ ମାଧ୍ୟମରେ ଭାରତୀୟ ସଂସ୍କୃତିର ଶାଶ୍ୱତ ଚେତନାର ଉତ୍କର୍ଷତା ପ୍ରତିପାଦନ କରିଛନ୍ତି । ଭାରତ ବର୍ଷର ସଭ୍ୟତା ଓ ସଂସ୍କୃତି ପ୍ରତି ପ୍ରଚଣ୍ଡ ଆସ୍ଥା ଓ ମୋହ ପ୍ରକଟିତ ହୋଇଛି । ଭାରତୀୟ ଜୀବନ ଦର୍ଶନ ହିଁ ମନେହୋଇଛି ଶାଶ୍ୱତ–ସନାତନ । ତେଣୁ ସେ କହିଛନ୍ତି : ପାଶ୍ଚାତ୍ୟ ଯୁବ ଜଗତ୍ ସଙ୍ଗରେ ତାଳ ମିଳାଉ ଭାରତୀୟ ଯୁବସମାଜ ଆଜି ପୁରୁଣା ରୀତି ନୀତି, ଢଙ୍ଗ ରଙ୍ଗ ଗୁଡ଼ିକଙ୍କ ବିରୁଦ୍ଧରେ ବୈପ୍ଳବିକ ଆହ୍ୱାନ ଦେଇଛି । ଯାହା ଶାଶ୍ୱତ ଓ ଚିରନ୍ତନ, ତାହା ନିତ୍ୟନୂତନ-କଦାପି ପୁରାତନ ହୋଇ ପାରେନା । ସୂର୍ଯ୍ୟ ତେଣୁ କେବେ ବୁଢ଼ା ହୁଏନି କିମ୍ବା ପୃଥିବୀ କେବେ ବୁଢ଼ୀ ହୁଏନା । ଭାରତୀୟ ଜୀବନ ଦର୍ଶନ ଚିନ୍ତନୀ ସତ୍ୟ ଉପରେ ପ୍ରତିଷ୍ଠିତ । ସେହି ଜୀବନ ଦର୍ଶନ ତେଣୁ ପୁରୁଣା ହେବ କିପରି ? ଏକଥା କିନ୍ତୁ ସତଯେ ଯୁଗଯୁଗର ଅନ୍ଧ ବିଶ୍ୱାସ ଓ କୁସଂସ୍କାର ଭିତରେ ଏହି ଜୀବନ ଦର୍ଶନ ହଜି-ଯିବା ଉପରେ ବସିଛନ୍ତି-ଅଳିଆ ଗଦା ଭିତରେ ହଜିଲା ରତ୍ନ ମୁଦିଟିଏ ପରି । କର୍ତ୍ତବ୍ୟ ବୋଧରେ ଅଳିଆ ସଫା କରୁ କରୁ ଆମ ଯୁବସମାଜ ଯେପରି ସେହି ଆବର୍ଜନା ସଙ୍ଗରେ ରତ୍ନ ମୁଦିକୁ ଫିଙ୍ଗି ନ ଦିଅନ୍ତି । (୧) ଜ୍ଞାନର ସ୍ୱଳ୍ପତା ଓ ଅଭିଜ୍ଞତାର ଅପରିପକ୍ୱତା ସତ୍ତ୍ୱେ ଆଜିର ଛାତ୍ର ଶିକ୍ଷକ ସଙ୍ଗରେ ସମାନ ଆସନରେ ବସି କଲେଜ ଓ ବିଶ୍ୱବିଦ୍ୟାଳୟର ପରିଚାଳନାରେ ଅଂଶ ଗ୍ରହଣ କରିବା ପାଇଁ ଉତ୍କଣ୍ଠିତ । ଏହି ତାର୍କିକ ବିଷୟ ଉପସ୍ଥାପନ କରି ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ ଏବଂ ସନାତନୀ ଭାରତୀୟ ସଂସ୍କୃତି ସଂପର୍କରେ ପ୍ରାବ-ନ୍ଧିକ ମତବ୍ୟକ୍ତ କରନ୍ତି–"ପ୍ରେମ, ଭକ୍ତି, ସ୍ନେହ, ଦୟା ପ୍ରଭୃତି ହୃଦୟର ମହନୀୟ ଗୁଣ ସବୁ ଯେଉଁ ସବୁ ସମ୍ବନ୍ଧରେ ଜଡ଼ିତ, ସେହି ସବୁ ବିଷୟ ମାନଙ୍କରେ ଆମ ଭାରତୀୟ ପରଂପରା ଓ ସଂସ୍କୃତି ତର୍କକୁ ସ୍ଥାନ ଦିଏ ନାହିଁ । ପାଶ୍ଚାତ୍ୟ ସଭ୍ୟତା ଓ ଭାରତୀୟ ସଭ୍ୟତା ମଧ୍ୟରେ ଏହାହିଁ ପ୍ରଧାନ ପାର୍ଥକ୍ୟ ରୂପେ ପରିଲକ୍ଷିତ ହୁଏ । ପାଶ୍ଚାତ୍ୟ ସଭ୍ୟତାରେ ବୁଦ୍ଧିର ସ୍ଥାନ ମୁଖ୍ୟଥିବା ସ୍ଥଳେ ଭାରତୀୟ ସଭ୍ୟତାରେ ହୃଦୟର ସ୍ଥାନ ମୁଖ୍ୟ ଓ ବୁଦ୍ଧିର ସ୍ଥାନ ଗୌଣ ଆସନ ନେଇଥାଏ । ତେଣୁ 'ବିଶ୍ୱାସେ ମିଳଇ ହରି, ତର୍କେ ବହୁ ଦୂର'

Digitized by srujanika@gmail.com

ନୀତିରେ ଭକ୍ତ ଓ ଭଗବାନଙ୍କ ସମ୍ବନ୍ଧ, ପିତା ଓ ପୁତ୍ର ସମ୍ବନ୍ଧ, ପତି ଓ ପତ୍ନୀର ସମ୍ବନ୍ଧ ତଥା ଗୁରୁ ଓ ଶିଷ୍ୟ କିମ୍ବା ଶିକ୍ଷକ ଓ ଛାତ୍ରର ସମ୍ବନ୍ଧରେ ଆମ ପରଂପରା ତାର୍କିକ ମୀମାଂସା ଅପେକ୍ଷା ହୃଦୟର ବିଶ୍ୱାସକୁ ପ୍ରାଧାନ୍ୟ ଦେଇଥାଏ ।” (୨)

ଆଜି କିନ୍ତୁ ସମୟ ବଦଳି ଯାଇଛି । ପାଶ୍ଚାତ୍ୟ ସଭ୍ୟତାର କଳେଇ କଳ ଚାକଚକ୍ୟ ଓ ଭୋଗ ବିଳାସମୟ ଜୀବନର ସୌଖୀନତା ପାଖରେ ଭାରତୀୟ ସଭ୍ୟତାର ତ୍ୟାଗପୂତ ଜୀବନ ପରାଜୟ ସ୍ୱୀକାର କରିଛି । ବୁଦ୍ଧି ପାଖରେ ହୃଦୟ ହାର ମାନିଛି । ଶିକ୍ଷକ ଓ ଛାତ୍ରର ସ୍ନେହ ଓ ଭକ୍ତିପୂର୍ଣ୍ଣ ପବିତ୍ର ସମ୍ପର୍କରେ ଦେଖା ଦେଇଛି ଯୁକ୍ତି ଓ ତର୍କ । (୩) କିନ୍ତୁ ସେ ପାଶ୍ଚାତ୍ୟ ସଭ୍ୟତାର ଅନୁପ୍ରବେଶ ସତ୍ତ୍ୱେ ଗୁରୁ ଶିଷ୍ୟର ବନ୍ଧନ ଛିନ୍ନ ନୁହେଁ । ଆଜି ଏ ବନ୍ଧନ ଅତି ଶିଥିଳ ହୋଇଯାଇଛି । ତଥାପି ଛାତ୍ରଙ୍କ ଭିତରେ ଆଜି ମଧ୍ୟ ସୁନୀଲ ପରି ଅନେକ ଛାତ୍ର ଅଛନ୍ତି । ଯେଉଁମାନେ ଶିକ୍ଷକ ଓ ଛାତ୍ରଙ୍କ ମଧ୍ୟରେ ଏଇ ବନ୍ଧନକୁ ଠିକ୍ ଚିହ୍ନିପାରନ୍ତି । ସେ ପରି ଛାତ୍ର ଥିବା ପର୍ଯ୍ୟନ୍ତ ଏ ବନ୍ଧନ ଛିନ୍ନ ହେବନି ।(୪) ତେଣୁ ଭାରତୀୟ ପରଂପରାର ସୁରକ୍ଷା ସମ୍ବନ୍ଧରେ ପ୍ରାବନ୍ଧିକ ବେଶ ଆଶାବାଦୀ । ସମ୍ବଲ-ପୁର ବିଶ୍ୱବିଦ୍ୟାଳୟରେ କର୍ମମୟ ଜୀବନ ଅବସରରେ ଛାତ୍ର ସୁନୀଲର ମନ୍ତବ୍ୟ “ଆମେ ଏ ବିଷୟରେ ଉତ୍ତେଜିତ ହୋଇ ଅନେକ ଅଯୌକ୍ତିକ କଥା କହିବୁ ସାର୍, ଆପଣ ସେଥିରେ କାହିଁକି ମାଇଣ୍ଡ କରୁଛନ୍ତି ?” (୫) ବ୍ୟତୀତ ନିଜର ଛାତ୍ର ଜୀବନରେ ଶିକ୍ଷକ ଜୟକୃଷ୍ଣ ମହାପାତ୍ରଙ୍କ ପ୍ରେରଣା କିଭଳି ପ୍ରାବନ୍ଧିକଙ୍କୁ ପ୍ରଭାବିତ କରି ହୀରାକୁଦ ବନ୍ଧ ତିଆରି ପରେ ସେ ନିଜେ ଚିଫ୍ ଇଂଜିନିୟର ହୋଇ ରିଟାୟାର୍ଡ କରିବାକୁ ମନ ନ ବଳାଇ ଶିକ୍ଷକ ହେବାକୁ ପସନ୍ଦ କରିଥିଲେ, ତାହାର ଏକ ଜ୍ୱଳନ୍ତ ଉଦାହରଣ । ଏଣୁ ‘ପଶ୍ଚିମ ଆଫ୍ରିକାରେ ଓଡ଼ିଆ ଢେଙ୍କି’ ପୁସ୍ତକରେ ସେ ଉଲ୍ଲେଖ କରନ୍ତି—ଏପରି କେତେ ବ୍ୟକ୍ତିଗତ ଅନୁଭୂତି ଯୋଗୁଁ ମୁଁ ଦୃଢ଼ ନିଶ୍ଚିତ ଯେ ଭାରତୀୟ ଶିକ୍ଷକ ସମାଜ ସମ୍ପୂର୍ଣ୍ଣ ଲକ୍ଷ୍ୟ ଭ୍ରଷ୍ଟ ନୁହେ ଓ ସେ ସମାଜ ଭିତରେ ଆଦର୍ଶ ଶିକ୍ଷକ ସବୁ ଅଜ୍ଞାତ ରହି ଲୋକଲୋଚନର ଆଢୁଆଳରେ ଆଜି ମଧ୍ୟ ତାଙ୍କ ଛାତ୍ରମାନଙ୍କୁ ପ୍ରେରଣା ଦେଉଛନ୍ତି । ତେଣୁ ଭାରତୀୟ ସଂସ୍କୃତି ଐତିହ୍ୟ ଓ ପରଂପରାର ରକ୍ଷଣ ସମ୍ବନ୍ଧରେ ମୋର ଅନେକ ଥର ନିରାଶ ହେଉଥିଲେ ମଧ୍ୟ ମୁଁ ସମ୍ପୂର୍ଣ୍ଣ ଆଶାବାଦୀ । (୬) କିନ୍ତୁ ଅଧୁନା ପାଶ୍ଚାତ୍ୟ ସଭ୍ୟତାକୁ ଅନୁସରଣ କରିବା ବେଳେ “ଦୁର୍ଭାଗ୍ୟର କଥା ଯେ ଆମେ ଆଜି ଏହି ପାଶ୍ଚାତ୍ୟ ସଭ୍ୟତାର ଖୋଳପାକୁ ଦେଖି ତାହାହିଁ ପାଶ୍ଚାତ୍ୟ ଜୀବନ ବୋଲି ଧରି ନେଉଛୁ । ଫଳରେ ସେମାନଙ୍କ ବେଶ-ଭୂଷା ପିନ୍ଧୁଛୁ ସତ, ସେମାନଙ୍କ ପରି ଖାଇବା; ପିନ୍ଧିବା ମଉଜ ମଜଲିସ କରିବାକୁ ଶିଖିଛୁ—ହିପ୍ପି ସାଜିଛୁ, କିନ୍ତୁ ସେମାନଙ୍କ ସମୟାନୁବର୍ତ୍ତିତା, କର୍ତ୍ତବ୍ୟବୋଧ ଓ ଶୃଙ୍ଖଳା ଜ୍ଞାନ ତଥା ନିରବିଚ୍ଛିନ୍ନ ଅଧ୍ୟବସାୟ ଆଡକୁ ଆଖିବୁଜି ଦେଇଛୁ । (୭) ଏ ପ୍ରସଙ୍ଗରେ

Digitized by srujanika@gmail.com

ପାଶ୍ଚାତ୍ୟ ସଭ୍ୟତାର ଜୀବନ ଦର୍ଶନ ସମ୍ପର୍କରେ ଆଲୋଚନା କରି ପ୍ରାବନ୍ଧିକ କୁହନ୍ତି ଯେ : ଏ ବେଶଭୂଷା ତଥା ଖାଇବା ପିଇବାର ଢଙ୍ଗ ସଭ୍ୟତାର ବାହ୍ୟରୂପ ହେଲେ ମଧ୍ୟ ତାହାହିଁ ପାଶ୍ଚାତ୍ୟ ସଭ୍ୟତା ବୋଲି କହିବା ସମ୍ପୂର୍ଣ୍ଣ ଭୁଲ । ପାଶ୍ଚାତ୍ୟ ସଭ୍ୟତା ବସ୍ତୁବାଦୀ ହେଲେ ହେଁ, ସେ ଭିତରେ ଜୀବନ ଦର୍ଶନ ରହିଛି । ଭାରତୀୟ ଦର୍ଶନରେ କର୍ମଯୋଗ ହିଁ ଏହି ପାଶ୍ଚାତ୍ୟ ଜୀବନ ଦର୍ଶନର ମୂଳବୀଜ ବୋଲି ମନେ ହୁଏ । (୮) ଏଥିରୁ ସ୍ପଷ୍ଟ ଅନୁମେୟ ଯେ, ପ୍ରାବନ୍ଧିକ ଭାରତୀୟ ସଂସ୍କୃତି ବା ଜୀବନ ଦର୍ଶନହିଁ ଜୀବନଯାପନ ପାଇଁ ଉପଯୁକ୍ତ ଆଦର୍ଶ ବୋଲି ମତବ୍ୟକ୍ତ କରନ୍ତି ।

ଭାରତୀୟ ସଂସ୍କୃତି ଓ ସଭ୍ୟତାର ଆଧ୍ୟାତ୍ମିକ ବିଶ୍ୱାସବୋଧ ପ୍ରାବନ୍ଧିକଙ୍କ ସାହିତ୍ୟର ଅନ୍ୟତମ ଦିଗ । ଏହି ଆଧ୍ୟାତ୍ମିକ ବିଶ୍ୱାସବୋଧ ବୈଜ୍ଞାନିକ–ବିଶ୍ଳେଷଣାତ୍ମକ ରୀତିରେ ପ୍ରତିଷ୍ଠିତ । ତୀର୍ଥ ଭ୍ରମଣରେ ଯାଇ ବଦ୍ରିନାରାୟଣରୁ ଫେରିଲା ପରେ ପ୍ରାବନ୍ଧିକଙ୍କୁ ତାଙ୍କ ପୁଅଙ୍କ କେତେକ ସାଙ୍ଗସାଥି ପ୍ରଶ୍ନ କରନ୍ତି : "ଅଙ୍କଲ, ଆପଣ ବି କ'ଣ ତୀର୍ଥ ଯାତ୍ରା ଆଉ ଶ୍ରାଦ୍ଧ ତର୍ପଣ ପ୍ରଭୃତି ଅନ୍ଧବିଶ୍ୱାସରେ ବିଶ୍ୱାସ କରନ୍ତି ?" (୯) ଏହାର ଉତ୍ତରରେ ପ୍ରାବନ୍ଧିକ କୁହନ୍ତି–'ଯେ କୌଣସି ବିଶ୍ୱାସ ନେଇହିଁ ମଣିଷ ବଂଚିବାକୁ ପ୍ରେରଣା ପାଏ । ମଣିଷର ସେ ବିଶ୍ୱାସ ଯେତେବେଳେ ଦୃଢ଼ ହୋଇଯାଏ; ସେ ଦୃଢ଼ ବିଶ୍ୱାସ ହୋଇଯାଏ ଭଣା ଅଧିକେ ଅନ୍ଧ । ଅନ୍ଧବିଶ୍ୱାସ ଏବଂ କୁସଂସ୍କାର ସମ୍ପୂର୍ଣ୍ଣ ଭିନ୍ନ । କୁସଂସ୍କାର ପୂର୍ଣ୍ଣ ଅନ୍ଧବିଶ୍ୱାସ ଏବଂ ସଂସ୍କୃତି ଅନୁମୋଦିତ ଅନ୍ଧବିଶ୍ୱାସ ଭିତରେ ଆକାଶ ପାତାଳ ପ୍ରଭେଦ । ତର୍କ କରି ବସିଲେ ଧର୍ମରେ ବିଶ୍ୱାସ ଯେପରି ଅନ୍ଧ– ମାତୃଭୂମି, ଜନ୍ମଭୂମି, ପବିତ୍ର ଭାରତ ଭୂମିର ଧାରଣାରେ ବିଶ୍ୱାସ କ'ଣ ସେମିତି ଅନ୍ଧ ନୁହେଁ ? ତା ନହେଲେ ଅଙ୍ଗ, ବଙ୍ଗ, କଳିଙ୍ଗ, ମଗଧ ପ୍ରଭୃତି ଦେଶମାନ ବିଭିନ୍ନ ହୋଇଥିଲେ ମଧ୍ୟ କେଉଁ ବିଶ୍ୱାସ ସେମାନଙ୍କୁ ଏକାଠି ବାନ୍ଧି ରଖିଥିଲା ? ସେଦିନ ପଶ୍ଚିମା ଯାତ୍ରୀମାନେ ଆମ ଜଗନ୍ନାଥଙ୍କୁ ଦେଖିବାକୁ ଯେମିତି ଆସୁଥିଲେ, ଆମ ଓଡ଼ିଆ ଯାତ୍ରୀମାନେ ସେମିତି କାହିଁକି ଯାଉଥିଲେ ବଦ୍ରିନାଥ ଦ୍ୱାରକା ରାମେଶ୍ୱରମ୍‌କୁ ? ମଣିଷତ ଏକ । ତେବେ କାଶ୍ମୀରର କିଛି ଅଂଶ ପାକିସ୍ତାନ ନେଲେ କିମ୍ବା ଚୀନ ନେଇଗଲେ ଆମ ଛାତି କରଡ଼ ହୁଏ କାହିଁକି ? ମୁଁ ଚମ୍ପତିତ ପୁଣ କହିଥିଲେ– ଦେଶର କୌଣସି ସୀମାରେଖା ନାହିଁ, ଆଉ ସାରା ପୃଥିବୀର ଖଟିଖିଆ ଏକ, ତେବେ ରୁଷ ଆଉ ଚୀନ ଭିତରେ ବିବାଦ କାହିଁକି ?

ଲେନିନ୍‌ଙ୍କ ସମାଧିରେ ଶ୍ରଦ୍ଧାଞ୍ଜଳି ଢାଳିବା ଯଦି ଅନ୍ଧବିଶ୍ୱାସ ନୁହେଁ, ବୁଦ୍ଧ, ଶ୍ରୀକୃଷ୍ଣ, ଶ୍ରୀରାମଙ୍କ ସ୍ମୃତିରେ ଶ୍ରଦ୍ଧାଞ୍ଜଳି ଦେବା କାହିଁକି ବା ଅନ୍ଧବିଶ୍ୱାସ ହେବ । ଶ୍ରୀକୃଷ୍ଣ ଓ ଶ୍ରୀରାମ ଯେତେ ପୌରାଣିକ, ଭାରତୀୟଙ୍କ ସେତେ ଐତିହାସିକ । ସେଇ ବିଶ୍ୱାସ ତ ଆଜି ଆମ ଭାରତୀୟ ଜାତିକୁ ଏକାଠି ରଖିଛି । ହିନ୍ଦୁ ପକ୍ଷରେ ରାମଚନ୍ଦ୍ର ଏବଂ ଶ୍ରୀକୃଷ୍ଣ ଭଗବାନଙ୍କ

Digitized by srujanika@gmail.com

ଅବତାର ବୋଲି ଧରାଯାଉଥିଲେ ମଧ୍ୟ ବୁଦ୍ଧ, ଶଙ୍କର, ମହମ୍ମଦ ଖ୍ରୀଷ୍ଟଙ୍କ ପରି ଗୋଟିଏ ଗୋଟିଏ ସଶରୀରୀ ଚରିତ୍ର—ଭାରତୀୟ ସଂସ୍କୃତିର ପ୍ରତୀକ । × × ଆଉ ଶ୍ରାଦ୍ଧ ଏବଂ ତର୍ପଣ । ପିତୃ ପୁରୁଷଙ୍କୁ ମନେପକାଇ ପିଣ୍ଡ ଦେଲାବେଳେ, ନିଜ ପ୍ରିୟଜନଙ୍କ ସ୍ମୃତିକୁ ମନେପକାଇ ପାଣି ଟେକି ଦେଲାବେଳେ ମନଭିତରେ ତାଙ୍କର ପ୍ରତିବିମ୍ବ ସବୁ ଯେତେ-ବେଳେ ଦେଖାଦିଅନ୍ତି, ସେତେବେଳର ଶାନ୍ତି ଓ ଆନନ୍ଦ ବୁଝାଇ ହେବ କିମିତି ? ସେ ଶ୍ରାଦ୍ଧ ତର୍ପଣ ଯଦି ଅନ୍ଧବିଶ୍ୱାସ, ତେବେ ସେ ପରି ଉଚ୍ଚ କୋଟୀର ଅନ୍ଧବିଶ୍ୱାସ ତ ଆମ ମହାନ୍ ସଂସ୍କୃତି, ଯାହାକୁ ନେଇ ଆମେ ଗର୍ବ କରୁ ! (୧୦) ଏଥିରୁ ଅନୁମେୟ ଯେ ଶ୍ରୀଯୁକ୍ତ ବେହେରା ଭାରତୀୟ ସଂସ୍କୃତି ଓ ସଭ୍ୟତାର ଅନ୍ଧସ୍ତାବକ ନୁହନ୍ତି । ତାଙ୍କର ବିଶ୍ୱାସବୋଧ ବିଜ୍ଞାନ ସମ୍ମତ। ଅନୁରୂପତଃ ଜ୍ୟୋତିଷ ଶାସ୍ତ୍ରର ମତର ପୋଷଣ କ୍ଷେତ୍ରରେ ବିଶ୍ଳେଷଣାତ୍ମକ ରୀତି ଲକ୍ଷ୍ୟ କରାଯାଏ । ଜ୍ୟୋତିଷିକ ଗଣନାରେ ଗ୍ରହ ମହାଗ୍ରହମାନଙ୍କର ପ୍ରଭାବକୁ ବୈଜ୍ଞାନିକ ବିଶ୍ଳେଷଣାତ୍ମକ ଧାରାରେ ବିଚାର କରି ସପକ୍ଷତାର ସୂଚନା ପ୍ରଦାନ କରି ସେ କହନ୍ତି : "ଏତେ ଦୂର ଆକାଶରୁ ପୂର୍ଣ୍ଣମୀ ଚନ୍ଦ୍ର ଯଦି ପୃଥିବୀ ବକ୍ଷସ୍ଥିତ ସମୁଦ୍ରରେ ଜୁଆର ସୃଷ୍ଟି କରିପାରେ, ବୃକ୍ଷ ଲତାମାନଙ୍କରେ ରସର ଅପୂର୍ବ ସଞ୍ଚାର କରି ନିଜ ଔଷଧୀନା ନାମ ସାର୍ଥକ କରିପାରେ, ତେବେ କ୍ଷିତି, ଅପ, ତେଜ, ମରୁତ ବ୍ୟୋମ ପରି ପଞ୍ଚ ମହାଭୂତରେ ସୃଷ୍ଟ ମଣିଷ ଶରୀରରେ ଗ୍ରହ ମହାଗ୍ରହଙ୍କ କିମ୍ବା ସ୍ୱପ୍ରଭାବ ଅସ୍ୱାଭାବିକ ହେବ କାହିଁକି ? ତଥାପି ହୋମ କିମ୍ବା ଯଜ୍ଞ ସାହାଯ୍ୟରେ ଯେପରି ସମୁଦ୍ରର ଜୁଆରକୁ ଅଟକ କରି ହୁଏନି—ଶନି ଓ ରାହୁ ଗ୍ରହଙ୍କୁ କିପରି ଶାନ୍ତି କରି ଦିଆଯାଇ ପାରିବ, ସେ ସମ୍ବନ୍ଧରେ ନିଶ୍ଚିତ ଭାବରେ ମନରେ ସନ୍ଦେହ ଜନ୍ମେ ।" (୧୧)

ସଂସ୍କୃତି ଓ ବିଜ୍ଞାନ ବ୍ୟତୀତ ସ୍ୱାଧୀନ ଭାରତର ଶିଳ୍ପ ଓ ବିଜ୍ଞାନର ପ୍ରଗତି, ରାଜନୈତିକ ସ୍ଥିତି, ଶିକ୍ଷାପଦ୍ଧତି, ଜାତୀୟ ଚରିତ୍ର ପ୍ରଭୃତି ପ୍ରସଙ୍ଗ ଭୁବନେଶ୍ୱର ବେହେରାଙ୍କ ପ୍ରବନ୍ଧାବଳୀରେ ଆଲୋଚିତ । ଭାରତର ଶିଳ୍ପବିଭାଗ ସମ୍ପର୍କରେ ଆଲୋଚନା କରି ପ୍ରାବନ୍ଧିକ କହନ୍ତି ଯେ, ପରାଧୀନ ଭାରତ ଶିଳ୍ପ କ୍ଷେତ୍ରରେ ବିଦେଶୀ କାରିଗରି ଉପରେ ଥିଲା ନିର୍ଭରଶୀଳ । କିନ୍ତୁ ସ୍ୱାଧୀନତା ପରେ ଭାରତର ଶିଳ୍ପ ଓ ବିଜ୍ଞାନ କ୍ଷେତ୍ରରେ ପ୍ରଗତି ଉଲ୍ଲେଖନୀୟ ହେଲେ ମଧ୍ୟ ସନ୍ତୋଷ ଜନକ ନୁହେଁ । ତେଣୁ ସେ କହନ୍ତି : ଆଜିର ଏ କ୍ଷିପ୍ର ପରିବର୍ତ୍ତନଶୀଳ ଦୁନିଆରେ ଭାରତର ପ୍ରଗତି ଯେ ଶିଥିଳ, ଏଥିରେ ସନ୍ଦେହ ନାହିଁ । ଅନେକ କ୍ଷେତ୍ରରେ 'ଘୋଡାର କୋଡ଼େ ଯେତେ ମାଡେ ସେତେ' ନ୍ୟାୟରେ ଆମେ ଯେତେ ଆଗେଇଛୁ ସେତିକି ପଛେଇ ଯାଇଛୁ ପରି ମନେହୁଏ ।" (୧୨)

ବାପୁଜୀ ସମେତ ଅନ୍ୟ ନେତାମାନେ ସ୍ୱାଧୀନୋତ୍ତର କାଳରେ ଭାରତରେ ଏକ ଶୋଷଣ ବିହୀନ ଶ୍ରମନିର୍ଭର ସମୁନ୍ନତ ସମତୁଲ ସମାଜ ଜୀବନର କଳ୍ପନା କରିଥିଲେ ।

Digitized by srujanika@gmail.com

ସ୍ୱରାଜ୍ୟ ଆସିଲା, କିନ୍ତୁ ବାପୁଙ୍କର ସ୍ୱପ୍ନର ଭାରତ ସମ୍ଭବ ହେଲା ନାହିଁ । ସ୍ୱାଧୀନ ଭାରତରେ ଗାନ୍ଧୀ ପ୍ରଦତ୍ତ ନୀତି ଅନୁସରଣ ହୋଇ ପାରିଲା ନାହିଁ । କୁଟୀର ଶିଳ୍ପ ବିଦାୟ ନେଲା । ଯନ୍ତ୍ରଶିଳ୍ପର ହେବ ବିଶେଷ ପ୍ରତିଷ୍ଠା ଓ ପ୍ରସାର । ଏହି ନୀତି ହେତୁ ଗରିବ ଖଟିଖିଆ ହେଲେ ଦୁର୍ବଳରୁ ଦୁର୍ବଳତର ଏବଂ ପୁଂଜିପତିର ପୁଂଜି ବଢ଼ିଲା । ଗଣଙ୍କର ଶାସନ ଗଣତନ୍ତ୍ର ପ୍ରତିଷ୍ଠିତ ହେଲା । କିନ୍ତୁ ଏ ପରିବର୍ତ୍ତନ ହେଲା ଏକ ପୋଷାକୀ ପରିବର୍ତ୍ତନ । ତେଣୁ ଶ୍ରୀଯୁକ୍ତ ବେହେରା କୁହନ୍ତି– "ରାଜା ଚାଲି ଯାଇଛନ୍ତି, କିନ୍ତୁ ମେଣ୍ଢା ପୋଷାକରେ ସଜ୍ଜିତ ଗଧିଆ ରାଜାପଣ ଦେଖାଉଛନ୍ତି । ସେ ଭିତରୁ କେହି ମୁଁ ଜଙ୍ଗଲର ରାଜା ଫରେଷ୍ଟ ଗାର୍ଡ କହୁଛି ତ, କେ କହୁଛି ମୁଁ ତମ ରାଜା 'ପୁଲିସ କନେଷ୍ଟବଲ୍', କିଏ ବସଭିତରେ କଣ୍ଡକ୍ଟର ହୋଇ ରାଜା ବନିଛି ତ କିଏ ରାସ୍ତା ଚେକଗେଟରେ ରାଜା ସାଜିଛି । ଆଉ ହାକିମ ମାନେ ହେଉଛନ୍ତି ରାଜାମାନଙ୍କ ଉପରେ ରାଜାଧିରାଜା ମହାରାଜା ।" (୧୩) ଏହି ଉକ୍ତିରୁ ଏହା ଏହା ସ୍ପଷ୍ଟ ଯେ, ସ୍ୱାଧୀନୋତ୍ତର ଭାରତରେ ଗଣତନ୍ତ୍ରର ପ୍ରତିଷ୍ଠା ହୋଇଛି ସତ, କିନ୍ତୁ ରାଜକର୍ମଚାରୀ ବ୍ୟକ୍ତିଗତ ସ୍ୱାର୍ଥ ସାଧନରେ ଯଥେଚ୍ଛାଚାରୀ ହୋଇଛନ୍ତି । ଫଳତଃ ଜନତା ନିଜର ପ୍ରାପ୍ୟରୁ ହୋଇଛନ୍ତି ବଂଚିତ । ତେଣୁ ପ୍ରାବଂଧିକଙ୍କ ମତରେ "ମନେହୁଏ ଯେ ସେ କାଳ ଆଉ ଏକାଳ ଭିତରେ କିଛି ବିଶେଷ ପାର୍ଥକ୍ୟ ନାହିଁ । ରାଜା ଥାଉ ବା ନଥାଉ ମଣିଷ ସବୁ ଦିନ ସେଇ ମଣିଷ–ଭଲ ଓ ମନ୍ଦ ମିଶାମିଶି ।" (୧୪)

ପ୍ରଚଳିତ ଶିକ୍ଷା ପଦ୍ଧତି ଉପରେ ମଧ୍ୟ ଶ୍ରୀଯୁକ୍ତ ବେହେରା ସନ୍ତୁଷ୍ଟ ନୁହନ୍ତି । ତାଙ୍କରି ମତରେ "ଶିକ୍ଷା ପ୍ରକୃତ ଶିକ୍ଷା ହେବାକୁ ହେଲେ ତାହା ଛାତ୍ରର ଶରୀର, ମସ୍ତିଷ୍କ ଓ ହୃଦୟରେ ପରିପୂର୍ଣ୍ଣ ବିକାଶରେ ସହାୟକ ହେବା ଉଚିତ । × × ଭାରତରେ ପ୍ରଚଳିତ ଗୋଲାମ ସୃଷ୍ଟିକାରୀ ଶିକ୍ଷା ପଦ୍ଧତିର ତ୍ରୁଟି ଲକ୍ଷ୍ୟ କରି ଶିକ୍ଷା ପ୍ରଣାଳୀରେ ଆମୂଳ ସଂସ୍କାର ସାଧନ ଓ ମୌଳିକ ଶିକ୍ଷାର ପ୍ରଚଳନ ପାଇଁ, ଗାନ୍ଧୀଜୀ ଅନେକ ଚେଷ୍ଟା କରିଥିଲେ । କର୍ମ ମାଧ୍ୟମରେ ଶିକ୍ଷାଦାନ, ନୈତିକ ଶିକ୍ଷା ଉପରେ ଗୁରୁତ୍ୱ ଏହି ମୌଳିକ ଶିକ୍ଷାର ମୂଳମନ୍ତ୍ର ଥିଲା; କିନ୍ତୁ ଦୁର୍ଭାଗ୍ୟର କଥା ଯେ ଆଜି ଯେଉଁମାନେ ବର୍ତ୍ତମାନର ଶିକ୍ଷା ପଦ୍ଧତିକୁ ଘୃଣ୍ୟ ବୋଲି ଚିହ୍ନିତ କରି କୁମ୍ଭୀର କାନ୍ଦଣା କାନ୍ଦୁଛନ୍ତି ସେମାନଙ୍କ ଭିତରୁ କେତେ ସେଦିନ ଗାନ୍ଧୀଜୀଙ୍କ ମୌଳିକ ଶିକ୍ଷାର ଟୋଟି ଚିପି ଦେଇଥିଲେ ଓ ଧର୍ମନିରପେକ୍ଷତାର ଦୁହାଇ ଦେଇ ନୈତିକ ଶିକ୍ଷାକୁ ଗୋଇଠା ମାରିଥିଲେ ।" (୧୫) କେବଳ ଶିକ୍ଷା ପଦ୍ଧତିର ପରିବର୍ତ୍ତନ କରି ଦେଲେଯେ ଭାରତର ଶିକ୍ଷା ପ୍ରଣାଳୀ ସଫଳ ହେବ ଏମତ ପ୍ରାବନ୍ଧିକ ପୋଷଣ କରନ୍ତି ନାହିଁ । ତାଙ୍କର ମତରେ ଯେହେତୁ ଛାତ୍ରର କୋମଳ ମନରେ ପରିବାର, ସମାଜ, ଶିକ୍ଷକ ଓ ସାଙ୍ଗ ସାଥିମାନଙ୍କର ଚରିତ୍ରର ପ୍ରଭାବ ପ୍ରତିଫଳିତ ହୋଇ ଅଲିଭା ରେଖା ଟାଣିଦିଏ, ତେଣୁ ବିଶୃଙ୍ଖଳିତ, ଦୁର୍ନୀତିଗ୍ରସ୍ତ, ଅର୍ଥସର୍ବସ୍ୱ, ହୀନମନ୍ୟତାଗ୍ରସ୍ତ ତଥା କର୍ତ୍ତବ୍ୟ ପରାଙ୍ମୁଖ ଦେଶରେ ଶିକ୍ଷାପଦ୍ଧତିର ସଫଳତା ଆଶା କରାଯାଇ ନପାରେ ।

Digitized by srujanika@gmail.com

"ଏଣୁ ଚରିତ୍ରର ଉନ୍ନତି ନହେବା ଯାଏ ଆମ ଦେଶରେ ଯେ କୌଣସି ଶିକ୍ଷା ପ୍ରଣାଳୀ ବିଫଳ ହେବାର ସମ୍ଭାବନା ରହିଛି । ତେଣୁ ଜାତୀୟ ଚରିତ୍ରର ପୁନଃ ପ୍ରତିଷ୍ଠା ହିଁ ଶିକ୍ଷା-ପଦ୍ଧତିର ସଂସ୍କାରର ମୂଳଲକ୍ଷ୍ୟ ହେବା ଉଚିତ ।" (୧୬)

ଶ୍ରୀଯୁକ୍ତ ବେହେରଙ୍କ ପ୍ରାଚୀନ ଭାରତୀୟ ସଂସ୍କୃତି, ଆଧ୍ୟାତ୍ମିକ ବିଶ୍ୱାସବୋଧ, ସାମ୍ପ୍ରତିକ ଭାରତର ରାଜନୈତିକ ଦର୍ଶନ, ଅର୍ଥନୈତିକ ବୈଷମ୍ୟ, ଶିକ୍ଷା ବ୍ୟବସ୍ଥାର ତ୍ରୁଟି ବିଚ୍ୟୁତି, ଶିଳ୍ପ ଓ ବିଜ୍ଞାନ କ୍ଷେତ୍ରରେ ଭାରତର ପ୍ରଗତି ବିଷୟକ ପ୍ରବନ୍ଧ ସମୂହକୁ ବିଚାର କଲେ ଜଣାଯାଏ ଯେ, ସନାତନ ମୂଲ୍ୟବୋଧ ପ୍ରତି ଗୁରୁତ୍ୱ କ୍ଷୁର୍ଣ୍ଣ କରୁଥିବା ଅଧୁନାତନ ଭାରତରେ ପ୍ରଗତି ଊର୍ଦ୍ଧ୍ୱମୁଖୀ ନୁହେଁ–ଅଧୋମୁଖୀ, ବିଭ୍ରାନ୍ତଗ୍ରସ୍ତ । ତେଣୁ ପ୍ରାବନ୍ଧିକ ଜାତିର ସର୍ବାଙ୍ଗିନ ଉନ୍ନତି ପାଇଁ ନିଜର ମତ ପ୍ରଦାନ କରି କୁହନ୍ତି ଯେ "ଜାତିର ଗଠନ ପାଇଁ, ଜାତୀୟ ଚରିତ୍ର ଯେ ସର୍ବପ୍ରଧାନ, ସେ କଥା ଉପେକ୍ଷା କଲେ ପରିଣତି ନିଶ୍ଚୟ ବିଷମୟ ହେବ । ଗୋଟିଏ କର୍ମଠ–ଚରିତ୍ରବାନ ଓ ଶୃଙ୍ଖଳିତ ଜାତିକୁ ଯେଉଁ ଶାସନ ପଦ୍ଧତି ଦେଲେ ମଧ୍ୟ ସେ ଜାତି ଆଗେଇଯିବ, ଏଥିରେ ସନ୍ଦେହ ନାହିଁ । × × ଯେଉଁ ପ୍ରାଚୀନ ପରଂପରା ଓ ସଂସ୍କୃତି ପାଇଁ ଆମର ପୂର୍ବ ପୁରୁଷମାନେ ଚିରଦିନ ଗର୍ବକରି ଯାଇଛନ୍ତି, ସେ ସବୁ ପ୍ରତି ଆଜି ଆମର ଆସ୍ଥା ଓ ବିଶ୍ୱାସ ନାହିଁ । କୌଣସି ଜାତି ନିଜ ଜାତୀୟତା-ବୋଧ ହରାଇ କେବେ ବଡ ହୋଇପାରେନା । × × ତେଣୁ ସବୁଜ ବିପ୍ଳବ ଓ ଶିଳ୍ପ ବିପ୍ଳବ ସହ ଜାତୀୟ ଚରିତ୍ରର ପୁନଃଗଠନ ଆଜି ଆମର ଧ୍ୟେୟହେବା ଉଚିତ ବୋଲି ମନେହୁଏ ।" (୧୭)

ଶୈଳୀ ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ, କଥୋପକଥନ ଧର୍ମୀ ରଚନା ଶୈଳୀ, ଢଗଢମାଳି, ଓ ପ୍ରବଚନରେ ପ୍ରୟୋଗ, କାହାଣୀ ମାଧ୍ୟମରେ ବକ୍ତବ୍ୟ ଉପସ୍ଥାପନା, ରମଣୀୟ ରଚନା ଶୈଳୀ ଗର୍ଭିତ ହୋଇ ଶ୍ରୀଯୁକ୍ତ ବେହେରଙ୍କ ଲଳିତ ନିବନ୍ଧ ସମୂହ ସୁଖପାଠ୍ୟ । ସୃଜନାତ୍ମକ ପ୍ରତିଭାର ସ୍ପର୍ଶରେ ରଚିତ ନିବନ୍ଧ ସମୂହ ତତ୍ତ୍ୱ ଓ ତଥ୍ୟ ଗର୍ଭିତ ହୋଇ ମଧ୍ୟ ହୋଇପାରିଛି ସମାଲୋଚନା ଧର୍ମୀ ସୃଷ୍ଟି ପର୍ଯ୍ୟାୟବାଚୀ ।

ଶ୍ରୀଯୁକ୍ତ ବେହେରଙ୍କ ପ୍ରବନ୍ଧ ଓ ଗଳ୍ପ ଜଗତକୁ ବିଚାର କଲେ ଜଣାଯାଏ ଯେ, ପ୍ରବନ୍ଧାବଳୀର ମର୍ମ ହିଁ ଗଳ୍ପ ସକଳରେ ସୃଜନାତ୍ମକ ରୂପ ପରିଗ୍ରହଣ କରିଛି । 'ଶୁଣ ପରୀକ୍ଷା' ଏବଂ 'ସହାବସ୍ଥାନ' ପୁସ୍ତକ ଦ୍ୱୟରେ ସ୍ୱାଧୀନୋତ୍ତର ନବନିର୍ମାଣ ଯୁଗ ଏବଂ ସାମ୍ପ୍ରତିକ କାଳର ସ୍ଥିତି ଓ ସମସ୍ୟା ଆଲୋଚିତ ହୋଇଥିବାବେଳେ 'କଥା ଓ କଥା' 'ଫର୍ଫର ଉଡେ' ଏବଂ 'ଆନ୍‌ସାରୀ ସ୍ମୃତି ଓ ଅନ୍ୟାନ୍ୟ ଗଳ୍ପ' ପୁସ୍ତକ ତିନୋଟିର ଗଳ୍ପାବଳୀ ମଧ୍ୟ ସ୍ୱାଧୀନୋତ୍ତର କାଳରୁ ସମକାଳୀନ ସ୍ଥିତି, ସମସ୍ୟା ଓ ଫଳାଫଳର ପୃଷ୍ଠଭୂମି ଉପରେ

Digitized by srujanika@gmail.com

ପର୍ଯ୍ୟବେକ୍ଷିତ । ସ୍ୱାଧୀନତା ପରେ ଦେଶର ରାଜନୈତିକ, ସାମାଜିକ, ଶିକ୍ଷା ଓ ସାଂସ୍କୃତିକ ଓ ଅର୍ଥନୈତିକ କ୍ଷେତ୍ରରେ ପ୍ରଚୁର ପରିବର୍ତ୍ତନ ସାଧିତ ହୋଇଛି । ଏହି ପରିବର୍ତ୍ତନର ଆଢୁଆଳରେ ଯେଉଁ ବାସ୍ତବ ରହସ୍ୟ ଲୁକ୍‌କାୟିତ ତାହା ବିଭିନ୍ନ ଗଳ୍ପ ମାଧ୍ୟମରେ ଗାନ୍ଧିକ ବେହେରା ପ୍ରକାଶ କରି ଅଛନ୍ତି ।

ପରାଧୀନ ଭାରତ ଓ ସ୍ୱାଧୀନ ଭାରତର ଶାସନ ଓ ଶାସିତ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ଗାନ୍ଧିକ ଉପଲବ୍ଧି କରି ନାହାନ୍ତି । ତେଣୁ ସେତେବେଳେ ଶାସକ ଓ ଶାସିତ ମଧ୍ୟରେ ଯେଉଁ ବ୍ୟବଧାନ ରହିଥିଲା, ତାହା ଏଯାବତ୍ ଅକ୍ଷୁର୍ଣ୍ଣ ରହିଛି । କିନ୍ତୁ ନାମକୁ ମାତ୍ର ସମତାର ସ୍ଲୋଗାନ ଶୁଣିବାକୁ ମିଳେ । ଏହି ପ୍ରସଙ୍ଗରେ ଗାନ୍ଧିକ ଅଧ୍ୟାପକ ଜ୍ଞାନରଂଜନ ମିଶ୍ରଙ୍କ କଣ୍ଠରେ କହନ୍ତି–ସାମ୍ୟବାଦୀ ଢାଞ୍ଚାର ସମାଜ ହେବ ଏ ଦେଶରେ– କହୁଛନ୍ତି ସବୁ ରାଜନୈତିକ ଦଳ ସବୁ ରାଜନୀତିଜ୍ଞ । କିନ୍ତୁ ଶାସନର ଡୋରି ଯେଉଁମାନଙ୍କର ହାତରେ ସେମାନଙ୍କ ସମାଜ ଯେ ଭିନେ । ନିଜପାଇଁ ଗୋଟିଏ ରାଜରାଜୁଡ଼ାର ସମାଜ ସୃଷ୍ଟି କରି ନେଇ ସାରିଲା ପରେ ସେମାନେ ଚାହାନ୍ତି ଅନ୍ୟମାନଙ୍କ ପାଇଁ ଗୋଟିଏ ସାମ୍ୟବାଦୀ ସର୍ବହରାର ସମାଜ–ଜମିବାଡ଼ି ସୁଖ ସୁବିଧାର ସମ୍‌ବଣ୍ଟନ ନାଁରେ । (୧୮)

ସମକାଳୀନ ଭାରତରେ ମଣିଷ ହୋଇଛି ସୁବିଧାବାଦୀ– ସ୍ୱାର୍ଥ ସର୍ବସ୍ୱ । ତେଣୁ ନିଜର କଥା ଓ କାମ ମଧ୍ୟରେ ସମତା ନାହିଁ । "ଆମର ଜାତୀୟ ଚରିତ୍ର ହିଁ ଏବେ ଏମିତି ଢଙ୍ଗ ନେଇଛି । ଆମେ ସମସ୍ତେ ଆଜି ଉଣାଅଧିକେ ଦୋମୁହାଁ । ଗୋଟିଏ କଥା କହୁଁ ତ ଆଉ ଗୋଟିଏ କଥା କରୁଁ । ନିଜର ସୁବିଧା କରି ନେଇ ସାରିଲା ପରେ ଅନ୍ୟର ସୁବିଧା ଆଡକୁ ଆଖି ବୁଜି ଦେଉଁ । (୧୯) ଏହି କାରଣରୁ ହିଁ ଆଜିର ସମାଜରେ ତାରତମ୍ୟ ଓ ବ୍ୟବଧାନ ସୃଷ୍ଟି ହୋଇଛି । ଫଳତଃ ସ୍ୱାଧୀନତା ପରେ ନବନିର୍ମାଣ ଯୁଗରେ ଖଟି ଖାଉଥିବା ମଜଦୁର ମାନଙ୍କର ଜୀବନଯାତ୍ରା ମଧ୍ୟ ସ୍ୱଚ୍ଛଳ ନୁହେଁ, ଯାହାର ଅନ୍ୟତମ ଉଦାହରଣ ଗାନ୍ଧିକଙ୍କ 'ନାଚେ ବେନଆ ନାଚେ' ଗଳ୍ପର 'ସୋମବାବୁ' ଚରିତ୍ର ।

ଖଟିବାର ସାମର୍ଥ୍ୟ ଥିଲାବେଳେ ହୀରାକୁଦ ନଦୀବନ୍ଧ ନିର୍ମାଣରେ 'ସୋମବାବୁ' ନିଜକୁ ସାମିଲ କରିଥିଲା ଏବଂ ବନ୍ଧ ତିଆରି ବେଳର ବିପଦସଂକୁଳ ପରିସ୍ଥିତିରେ ସାମର୍ଥ୍ୟ ଖଟାଇ କେତେକଙ୍କର ଜୀବନ ରକ୍ଷା କରି ବନ୍ଧ ତିଆରି କାର୍ଯ୍ୟ ସମ୍ପାଦନରେ ସାହାଯ୍ୟ କରିଥିଲା । କିନ୍ତୁ ବାର୍ଦ୍ଧକ୍ୟରେ ଉପନୀତ ହେଲାପରେ ନିଜର ଦୁଃସ୍ଥତା ଭିତରେ ବି ରୁଗ୍‌ଣା ସ୍ତ୍ରୀ ଓ ଅନ୍ଧ ସନ୍ତାନର ପାଳନ ପାଇଁ ଭିକ୍ଷାବୃତ୍ତି ଅବଲମ୍ବନ କରି ନାହିଁ, ଭେକ ଉପାସରେ ଦିନ କାଟିଛି, ମାଙ୍କଡ ନାଚ ଦେଖାଇ ମନୋରଂଜନର ପ୍ରତିବଦଳରେ ପ୍ରତିଦାନ ନେଇ ପେଟ ପୋଷିଛି । ଅଥଚ ଅପର ପକ୍ଷରେ ଏଇ ବନ୍ଧ ନିର୍ମାଣରେ ସଂଶ୍ଳିଷ୍ଟ କର୍ମଚାରୀ,

Digitized by srujanika@gmail.com

କଣ୍ଟ୍ରାକ୍ଟର, ଅଫିସର ମାନଙ୍କର 'ତେଲିଆ ମୁଣ୍ଡରେ ତେଲ' ଭଳି ପୁଂଜିଉପରେ ପୁଂଜିର ବୃଦ୍ଧି ହୋଇଛି । ତେଣୁ ଏଇ ପ୍ରସଙ୍ଗରେ ଗାନ୍ଧିକ ଉଲ୍ଲେଖ କରନ୍ତି "ମୋ ମାନସ ପଟରେ ଦୃଶ୍ୟମାନ ଚଳଚିତ୍ରର ଏକ ଦିଗରେ ଯେତେବେଳେ ନର ବାନର ସମ୍ବଳିତ ଏକ ଶାର୍ଣ୍ଣ କାୟାର ଛାୟା ଅପସରି ଯାଉଥିଲା, ସେତିକିବେଳେ ଅନ୍ୟଦିଗସ୍ଥ ପରଦା ଉପରକୁ ଉଠି ଆସୁଥିଲା ଭୁବନେଶ୍ୱରରେ ମୁଣ୍ଡ ଟେକି ଉଠିଥିବା ଅଫିସର ଇଂଜିନିୟର ଓ ଠିକାଦାର ମାନଙ୍କ ଅଗଣିତ ବିରାଟ ବିରାଟ କୋଠାର ଚିତ୍ରାବଳୀ । ପୃଷ୍ଠଭୂମିରେ ଦୃଶ୍ୟଥିଲା ବରପାଲି, ବରଗଡ ଜଳସେଚିତ ଅଞ୍ଚଳର ଧନକୁବେର ମାନଙ୍କ ଶସ୍ୟଶ୍ୟାମଳା ସବୁଜ ଧରଣୀ ।"(୨୦)

'କଥା ଓ ଲଥା', ଫର୍‌ଫର୍ ଉଡେ ଏବଂ ଆନ୍‌ସାରୀ ଗଳ୍ପ ଓ ଅନ୍ୟାନ୍ୟ ଗଳ୍ପ' ପ୍ରଭୃତି ପୁସ୍ତକର ଗଳ୍ପାବଳୀକୁ ବିଗ୍ଲେଷଣ କଲେ ଜଣାଯାଏ ଯେ, ଗାନ୍ଧିକ ବେହେରା ଅନୁନ୍ନତ ସମ୍ପ୍ରଦାୟର ଦୟନୀୟ ସ୍ଥିତି, ଆଦିବାସୀ ସମ୍ପ୍ରଦାୟର ଶୋଷିତ ଓ ନିର୍ଯ୍ୟାତିତ ଜୀବନର ଚିତ୍ର, ସମାଜର ନିମ୍ନବର୍ଗଙ୍କ ଅସହାୟତା ତଥା ଅଧୁନାତନ ସମାଜର ବ୍ୟଭିଚାରୀଙ୍କ ଦ୍ୱାରା ଅତ୍ୟାଚାରିତ ହେବାର ଘଟଣା, ଯୌତୁକ ପ୍ରଥାର କୁ-ପ୍ରଭାବ, ସରଳ ଗ୍ରାମବାସୀର ଜୀବନରେ ସହରୀ ପାଶ୍ଚାତ୍ୟ ସଭ୍ୟତାର ଅନୁପ୍ରବେଶ, ଭ୍ରଷ୍ଟାଚାର, ଜାତୀୟ ଚରିତ୍ରରେ କର୍ତ୍ତବ୍ୟ ହୀନତା ପାଶ୍ଚାତ୍ୟ ସଭ୍ୟତାର ବାହ୍ୟଚାକଚକ୍ୟର ଅନ୍ଧ ଅନୁକରଣ ଭାରତୀୟ ରାଜନୀତିର ଗଭୀର ରୂପ ତଥା ଆଧ୍ୟାତ୍ମିକ ବିଶ୍ୱାସବୋଧ ପ୍ରଭୃତି ଦିଗକୁ ବିଷୟବସ୍ତୁ ଭାବରେ ଗ୍ରହଣ କରିଛନ୍ତି ।



ଭୁବନେଶ୍ୱର ବେହେରା

ସଂକ୍ଷେପରେ କହିଲେ ଭୁବନେଶ୍ୱର ବେହେରାଙ୍କ ସମାଲୋଚନାଧର୍ମୀ ସୃଷ୍ଟି ଧାରାରେ ଉଦ୍ଦିଷ୍ଟ ଲଳିତ ନିବନ୍ଧ, ଗଳ୍ପ,ଭ୍ରମଣ ବୃତ୍ତାନ୍ତରେ ସମାଜ, ବିଜ୍ଞାନ ଓ ଆଧ୍ୟାତ୍ମିକତାର ସୁସଂଯତ ଅବସ୍ଥାନ ହୋଇଛି । ସମକାଳୀନ ସମାଜର ଅନ୍ଧକାର ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରି, ଏକ ପରିଚ୍ଛନ୍ନ ସୁସ୍ଥ ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ଜୀବନ ପାଇଁ ଶ୍ରୀଯୁକ୍ତ ବେହେରାଙ୍କ ସାହିତ୍ୟରେ ଦିଗ୍‌ଦର୍ଶନ ରହିଛି ।



Digitized by srujanika@gmail.com

# ସୂଚନା

୧– ଶୁଣପରୀକ୍ଷ – ପୃ. ୩ ଶୁଣପରୀକ୍ଷ ଦ୍ୱି. ସଂ. ୧୯୮୬, ଭୁବନେଶ୍ୱର ବେହେରା ।

୨– ଲେଡ଼ିଗୁଡ଼ – ପୃ. ୫୭ ଶୁଣପରୀକ୍ଷ ଦ୍ୱି. ସଂ. ୧୯୮୭, ଭୁବନେଶ୍ୱର ବେହେରା ।

୩– ” ” ” ” ” ”

୪– ସୁନୀଲ – ପୃ. ୨୯ ସହାବସ୍ଥାନ ପ୍ର. ସଂ. ୧୯୮୩ ”

୫– ” ” ” ” ” ”

୬– ପଶ୍ଚିମ ଆଫ୍ରିକାରେ ଓଡ଼ିଆ ଢେଙ୍କି–ପୃ. ୧୨ ଦ୍ୱି. ସଂ. ୧୯୮୨, ”

୭– ସଭ୍ୟତା ଓ ସଂସ୍କୃତି – ପୃ. ୧୧୦ ଶୁଣପରୀକ୍ଷ ଦ୍ୱି. ସଂ. ୧୯୮୨ ”

୮– ” ” ପୃ. ୧୦୯ ” ” ” ”

୯– ବିଶ୍ୱାସେ ମିଳଇ ହରି– ପୃ. ୧୧୦ ” ” ” ”

୧୦– ” ” ପୃ ୧୧୦-୧୧୧ ” ” ” ”

୧୧– ଦଇବ ଦଉଡ଼ି – ପୃ. ୨୩ ସହାବସ୍ଥାନ, ପ୍ର. ସଂ. ୧୯୮୩ ”

୧୨– ଜାତୀୟ ଚରିତ୍ର – ପୃ. ୯୯ ” ” ” ”

୧୩– ରଙ୍ଗାବିନ୍ଦୁ – ପୃ. ୯୯ ଶୁଣପରୀକ୍ଷ ଦ୍ୱି. ସଂ. ୧୯୮୨ ”

୧୪– ” ପୃ. ୯୦ ” ” ” ”

୧୫– ଘୋଡ଼ାକୁ ପାଣି ପିଆଇବ କିପରି–ପୃ. ୫୪ ” ” ”

୧୬– ” ” ” ପୃ. ୫୫ ” ” ”

୧୭– ଜାତୀୟ ଚରିତ୍ର – ପୃ. ୧୦୦-୧୦୧ ସହାବସ୍ଥାନ ପ୍ର. ସଂ. ୧୯୮୩ ”

୧୮– ସାହଯାତ୍ରୀ – ପୃ. ୪୯ ଫର୍‌ଫର୍ ଉଡ଼େ ଦ୍ୱି. ସଂ. ୧୯୮୬ ”

୧୯– ” ପୃ. ୪୯ ” ” ” ”



ଅଧ୍ୟାପକ, ଓଡ଼ିଆ ବିଭାଗ,
ମଦନପୁର ରମପୁର କଲେଜ
ମ: ରାମପୁର ୭୬୬୧୦୨

Digitized by srujanika@gmail.com

# ॥ ଉମା ପଂଡାଂକ କବିତା ॥

ମଙ୍ଗଲୁ ଚରଣ ବିଶ୍ୱାଳ

ଆଲୋଚନାକୁ ମୋର ଘରି ଡର । କବିତା ଉପରେ ଆଲୋଚନା କର କହିଲେ ପିଲେହି ପାଣି । କବିତାର ପାଶ ମାଡ଼ିବାକୁ କାହିଁକି କେଜାଣି ଏବେ ମୋତେ ବଡ଼ ଅଡୁଆ ଲାଗୁଛି । କବିତା ଆଡ଼କୁ ମୁ ଆଗରୁ ଢ଼ଳିଛି । ଏଣୁ ବରବର କବିତା ପଢ଼େ । ହେଲେ କବିତାକୁ ପୋଷ୍ଟମଟମ୍ କରିବା ମୋ' ଦେଇ ହଉନି । କବିତା ତ କବିତା । ସବୁ– ସମୟରେ । ସବୁ ଯୁଗରେ । ତାକୁ ତରଜୁରେ ତଉଲି ମାପଯୁଖ କରିବା ସାହିତ୍ୟ– ବଣିଆଁଙ୍କ କାମ । ମୁ କବିତା ପଢ଼େ । ତହିଁରେ ବୁଡ଼ିଯାଏ । ମୁ ଯାହା ବୁଝେ, ତାକୁ ବୁଝାଇବାର ଭାଷା ନାହିଁ ମୋର । ମୁ ଯାହା ଅନୁଭବ କରେ ତାକୁ କଥାରେ କହି ହେବ ନାହିଁ । ଯେ କବିତା ଲେଖେ, ଅନ୍ୟମାନେ କଣ ବୁଝିବେ, କିପରି ଗ୍ରହଣ କରିବେ, ସେ କଥା ସେ ଆଦୌ ଲେଖିଲାବେଳେ ତା' ମନକୁ ନେଇ ନଥାଏ । କବିତା ଲେଖିଲାବେଳେ କବି ନିଜକୁ ତ ଭୁଲି ସାରିଥାଏ, ଆଉ ଆଉ ମାନଙ୍କୁ ହେତୁ କରିବାର ପ୍ରଶ୍ନହିଁ ଉଠୁ ନାହିଁ ।

ମୋ ନିଜ କବିତା ଉପରେ ଦି' ପଦ କହିବାକୁ ମୋର ଦମ୍ଭ ନାହିଁ । ଉମା ବାବୁଙ୍କ କବିତା ଉପରେ କେଇପଦ କହିବାକୁ ମୋର ହିମ୍ମତ ଆସିବ କୁଆଡୁ ? ହେଲେ ଉମା ଶଙ୍କର ପଣ୍ଡାଙ୍କ କବିତା ମୁ ୧୯୫୦ରୁ ଏଯାଏଁ ପଢି ଆସୁଛି । ଅପୁଷ୍ଟୋ ବହୁ ଭାଷତେ' ନ୍ୟାୟରେ ପଡ଼େଇ ହୋଇ କିଛି କହିବା । କେହି ଘେନା କରନ୍ତୁ ବା ନକରନ୍ତୁ ।

ଉମା ପଣ୍ଡା । ଏକ ଜଣାଶୁଣା ନାମ । ବିଶେଷ କରି ଓଡ଼ିଆ କବିତାରେ । ଷଷ୍ଠ ଦଶକରୁ ଏଯାଏଁ କବିତା ଲେଖୁଛନ୍ତି ସେ । କ୍ଲାନ୍ତି ଆସି ନାହିଁ । ରୋମେଣ୍ଟିକ୍ କବିତା, ଇଷ୍ଟ୍ କଲ୍ୟାଣ, କେକା କୁହୁ କାକଳୀ, ନିଶବ୍ଦ ନୂପୁର, ରତୁଓତ'ର ପ୍ରେମିକ ମାନେ' ଭଳି କେତୋଟି ସୁନ୍ଦର ସଙ୍କଳନ ସେ ଆମ ହାତରେ ଦେଇ ସାରିଛନ୍ତି । ଉମା ପଣ୍ଡାଙ୍କ କବିତା ଉପରେ କିଛି କହିବା ଆଗରୁ ଓଡ଼ିଆ କବିତାର ଚଳଣି, ତା'ର ଆଗ ପଛ କଥା ଟିକିଏ ବିଗ୍ଭର କରିବାକୁ ହେବ । କେତେ ଆଣିଛି, କେତେ ଦେଇଛି, କେତେ ପାଇଛି କେତେ ହରାଇଛି ବୁଝିବାକୁ ହବ, ପରଖିବାକୁ ହବ ।

କବିତାରେ ଆଧୁନିକ/ସାମ୍ପ୍ରତିକ ନାଆଁରେ ଅନେକ ହଇଚଇ ହୋଇଛି । କୋଳାହଳ ଶୁଭିଛି/ଶୁଭୁଛି ମଧ୍ୟ । ଏ ଲଟକେକ୍ ଭଳି ଆଧୁନିକତା ଦ୍ରବ୍ୟଟି ଏବେ ଆଉ କାହାରିର ମୌରସି ହୋଇ ରହିନାହିଁ । ସପ୍ତଖଣ୍ଡ ମେଦିନୀକୁ ଏହା ଆବୋରି ସାରିଲଣି ଆକାଶ

Digitized by srujanika@gmail.com

ଭଳି । ପ୍ରଚଳିତ ପରମ୍ପରା ବାଟକୁ ଛାଡ଼ି ଆଉ ଏକ ବାଟରେ ଆଗେଇ ଯିବାର ଉଦ୍ୟମ ବ୍ୟତୀତ ଆଉ କିଛି ନୁହେଁ । କବିତାର ଚେହେରା ବଦଳିଛି । ନୂଆ ଢଙ୍ଗର ଗହଣା, ନୂଆ କିସମର ରଙ୍ଗ ନାଇଛି । ତା'ର ପାଇଟା ଶାଢ଼ୀ ଚଉତି ସଉତି ଥୋଇ ଦେଲଣି । ଏବେ ମେକ୍‌ସି ମିଡ଼ିରେ ଅଙ୍ଗ ମଣ୍ଡନ କରୁଛି । ଘଡ଼ିକି ଘଡ଼ି ଆମଦାନୀ କରା ରୁଚିରେ ସଜଉଛି ନିଜକୁ । ଏ ନୂଆ ମେକ-ଅପ ପାଇଁ ବେଶୀ ହେଣ୍ଡି ମାରୁଛି । ମାସ ମିଡ଼ିଆକୁ ବି ଲଗେଇ ଦେଲଣି ତା'ର ପ୍ରପାଗଣ୍ଡାରେ । ହେଲେ ତା'ର ମରମର କଥା କହୁନି । ଭିତରଟାକୁ ଅଟା ଚକଟିଲା ପରି ଚକଟି ପାରୁନି ।

କଉଠି ଥିଲା କେଜାଣି ଷୋଡ଼ଶ ଶତାବ୍ଦୀର ରେନେସାଁ ଅଦିନିଆଁ ଝଡ ଭଳି ସାରା ଦୁନିଆଁକୁ ଝୁଣି ପକାଇଲା । ମୋଡ଼ି ମାଡ଼ି ଦେଲା ଏକା ଥରକେ । ତା' ପଛକୁ ତା' ପଛ ଆଉ ଆଉ ବିପ୍ଳବ ମାନେ/ପରିବର୍ତ୍ତନ ମାନେ ଧାଇଁଲେ । ସେ ସବୁର ଏକମାତ୍ର ଡାକରାଥିଲା ମଣିଷକୁ ମଣିଷ ଭିତରୁ ଖୋଜି ବାହାର କରିବା । ବିକଟ ବନ୍ଧନୀରୁ ମୁକ୍ତ କରିବା । ଘୋଡ଼ ମାତିଲେ ହଡା ମାତିବା ପରି ସାରା ଦୁନିଆଁ ଯେତେବେଳେ ମାତି ଉଠିଲା ଓଡ଼ିଆ କବିତା ଶୋଇ ରହନ୍ତା କିପରି ? ଇଂରାଜୀ, ଫରାସୀ, ବଙ୍ଗଳା ବାଟ ଦେଇ ସେ ହେଣ୍ଡାଳ ଆମ ଓଡ଼ିଶା ମାଟି ଛୁଇଁବା ବେଳକୁ ପ୍ରାୟ ତିନିଶହ ବର୍ଷ ଗୋଲ୍ ।

ଆମେ ମଣିଷର ମୁକ୍ତି ଚାହୁଁଥିଲୁ । ସ୍ୱରାଜ ପାଇବା ପରେ ଆମେ ସେ କଥା ସୋଟା ପଣେ ଭୁଲିଗଲୁ । ବ୍ୟକ୍ତିର ମୁକ୍ତି ପାଇଁ ଆମେ କେତେ ନାଚୁଥିଲୁ ଡେଉଁଥିଲୁ । ହେଲେ ସ୍ୱାଧୀନତାର ସଂଗ୍ରାମୃତ ଟିକକ ପାଇ ସାରିବା ପରେ ହାତଟାକୁ ମୁଣ୍ଡ ଉପରେ ବୁଲେଇ ଦେଇ ବେଶ୍ ଆରାମରେ ବସିଗଲୁ । ଭୁଲିଗଲୁ ସେଇ ମଣିଷକୁ ଯିଏ କୋଠରୀ ଭିତରେ ବସି । ନିଜକୁ ନିଜେ ମନ୍ଥିଲୁ । କ୍ଷୀର ସାଗର ଅବା ମନ୍ଥିଥାନ୍ତୁ, ପାଇଥାନ୍ତୁ, ଲକ୍ଷ୍ମୀ, ଐରାବତ, ଅମୃତ ଆଉ ଆଉ କିଛି । ନିଜ ଭିତରେ ନିଜେ ଘାଣ୍ଟି ହୋଇ ମଲୁ । ନାନା ଇଜମ୍ ନାନା ଫର୍ମ ନାନା ଟେକନିକ୍ ମାଗି ଆଣିଲୁ । ଧାର ଆଣିଥାନ୍ତୁ ଭଲ, ଶୁଝିଥାନ୍ତୁ । ଆଉ କା' କଥା ନକହି ନିଜ କଥା ବେଶୀ କହିଲୁ । ନିଜ ମାଟିରେ ନଚେରଇ ନିର୍ମୂଳୀ ଲତା ପରି ଝୁଲିଲୁ, ଖାଲି ଝୁଲିଲୁ । ଏ ଅତିରିକ୍ତ ମନ୍ଥନରୁ ଗରଳ ନ ବାହାରି ଆଉ କଣ ବାହାରି ଥାନ୍ତା, କହିଲେ ? ଏଣୁ ଓଡ଼ିଶା ମାଟିରେ ସେ ହଳାହଳକୁ ପ୍ରଖନ୍ତା ବା କିଏ ? କଉଠି ଭେଳାନାଥଟାଏ ଥିଲା ଯେ ! ଲୋକେ ଆମକୁ ସହଜରେ ଘେନିଲେ ନାହିଁ । ଆମ କବିତା ଆମ ମାଟିରେ ଏକାବେଳକେ ପାଲଟିଗଲା ପରଂପରା ବିବର୍ଜିତ ଏକ ଅଖାଦ୍ୟ ।

ମନଟା କେଁଚେଁଇ ନ ଯାଆନ୍ତା କିପରି ଏ ପରିସ୍ଥିତିରେ । ରସ ବୋଲି ପଦାର୍ଥଟିଏ ରହିଲାନି କଉଠି ! ଘଟିକିଙ୍କ କାଚ ଭଳି ଚୁରମାର ହୋଇଗଲା ! ନିଜ ତହକରେ ପାଚି

Digitized by srujanika@gmail.com

ପାଚି ଆମେ କଖାରୁ ପରି ପଡ଼ି ରହିଲୁ ଛାନି ପିରିଡାରେ । ମେଟିଆ ବଳଦ ପରି ନିଜ ଘରିକଟି ଘୂରିଲୁ । ପାଶ୍ଚାତ୍ୟ ବିଜ୍ଞାନଟା କଉଠି ଥିଲା ଯେ ଆସିଲା ଦାଣ୍ଡ ଦୁଆରକୁ । ଛଡେଇ ନେଲା ସବୁ ପୁରୁଷ ପଣିଆ ଆମଠୁ । ହୀନବୀର୍ଯ୍ୟ କରିଦେଲା ଏକବାରେ । ଗୁଡ଼ାଏ ସୁଖ ବୋଲି ପଦାର୍ଥ ଆମ ଆଗରେ ଥୋଇ ଦେଇ କହିଲା, ଏସବୁ ଗ୍ରେବଲ ଥା' । ସେଇ ଅପୂର୍ବ ପଦାର୍ଥଟିକୁ ଗ୍ରେବେଇ ଗ୍ରେବେଇ ଆମେ ହାଲିଆ । ବୋର, ନିହାତି ବୋର । ଏଇ ବୋରଡମ୍‌ରୁ ମୁକୁଳିବାକୁ ଆମେ ଖୋଜିଲୁ କିଛି ଉତ୍ତେଜକ । ଫର୍ମ ଟେକନିକ, ଇଜମ ଗିଳିଲୁ । କସରତ୍ କଲୁ । ମଗାଜିନିଷ୍ଟ, ଅଣ୍ଟିଲା ନାହିଁ ଜମା । ଜାଡିଗଲା ପେଟ ପୂରିଲା ନାହିଁ । ଆମେ ରଡ଼ି ଛାଡ଼ିଲୁ । ଚିହ୍ନର କୋବିଦେୟାକୁ କହିଲେ 'ଯୁଗ-ଯନ୍ତ୍ରଣା' ।

ଓଡ଼ିଆ କବିତା ଏପରି ଏକ ଯୁଗ–ଯନ୍ତ୍ରଣାରେ ଜର ଜର ଥିବାବେଳେ ଉମା ଶଙ୍କର ପଣ୍ଡା ଉତୁରିଲେ କବିତାର ଏ ବଡ ଦାଣ୍ଡକୁ । ଓଡ଼ିଶାର ଆଉ ଆଉ କବିମାନଙ୍କୁ ଯେଉଁ ପଶ୍ଚିମା 'ଏଡସ୍' ଧରିଥିଲା, ଯାହାକୁ ଅବା ଛାଡନ୍ତା କିପରି ? ସଚି ରାଉତରାୟ, ବିନୋଦ ନାୟକ, ଗୁରୁ ପ୍ରସାଦ ମହାନ୍ତି; ଭନୁଜୀ ରାଓ ଆଦି ଏପ୍ରକାର ବ୍ୟାଧିରେ କଂପୁଥିବା ବେଳେ ଉମା ପଣ୍ଡାଙ୍କ ପାଖକୁ ସଂକ୍ରମିତ ନହେବାର ଅବକାଶ ନଥିଲା । ମାତ୍ର ଉମା ବାବୁ ତ ଗ୍ଲକ୍ ଲେକ । ଏ ସଂକ୍ରମଣରୁ ମୁକୁଳିବା ପାଇଁ ସେ ସବୁ ନିଦାନ ଓ ଅନୁମାନ ଠିକ୍ କରି ସାରି ଥିଲେ ଅଉଷଧ୍, ମଉଷଧ୍ ଢୋକି ସାରିଥିଲେ ।



ଉମା ଶଙ୍କର ପଣ୍ଡା

ଇମିତିଆ ଏକ ରଏଭସ୍ ରେଗର ଦବ୍‌ଦବି ମଉଚିବା ବେଳକୁ ଉମା ପଣ୍ଡା କବିତାର ଖାସ ମାହାଲରେ ଆସି ହାଜର । ଆମେ ତାଙ୍କ କବିତା ଗୁଡ଼ିକୁ ଖୁବ୍ ନିଠେଇ ନିରେଖିଲେ ଜାଣିବା ଯେ ତାଙ୍କ କବିତାରେ କାହାରି ଛାପ ପଡ଼ିନାହିଁ । ରୋମେଣ୍ଟିକ ରବୋଲ୍ୟାସରେ ସେ ମସଗୁଲ । ତାଙ୍କ କବିତାର ବିସ୍ତୃତ ମେହେଫିଲ୍‌ରେ ଖାଲି ପ୍ରେମର ବାସ୍ନା ମହ ମହ । ସେ ନିଜେ କହନ୍ତି :

"ଚେତନ ଆଉ ଅବଚେତନାର ମିଶ୍ରଣରେ ଯେଉଁ ନାରୀ ପ୍ରତିମାର ସୃଷ୍ଟି ସିଏହିଁ ହେଲା ପ୍ରକୃତ କବିତା ସୃଷ୍ଟିର ମୂଳ ଭଷା ପ୍ରେମ ଏକାବେଳକେ ତୃତୀୟ ନୟନର ଦୃଷ୍ଟି ।"

Digitized by srujanika@gmail.com

ତେବେ କଣ ଏ ଚେତନ ଓ ଅବଚେତନ ? କି ପ୍ରକାର ଏ ଲଯ ନୟନର ଦୃଷ୍ଟି ?
ଏଇ ପ୍ରେମରୁ ବାହାରେ ଏକେଲା ଏକେଲା ଲାଗେ । ଉପରଟା ଚେଏଁ ଥିଲେବି ଭୁଭୁଗ
ନିଆଁ ପରି ଭିତରଟା ଡହକି ଯାଉଥାଏ । ଖାଁ ଖାଁ ମନଟା ଖୋଜୁଥାଏ ଆଉ କାହାକୁ ।
ଉମା ପଣ୍ଡାଙ୍କ ବହୁ କବିତା ଏମିତିଆ ତାତିରେ ସିଝି ଯାଇଛି ଯେପରି ।

ବର୍ଷା ଆସେ ବର୍ଷା ଯାଏ ରକ୍ତେ ଜାଣ ଉଦ୍ଦାମ ଫାଲଗୁନ,
କାହାପାଇଁ ବ୍ୟଗ୍ର ଆଖି କାହାପାଇଁ ବ୍ୟଗ୍ର ଆଜି ମନ ।

ନୁହଇ ଅନଳ ଦେହ ଦହଇ ପରି–
ଏଇ ବସନ୍ତ ବି ଜଳି ପୋଡ଼ି ମରେ
ପ୍ରତିଟି ନାରୀର ଦେହ, ସ୍ତନେ ଅବା ଶୂନ୍ୟ କବରୀରେ ।

କାମନାରେ ପାଚିଯାଇ ସେ ନିର୍ବିକାର ଘୋଷଣା କରିଛନ୍ତି । ହଜି ଯିବାକୁ, ଲୀନ ହୋଇ
ଯିବାକୁ ପ୍ରେମିକାର ଅଚେତନ ସତ୍ତାରେ ।

ମୁଁ ନୁହଇ ସୂର୍ଯ୍ୟ ପୋ ବିଭକ୍ତକ ରଶ୍ମି
ମଁ ହୁଅନ୍ତି ତୁମବେଣୀ, ତୁମ ଦେହ ସଂଧି
କଟିର କେୟୁରେ ଅବା ହୁଅନ୍ତି ମୁଁ ସଂପୂର୍ଣ୍ଣ ସୀମିତ ।

ଉମା ପଣ୍ଡାଙ୍କ କବିତାର ଇଲକା ଫଇକରି ଯାଇଛି ଏକର ଏକର ଧାନ ଖେତରୁ ଛଳ–
ଛଳ ଆଖି ପର୍ଯ୍ୟନ୍ତ । ଯୌବନର ପୋଷ ପୋଷ ଶୋଷରେ ଆତୁର ତାଙ୍କର କବିତା । ଏ
ଆତୁରତାରେ ତାଙ୍କ ଶବ୍ଦ-ସଂପଦର ମଂଜି । ଉମାବାବୁଙ୍କ ପ୍ରେମିକା କଳ୍ପନାର । ତାଙ୍କ
କଳ୍ପନା ସାକାର ହୋଇଛି ଉଦାସୀନ ଗାଁଆର ଆକାଶ ପରି । ନିଜକୁ ପ୍ରେମିକାର ବିପୁଳ
ବ୍ୟାପ୍ତିରେ ହଜାଇ ଦେଇଛନ୍ତି । ଛୋଟ ଛୋଟ ନୟନ ନଗ୍ନଇ ତାଙ୍କ ପ୍ରେମିକା ତାଙ୍କ ସତ୍ତା
ଭିତରକୁ ପଶି ଆସିଛି ମୁହସଂଙ୍ଗେ । ତାରା ହୋଇ ଫୁଟିଛନ୍ତି ଆକାଶରେ । ସେମାନଙ୍କୁ ସେ
ସାଇତିଛନ୍ତି ମନର ପେଡ଼ାରେ । ମଧୁର ମିଛକୁ ସତ ସତ ମଣିଛନ୍ତି । ଦେହର ତାତିରେ
ମନର ରସରେ ଅନୁଭୂତିର ପାଣି ପବନରେ ମୁକୁଳିତ ହୋଇଛି ଭଲପାଇବାର ପାଦପ
ମେଲି ଦେଇଛି "ସ୍ୱର୍ଗେ ଏକ ତାଳ ଆଉ ମର୍ତ୍ତ୍ୟେ ଏକ ତାଳ
ଗୋଟିଏ ରୂପାର ଢ୍ୟାଳ ଆଉ ତାଳ ତୁମ ହୃଦୟର ।"

ମନକୁ ଯୋତି କରି ଜୀବନକୁ ମସ୍ତ ଏକ ଲମ୍ବା ନିଦରେ ଶୁଆଇ ମିଛ ସପନରେ ସେ ବିଭୋର
ହୁଅନ୍ତି ଯେତେବେଳେ "ସାନରଣୀ ପୋଛେ ଘୋଡ ଶାଳ" । କବିତାର ଟେଳକା ରଙ୍ଗକୁ
ସେ ଚିପୁଡ଼ି ଦିଅନ୍ତି ଗାଧୋଇସାରି ଗାମୁଛା ଚିପୁଡ଼ିବା ପରି । ପ୍ରତୀକ ଓ ଅଳଙ୍କାର ଛୁଙ୍କ -

Digitized by srujanika@gmail.com

ଦେଇ ବେଣୀ ଆଉ ବୟସର ଶାଗ ଖରିଡ଼ି ଦିଅନ୍ତି । ପାଠକ ବେଳେ ବେଳେ ତାକୁ ଗିଳି ପାରେନା ।

ଏବେ ମଣିଷର ଗତି ଦୋହଲି ଯାଇଛି । ସେ ଯାଉ ଯାଉ ଅଟକି ଯାଏ । ସବୁ ବୁଝିବି ବୁଝି ପାରେନା, ସବୁ ଜାଣିବି ଜାଣି ହୁଏନା, ବହୁ ପାଇବି କିଛି ମିଳେନା, ସବୁ ଥାଇବି ସେ ସର୍ବହରା । କବିଙ୍କ ଛାତିରେ ଶରତର ସବୁଜ ଯନ୍ତ୍ରଣା ଅସମ୍ଭାଳ ହେବା ବେଳକୁ ସେ ବାରମାସ ପ୍ରଦକ୍ଷିଣ କରନ୍ତି ପ୍ରେମିକାର ଦେହର ସମୁଦ୍ରକୁ ଅଶାନ୍ତ ସୂର୍ଯ୍ୟ ସମ ।

ଉମା ବାବୁଙ୍କ ବାକ୍ ଚତୁରିରେ ଯେମିତି କିଛି ଯାଦୁ ଅଛି । ତାଙ୍କର କବିତା ପାଠକକୁ ପ୍ରାରମ୍ଭିକ ପଠନରେ ସମ୍ମୋହିତ କରିଦିଏ । ତାଙ୍କର ଶାଣିତ ବ୍ୟଂଜନା ଓ ସୁଗଠିତ ଚିତ୍ରକଳ୍ପ ତାଙ୍କର କବିତାକୁ ସୁଆଦିଆ କରିପାରିଛି । ତାଙ୍କ କବିତା ଗୋଟା ପଣେ ରୋମେଣ୍ଟିକ ହେଲେବି କୌଣସି ଛନ୍ଦକୁ ସ୍ୱୀକୃତି କରିନାହିଁ ଲଘୁ ଭାବାବେଗରେ ଉଚାଟ ହୋଇଛି । କାହିଁ କେଉଁଠି ଚିତ୍ରକଳ୍ପ ଅପଛନ୍ଦା ହୋଇଛି ସତ, ହେଲେ ବ୍ୟଂଜିତ ରସ ପସାରଣରେ ସମୟକୁ ସେ ନ୍ୟୂନ ମନେକରି ନାହାନ୍ତି ।

ତଥାପି କାନ୍ଧରେ ଥୋଇ ସମୟର ଶବାଧାର
ମୁଁ ବୋହିଛି ମୋର ଶବ
ମୁଁ ଗଢ଼ିଛି ସବା ଆଶେ
ଏଇଠୁ ବା ହେଲା ମୋର ଜୀବନ ଆରମ୍ଭ
ହୁଏତ ଜୀବନ ଠାରୁ ମୃତ୍ୟୁ ବଡ଼, ସୁଖଠାରୁ ଦୁଃଖ ମଧୁମୟ !

ମୋଟାମୋଟି ଭାବେ ଉମାଶଙ୍କର ପଣ୍ଡା ତାଙ୍କ କବିତାର ରସଜ୍ଞ ପାଠକମାନଙ୍କ ହୃଦୟ-ହ୍ରଦରେ ନିଶ୍ଚିତ ପ୍ରତି ବିମ୍ବିତ ହୋଇ ରହିଥିବେ ନୀଳ ଆକାଶ ସମ ।



ଠିକଣା :
ଗ୍ରାମ/ଡାକ – ପରମାଣପୁର,
ଥାନା – ଶାସନ,
ଜି : – ସମ୍ବଲପୁର ।

Digitized by srujanika@gmail.com



# ।। କଳାହାଣ୍ଡିର ଲୋକ-ସଂସ୍କୃତି ।।

ଶ୍ରୀ ଭବାନୀ ଶଙ୍କର ପଣ୍ଡା ( ଭଗତ୍ )



## କଳାହାଣ୍ଡି : ନାମକରଣ- ସଂସ୍କାରର ଐତିହାସିକତା

'କଳାହାଣ୍ଡି' ଶବ୍ଦ 'କଳା' ଓ 'ହାଣ୍ଡି' ଦୁଇଟି ଶବ୍ଦର ସମାହାର । କଳାର ଅର୍ଥ ମାନବିକ କୌଶଳ/ ରଚନା/ ବିଦ୍ୟା/ ଶିଳ୍ପ (ଯାହାର ଇଂରାଜୀ ପ୍ରତିଶବ୍ଦ 'Arts' ସୁକୁମାର କଳା/ ଘରକଳା/ ଲଳିତକଳା (Fine Arts) ଇତ୍ୟାଦି । ହାଣ୍ଡି ଶବ୍ଦର ଅର୍ଥ ପାତ୍ର/ ଅତ-ଏବ, 'କଳାହାଣ୍ଡି' ଶବ୍ଦର ମୋଟାମୋଟି ଅର୍ଥ କଳାର ଭଣ୍ଡାର ।

ଯଜୁର୍ବେଦର ଅଧ୍ୟାୟ ୮, ମନ୍ତ୍ର ୩୬ ରେ ସନ୍ନିବେଶିତ ମନ୍ତ୍ରରେ 'ସଃ ଷୋଡ଼ଶୀ ପ୍ରଜା-ପତି' (୧) ନାମରେ ଶାସକଙ୍କ ଷୋ'ଳ କଳା ବା quali fication ର ବର୍ଣ୍ଣନା କରାଯାଇଛି । ଚେତନା, ଜ୍ଞାନ, ସତ୍ୟ, ଆନନ୍ଦ, ଆଲୋକ, ପବିତ୍ରତା, ଶକ୍ତି, ପ୍ରକାଶ, କର୍ତ୍ତୃତ୍ୱ, ଓଜ ସ୍ନେହ, ଦୟା, ଦାନ, ନ୍ୟାୟ ଐଶ୍ୱର୍ଯ୍ୟ ଓ ମୋକ୍ଷ– ଏସବୁ ଷୋ'ଳ କଳା ରୂପେ ବିବେଚିତ । ପ୍ରଜାପତି ଶାସକ ଏ ସମସ୍ତ କଳା ଦ୍ୱାରା ରାଷ୍ଟ୍ର ନିର୍ମାଣ ରୂପକ ଯଜ୍ଞରେ ଆହୁତି ପ୍ରଦାନ କରନ୍ତି । ସେ ରାଷ୍ଟ୍ରବାସୀଙ୍କୁ ବିବିଧ କଳାରେ ସପୁଷ୍ଟ ଓ ଉଦ୍‌ବୁଦ୍ଧ କରନ୍ତି ।

ସୁତରାଂ, କଳାହାଣ୍ଡିର ନାମକରଣ–ସଂସ୍କାର ଅତି ଉତ୍ତମ।ନର ଏଥିରେ ଦ୍ୱିମତର ଅବ-କାଶ ନାହିଁ । ଏହାର ଐତିହାସିକତା ଅନ୍ୱେଷଣ କରିବାକୁ ଗଲେ ନିମ୍ନୋକ୍ତ ଦସ୍ତାବିଜ (Records) ଦୃଷ୍ଟି ପଥାରୂଢ଼ ହୁଏ :–

Orissa District Gazetteers, Kalahandi ରେ 'କଳାହାଣ୍ଡି' ନାମର ଆକ୍ଷରିକ ଅର୍ଥ 'କଳାରଙ୍ଗର ହାଣ୍ଡି, (Black Pot) ରୂପେ କରାଯାଇଛି । (୨) ଏହାର ଅର୍ଥ 'କଳା'ର ହାଣ୍ଡି (Pot of Arts) ମଧ୍ୟ କରାଯାଇଛି । ଏଥିରେ ସ୍ପଷ୍ଟ ସୂଚନା ଦିଆଯାଇଛି ଯେ, କୋକସରା ଥାନା ନିକଟସ୍ଥ 'କୁଡ଼ହାଣ୍ଡି' ପାହାଡର ଗୁମ୍ଫାରେ ଋଷି-

Digitized by srujanika@gmail.com

କ୍ଷୁତ ପ୍ରାଗ୍-ଐତିହାସିକ ଲାଲ୍ ଓ କଳା ରଙ୍ଗରେ ଚିତ୍ରିତ ଚିତ୍ରକଳା ଅନୁସାରେ ଏହି ଜିଲ୍ଲାର ନାମ 'କଳାହାଣ୍ଡି' ରଖା ଯାଇଥିବା ଅନୁମାନ କରଯାଇ ପାରେ ।

ଏତଦ୍‌ବ୍ୟତୀତ କଳାହାଣ୍ଡିର ପୁରାତନ ରାଜଧାନୀ ଜନାପଡ଼ସ୍ଥ ଦଧିବାମନ ମନ୍ଦିର ଶିଳାଲେଖରେ 'କଳାହାଣ୍ଡି' ନାମ ସୂଚିତ ହୋଇଛି । ଏହି ଶିଳାଲେଖ ଯୁବରାଜ ଦେଓ ୩ୟ ଙ୍କ ରାଜତ୍ୱକାଳରେ ଯୁଗାବ୍ଦ ୪୮୧୯ ବା ୧୭୧୮ ଖ୍ରୀଷ୍ଟାବ୍ଦରେ ଖୋଦିତ ଓ 'କଳାହାଣ୍ଡି' ନଗରରୁ ଏହି ଶିଳାଲେଖ ଜାରି ହୋଇଥିଲା । (୩)

ବ୍ରିଟିଶ ରାଜତ୍ୱ କାଳରେ କଳାହାଣ୍ଡି କାରୁଣ୍ଡ (Kharonde) ରାଜ୍ୟ ନାମରେ ପରି- ଚିତ ଥିଲା । (୪) ବର୍ତ୍ତମାନ ମଧ୍ୟ କାରୁଣ୍ଡ ନାମ ବିସ୍ମୃତ ନୁହେଁ ।

## କାରୁଣ୍ଡ ମଣ୍ଡଳ

କଳାହାଣ୍ଡିର ସାଂପ୍ରତିକ ଧନ୍ୟମାନ୍ୟ ପ୍ରତ୍ନତାତ୍ତ୍ୱିକ ଖଡ଼ିଆଳ ଯୁବରାଜ ଶ୍ରୀଯୁକ୍ତ ଜିତାମିତ୍ର ପ୍ରସାଦ ସିଂହଦେବଙ୍କ ଦ୍ୱାରା ଅଧ୍ୟୟନ କରା ଯାଇଥିବା ମାନ୍ଦ୍ରାଜ ଯାଦୁଘର ତମ୍ବାପଟାରେ ଖୋଦିତ ନିମ୍ନୋକ୍ତ ଧାଡ଼ି ପ୍ରଣିଧାନ ଯୋଗ୍ୟ:-

ଓଁ ଖୁରଣ୍ଡ ସିଦ୍ଧେ । ଶ୍ରୀ ନରେନ୍ଦ୍ର ଧବଳ ରାଜ୍ୟେ ।

କାରୁଣ୍ଡ ମଣ୍ଡଳେ । ଧରଣୀପ୍ରା ବିନିଶ୍ଚିତ ।

ନାଗବଂଶ ସଂଭବ ଶ୍ରୀମଦ୍ ବରାହ ସୁତ ଶ୍ରୀ ବିକାର ଇତ୍ୟାଦି (୫)

୧୦ମ ଖ୍ରୀଷ୍ଟାବ୍ଦରେ ନନ୍ଦବଂଶୀୟ ସ୍ୱାଧୀନ ମହାରାଜାଧିରାଜ ନରେନ୍ଦ୍ର ଧବଳଙ୍କ ରାଜ୍ୟ ଶାସନ ସମୟରେ ଖୁଣ୍ଡିର ଶୃଙ୍ଗ ରାଜ୍ୟ କାରୁଣ୍ଡ ମଣ୍ଡଳ ଓ ଗୋମୁଣ୍ଡ ମଣ୍ଡଳ ନେଇ ଗଠିତ ହୋଇ- ଥିଲା । ଏହି ଦାନ ପତ୍ରରେ ଉଲ୍ଲିଖିତ ଅଛି ଯେ ନାଗବଂଶର ଜଣେ ରାଣକ ଗୋଙ୍ଗଝ, ଗୋମୁଣ୍ଡମଣ୍ଡଳର ଭଂଜ ବଂଶୀୟ ରାଜା ଶ୍ରୀ ଶିଳାଭଂଜ ଦେବଙ୍କ ଠାରୁ ଗ୍ରାମ କିଣି ଦାନ କରିଥିଲେ । ସମ୍ଭବତଃ ଏକଦା କଳିଙ୍ଗର (1069-77 AD) ଗଙ୍ଗବଂଶୀ ରାଜରାଜ- ଦେବଙ୍କ ସେନାନାୟକ ବାନପତିଙ୍କ ଦ୍ୱାରା ଆକ୍ରମିତ 'ତ୍ରିଦ୍ୱିଶୃଙ୍ଗ' 'ଖୁଣ୍ଡିର ଶୃଙ୍ଗ ମଣ୍ଡଳ' ହୋଇପାରେ (୬) ସୋମବଂଶୀ ରାଜା ମହାଶିବ ଗୁପ୍ତ ଜଜାତି ୧ମ (Cirea 885- 928 AD) ଙ୍କ ଏକ ସନନ୍ଦରେ ଓଡ୍ର ରାଜ୍ୟାନ୍ତର୍ଗତ ଏକ ଗ୍ରାମ ଶିଳାଭଂଜ ପତି- ବୋଲି ନିର୍ଦ୍ଦେଶ ଅଛି । ସୋମବଂଶୀଙ୍କ ପୂର୍ବରୁ ଶୀଳାଭଂଜ ଥିବେ ବୋଲି ନିଶ୍ଚିତ ରୂପେ କୁହାଯାଇପାରେ । ଏହି ସମୟ ସୋମବଂଶୀଙ୍କ ସାମ୍ରାଜ୍ୟ ବିସ୍ତାର କାଳ ହୋଇଥିବାରୁ ଏବଂ ସୋମବଂଶୀମାନେ ତ୍ରିକଳିଙ୍ଗାଧିପତି ଉପାଧିରେ ଭୂଷିତ ହୋଇଥିବାରୁ, ଏହି କାରୁଣ୍ଡ ମଣ୍ଡଳ ରାଜ୍ୟାଂଶ ସୋମବଂଶୀଙ୍କ ଅଧିକୃତ ଥିବାରୁ, ଏହାର ନାମ ବିସ୍ମୃତ ହୋଇଯାଇଥିବ । (୬)

Digitized by srujanika@gmail.com

## କମଳ ମଣ୍ଡଳ

ନର୍ଲାଘିତ ଶିବମନ୍ଦିରର ଶିଳାଲେଖରୁ ଜଣାଯାଏ ଯେ "ଶାକ ରମବାଣୀ ରୁଦ୍ରସନ... (ଶକାବ୍ଦ ୧୧୧୩ ବା ୧୧୯୧ ଖ୍ରୀ: ଅ: ରେ) କଳାହାଣ୍ଡି ରାଜ୍ୟର ଅଧିକାଂଶ ଅଞ୍ଚ... ନେଇ 'କମଳ ମଣ୍ଡଳ' ଗଠିତ ହୋଇଥିଲା ।

ଉତ୍କଳର ଶେଷ କେଶରୀ ରାଜା (ସୋମବଂଶୀ) ୪୯ତମ କଳିଙ୍ଗ ସାହିରେ (1124 AD) ଗଂଗ ରାଜା ଅନନ୍ତ ବର୍ମା ଚୋଡଗଂଗ ଦେବଙ୍କ ଠାରୁ ପରାସ୍ତ ହୋଇଥିଲେ । ଏହି ଗଂଗ ରାଜା ୭୦ ବର୍ଷ କାଳ ଶାସନ କରିଥିଲେ । ଅନନ୍ତ ବର୍ମାଙ୍କ ମୃତ୍ୟୁପରେ ତାଙ୍କ ଜ୍ୟେଷ୍ଠ ପୁତ୍ର କାମାର୍ଣ୍ଣବ ଦେବ 1147 A.D. ରେ ସିଂହାସନ ଆରୋହଣ କରିଥିଲେ । କାମାର୍ଣ୍ଣବ ଦେବଙ୍କ ଉତ୍ତରାଧିକାରୀ ରୂପେ ତାଙ୍କ ଭାଇ ରାଘବ ୧୧୫୭ ରୁ ୧୧୭୧ ଖ୍ରୀ: ଅ: ପର୍ଯ୍ୟନ୍ତ ରାଜତ୍ୱ କଲେ । ତାଙ୍କର ଉତ୍ତରାଧିକାରୀ ରୂପେ ତାଙ୍କ ଭାଇ ରାଜ ରାଜ ଦେବ ୨ୟ ଓରଫ ମଦନ ମହାଦେବ ୧୧୭୧–୧୧୯୪ ଖ୍ରୀ: ଅ: ପର୍ଯ୍ୟନ୍ତ ରାଜତ୍ୱ କଲେ । ଏହାଙ୍କ ଶାସନ ସମୟରେ ଗଂଗରାଜ୍ୟ ବର୍ତ୍ତମାନର କଳାହାଣ୍ଡି ରାଜ୍ୟର ଉତ୍ତର ପୂର୍ବାଂଶ ପର୍ଯ୍ୟନ୍ତ ବିସ୍ତାରିତ ଥିଲା । ଏ ବିଷୟ କଳାହାଣ୍ଡି ନର୍ଲାର ପୁରୁଣା ଶିବ ମନ୍ଦିର ଅଭିଲେଖର ଉପରୋକ୍ତ ଘଟଣାକୁ ପ୍ରମାଣିତ କରୁଅଛି (୮)

## କଳାହାଣ୍ଡି

ବିଶିଷ୍ଟ ଐତିହାସିକ କେଦାରନାଥ ମହାପାତ୍ରଙ୍କ ମତାନୁଯାୟୀ କଳାହାଣ୍ଡି ଏକ ସ୍ୱତନ୍ତ୍ର ରାଜନୈତିକ ସତ୍ତା ରୂପେ (As a separate political entity) ଗଙ୍ଗ ରାଜତ୍ୱ ସମୟରେ ହିଁ ପରିଚିତ ହୋଇଥିଲା । ଏ ସମ୍ବନ୍ଧରେ ପ୍ରାଚୀ ସମିତି ଦ୍ୱାରା ସଂପାଦିତ ମାଦଳାପାଂଜି (ପୃ ୩୮) ର ନିମ୍ନୋକ୍ତ ଲେଖାର ନଜିର ଦେଉଛନ୍ତି । ପୁରୀ ଜଗନ୍ନାଥ ମନ୍ଦିରର ଏହି ବିଖ୍ୟାତ ଇତିବୃତ୍ତି (Chronicle) ରେ କବିଙ୍କଠ ନରସିଂହଙ୍କ କଳାହାଣ୍ଡି ଅଧିକାର ବିଷୟ ବର୍ଣ୍ଣନା କରି କୁହାଯାଇଛି– "କଳାହାଣ୍ଡି ବସ୍ତରେ ପାତ୍ରକୁ ରଖାଇ ରାଜ୍ୟ ଭୋଗକଲେ ।" ଏହି ମାଦଳାପାଂଜି ଅନୁଯାୟୀ କବିଙ୍କଠ ନରସିଂହ ୧୨୫୧ ଶକାବ୍ଦ ବ ୧୩୨୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସୁତରାଂ ଚତୁର୍ଦ୍ଦଶ ଶତାବ୍ଦୀ ପ୍ରାରମ୍ଭ ଆଡ଼କୁ କଳାହାଣ୍ଡି ଏକ ସ୍ୱତନ୍ତ୍ର ରାଜନୈତିକ ସତ୍ତା ରୂପେ ପରିଚିତ ହୋଇ ସାରିଥିଲା । (୯)

କେତେକ ଐତିହାସିକଙ୍କ ମତରେ ଓଡ଼ିଶାର ସୂର୍ଯ୍ୟବଂଶ ରାଜା କପିଳେନ୍ଦ୍ର ଦେବ (୧୪୩୪ ୬୭ ଖ୍ରୀ:ଅ:) ଙ୍କ ୧୮ ଗୋଟି ପୁତ୍ର ସନ୍ତାନ ମଧ୍ୟରୁ କଲ୍ୟାଣ ହମେରେ

Digitized by srujanika@gmail.com

(ବା କଳାହାମ୍ବିର) ନାମକ ଜଣେକ ପୁତ୍ର ୧୪୭୩ ଖ୍ରୀ:ଅ: ରେ କଳାହାଣ୍ଡି ଅଂଚଳ ଅଧିକାର କରିଥିବାର ତଥ୍ୟ ଯୁନଗଡ଼ର ଗଂଗ ଅଧିକୃତ ନଥିପତ୍ର ଓ ଅପ୍ରକାଶିତ ତାଳ-ପତ୍ର ପୋଥିରୁ ଜଣାଯାଏ (୧୦) ଏଣୁ ତାଙ୍କରି ନାମାନୁସାରେ କୋହାଣ୍ଡିର ନାମକରଣ ହୋଇଥିବାରୁ ଅନୁମାନ କରଯାଏ । କିନ୍ତୁ ଏହାଙ୍କ ପୂର୍ବରୁ ମାଦଳାପାଂଜିରେ କଳାହାଣ୍ଡିର ନାମ ଉଲ୍ଲେଖ ଥିବାରୁ ଏତାଦୃଶ ଅନୁମାନ ଅମୂଳକ ଅଟେ ।

କଳାହାଣ୍ଡିର ନାମ ସର୍ବ ପ୍ରଥମେ ୧୭୧୮ ଖ୍ରୀ:ଅ. ରେ ଜୁନାଗଡ (ପୂର୍ବତନ କଳାହାଣ୍ଡି ନଗରୀ) ଦଧିବାମନ ମନ୍ଦିରର ଉପରସ୍ଥ ଶିଳାଲେଖରୁ ଜଣାଯାଏ ।

## ବୀରମାଟି କଳାହାଣ୍ଡି

କଳାହାଣ୍ଡିର ସଂସ୍କୃତି ଏକ ବୀର ଜାତିର ସଂସ୍କୃତି । ଏହା କଳାହାଣ୍ଡି କଲେଜର ଦ୍ୱାର-ଦେଶରେ ଅବସ୍ଥାପିତ ଦେଲଖଣ୍ଡି ଠାରେ ଧାପ ଖଣ୍ଡା ଓ ଢାଲଧାରୀ ଓଡ଼ିଆ ବୀରଙ୍କର ଦୁଇଟି ଶିଳାମୂର୍ତ୍ତିରୁ ପ୍ରମାଣିତ ହୁଏ (୧୧)

ସନ୍ ୧୯୫୦ ସାଲରେ ପ୍ରକାଶିତ ବେଙ୍ଗଲ ଗେଜେଟ୍‌ରେ ଶ୍ରୀଯୁକ୍ତ ଏଲ୍ ଇ- ବି କୋବ୍-ଡେନ୍ ରମ୍‌ସେ ଦର୍ଶାଇଛନ୍ତି ଯେ କଳାହାଣ୍ଡି ଏକ ସ୍ୱାଧୀନ ରାଜ୍ୟଥିଲା । (It is alleged that the dependaney or Karonda of Kalahandi, Was formenly an independent State, paying nc tribule to any power, but eventually came under the dominion of the Marathas × × × )

ଖ୍ରୀ: ପୂ: ୩ୟ ଶତାବ୍ଦୀରେ କଳାହାଣ୍ଡି ଅଞ୍ଚଳ କୋରାପୁଟ ଅଞ୍ଚଳକୁ ମିଶାଇ ଆଟବିକ ରାଜ୍ୟ ରୂପେ ପରିଚିତ ଥିଲା । ପ୍ରାଚୀନ ଶିଳାଲିପି ଏବଂ ସାହିତ୍ୟରେ ଏହି ଅଞ୍ଚଳ ମହା-ବାନ ଏବଂ ମହାକାନ୍ତାର ରୂପେ ବିଦିତ ଥିଲା । ସମ୍ରାଟ ଅଶୋକଙ୍କ ସ୍ୱତନ୍ତ୍ର କଳିଙ୍ଗ ଶିଳାଲେଖ (Special Kalinga Edict II) ଅନୁଯାୟୀ ଆଟବିକମାନେ ଦୁର୍ଦ୍ଧର୍ଷ ଯୋଦ୍ଧା ଥିଲେ ଏବଂ କଳିଙ୍ଗ ସେନା ସହ ମିଳିତ ହୋଇ ସମ୍ରାଟ ଅଶୋକଙ୍କ ଦୁର୍ଜ୍ଜୟ ବାହିନୀ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ସମ୍ରାଟ ଅଶୋକ ଖ୍ରୀ: ପୂ: ୨୬୧ (261 B. C.) ରେ କଳିଙ୍ଗ ଆକ୍ରମଣ କରିଥିଲେ । ମୌର୍ଯ୍ୟ ସମ୍ରାଟ ଅଶୋକ କଳିଙ୍ଗ ଅଧିକାର କରିବାକୁ ସକ୍ଷମ ହୋଇଥିଲେ ମଧ୍ୟ ଆଟବିକ ରାଜ୍ୟ ଅଧିକାର କରିବାକୁ ସକ୍ଷମ ହୋଇପାରି ନଥିଲେ । ତେଣୁ ସେ ବାଧ୍ୟ ହୋଇ ଆଟବିକମାନଙ୍କ ସହ ବନ୍ଧୁତା ସ୍ଥାପନ କରିଥିଲେ । ଉକ୍ତ ଶିଳାଲେଖରେ ପ୍ରକାଶ କରିଛନ୍ତି ଯେ ସେ ଆଟବିକମାନଙ୍କ ହୃଦୟ ଜୟ କରିବାକୁ ଚାହାନ୍ତି, ରାଜ୍ୟ ନୁହେଁ ଏବଂ ଇହ ତଥା ପରଲୋକରେ ସେମାନଙ୍କ ଶାନ୍ତି ଏବଂ ସମୃଦ୍ଧି ଚାହାନ୍ତି । (୧୩)

Digitized by srujanika@gmail.com

ସମ୍ରାଟ ଖାରବେଳଙ୍କ ହାତୀ ଗୁମ୍ଫା ଅଭିଲେଖାନୁସାରେ ଖ୍ରୀ: ପୂ: ୧ମ ଶତାବ୍ଦୀରେ ଆଟବିକ ରାଜ୍ୟ ବୋଧହୁଏ ବିଦ୍ୟାଧର ରାଜ୍ୟ ନାମରେ ପରିଚିତଥିଲା । ଏହି ଅଭିଲେଖାରୁ ଜଣାଯାଏ ଯେ ଖାରବେଳଙ୍କ ନିଜ ରାଜତ୍ୱର ୪ର୍ଥ ବର୍ଷରେ ବିଦ୍ୟାଧର ରାଜ୍ୟର ଯୋଦ୍ଧା-ମାନଙ୍କୁ ସଂଗଠିତ କରିଥିଲେ ଏବଂ ସେମାନଙ୍କ ସାହାଯ୍ୟରେ ପଶ୍ଚିମ ଭାରତର ରଥିକ ଏବଂ ଭୋଜକମାନଙ୍କୁ ବଶୀଭୂତ କରି ପାରିଥିଲେ । କଳାହାଣ୍ଡି ଗ୍ୟାଜେଟିଅର୍‌ରେ କଳାହାଣ୍ଡି ବୀରମାଟି ରୂପେ ବର୍ଣ୍ଣନା କରି କୁହାଯାଇଛି :–

"Thus, This territory continued to earn the fame as the land of the martial people in the Ist Century B. C"

କଳାହାଣ୍ଡି ନାଗବଂଶର ଦ୍ୱାବିଂଶ ତମ ଶାସକ ମହାରାଜା ଶ୍ରୀ ଯୁଗସାଏ ଦେଓ ରାୟ (1693-1721 AD) ଙ୍କ ଦ୍ୱାରା ସମ୍ବତ୍ ୧୭୬୯ (1712 AD) ରେ ଦତ୍ତ ତାମ୍ର-ପତ୍ରାନୁଯାୟୀ ମହାରାଜକୁମାର ଶ୍ରୀ ଜସାଇ ସିଂହ (କଳାହାଣ୍ଡି ରାଜ୍ୟାନ୍ତର୍ଗତ ଥୁଆମୂଳ ଓ ଦେନ୍ତୁରର ଜମିଦାର) ଜୟପୁର (କୋରାପୁଟ ଦଳ) ରାଜାଙ୍କୁ ଯୁଦ୍ଧରେ ପରାସ୍ତକରି ପରାଜିତ ରାଜାଙ୍କ ପୁତ୍ର ଭଡ଼ା ବିଶ୍ୱମ୍ଭର ଦେଓଙ୍କୁ ଗାଦିନସିନ କରିଥିଲେ ଏବଂ ତା ପରି-ବର୍ତ୍ତେ ବୁଢ଼ା ବିଶ୍ୱମ୍ଭର ଦେଓ କଳାହାଣ୍ଡି ମହାରାଜା ଶ୍ରୀ ଯୁଗସାଏ ଦେଓ ତୃତୀୟଙ୍କୁ କାଶୀପୁର, ଚନ୍ଦ୍ରଗିରି ବିଷମଗିରି ଏବଂ ମହୁଲପାଟଣା ନାମକ ଚାରୋଟି ଗଡ ପ୍ରଦାନ କରିଥିଲେ । ଏହି ଚାରୋଟି ଗଡ଼କୁ, କଳାହାଣ୍ଡି ମହାରାଜା, ଜସାଇସିଂହଙ୍କୁ ବାର୍ଷିକ ସାତ-ଶହ ଟଙ୍କା ମାଲଗୁଜାରୀ ଧାର୍ଯ୍ୟକରି ପ୍ରଦାନ କରିଥିଲେ (୧୪) ଏହି ରାଜ୍ୟ ଜୟର ସ୍ମାରକୀ ସ୍ୱରୂପ ମହୁଲପାଟଣା (କୋରାପୁଟ ସୀମା) ପାଖରେ ଜୟପାଟଣା ନାମରେ ଗ୍ରାମ ବସାଯାଇଥିଲା । ଯାହାକୁ ପରବର୍ତ୍ତୀ କାଳରେ ଏକ ଜମିଦାରୀ ରୂପେ ପରିଣତ କରାଯାଇଥିଲା । ଏଥିରୁ କଳାହାଣ୍ଡିର ସୈନିକମାନଙ୍କ ବୀରତ୍ୱ ଅନୁମେୟ ।

କଳାହାଣ୍ଡିର ଉପରୋକ୍ତ ଚାରୋଟି ଗଡ ପ୍ରାପ୍ତ ପୂର୍ବରୁ ଚଉଦଟି ଗଡ ବା ଦୁର୍ଗ ଥିବାର ବର୍ଣ୍ଣନା ଉପାରଗତ କୋବ୍‌ଡେନ୍ ରାମ୍ସେ ସାହେବ ବେଙ୍ଗଲ୍‌ଗେଜଟ୍‌ରେ ବର୍ଣ୍ଣନା କରି-ଛନ୍ତି (୧୫) ଏତଦ୍ ବ୍ୟତୀତ କଳାହାଣ୍ଡି ଜିଲ୍ଲାର ନୂଆପଡା ସବ୍‌ଡିଭିଜନ୍ ଅନ୍ତର୍ଗତ ଖୁନା-ବଡ ମାଳଭୂମିରେ ଥିବା ମାଣିକଗଡରେ ଅନେକ ଅଶ୍ୱାରୋହୀ ବୀରଙ୍କ ପ୍ରସ୍ତର ମୂର୍ତ୍ତି ଉପଲବ୍ଧ ହୋଇଛି । ଏହା ସମ୍ବଲପୁର ବିଶ୍ୱବିଦ୍ୟାଳୟର ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି । (୧୬)

Digitized by srujanika@gmail.com

## କଳାହାଣ୍ଡିରେ ଭାରତର ପ୍ରଥମ ସ୍ୱାଧୀନତା ଆନ୍ଦୋଳନ

ସନ୍ ୧୯୭୩ ସାଲରେ ଭବାନୀପାଟଣା ଠାରେ ଅନୁଷ୍ଠିତ ଦଶମ ଓଡ଼ିଆ ଯୁବ ଲେଖକ ସମ୍ମେଳନ ଉପଲକ୍ଷେ ପ୍ରକାଶିତ ସ୍ମରଣିକାରେ କଳାହାଣ୍ଡି ରାଜ୍ୟର ଅନ୍ତିମ ମହାରାଜା ଶ୍ରୀଯୁକ୍ତ ପ୍ରତାପ କେଶରୀ ଦେଓ 'ଇତିହାସର ଅଲେଖା ପୃଷ୍ଠାଏ' ଶୀର୍ଷକ ଏକ ପ୍ରବନ୍ଧରେ ବର୍ଣ୍ଣନା କରିଛନ୍ତି :—

୧୮୫୩ ସାଲରେ Lt Macriell ସାହେବ ରାମପୁର (M. Rampur)ର ବୋରିଆ କନ୍ଧମାନଙ୍କର ଉମରା (ସରଦାର) ରେଣ୍ଡୋ ମାଝିଙ୍କୁ ମେରିଆ ବଳିରେ ଯୁକ୍ତ ଥିବାର ସନ୍ଦେହରେ ଗିରଫ୍ କରି ରସଲ କୁଣ୍ଡା ଜେଲରେ ବିନା ବିଚାରରେ ରଖିଥିଲେ । ଦୁଇବର୍ଷ ପରେ ୧୮୫୫ ଡ଼ିସେମ୍ବର ମାସରେ Macriell ସାହେବ ରେଣ୍ଡୋ ମାଝିଙ୍କୁ ହାତ ଓ ଗୋଡରେ ଶିକୁଳି ବାନ୍ଧି ସାଙ୍ଗରେ ଧରି ଉର୍ଲାଦାନୀ ଅଂଚଳକୁ ଆଣିଥିଲେ । ଉଦ୍ଦେଶ୍ୟ ଥିଲା କନ୍ଧମାନଙ୍କ ଦମନ ପାଇଁ ଭୟ ପ୍ରଦର୍ଶନ କରିବା । କିନ୍ତୁ ଫଳ ହେଲା ଓଲଟା । ଦୁର୍ଦ୍ଧର୍ଷ କନ୍ଧମାନେ ନିଜ ନେତାଙ୍କ ଉପରେ ହେଉଥିବା ଅମାନୁଷିକ ଅତ୍ୟାଚାର ଓ ଅପମାନର ପ୍ରତିଶୋଧ ନେବା ପାଇଁ ସନ୍ ୧୮୫୫ ସାଲ ଡ଼ିସେମ୍ବର ୧୦ ତାରିଖ ଦିନ ବ୍ରିଟିସ୍ ସେନା ଛାଉଣୀ ଉପରେ ଆକ୍ରମଣ କରି ବ୍ରିଟିସ୍ ସେନାଙ୍କ ଗୋଳା ବାରୁଦରେ ଶତାଧିକ ସଂଖ୍ୟାରେ ପ୍ରାଣ ହରାଇବା ସଙ୍ଗେ ସଙ୍ଗେ ଶତାଧିକ ବ୍ରିଟିଶ୍ ସୈନ୍ୟଙ୍କୁ ହତ୍ୟା କରିଥିଲେ । କିନ୍ତୁ କନ୍ଧମାନର ତହସିଲଦାର ଶ୍ରୀ ଦୀନବନ୍ଧୁ ପଟ୍ଟନାୟକ ବହୁ ସୈନ୍ୟ ସାମନ୍ତ ଘେନି କନ୍ଧଙ୍କ ଘେରରେ ପଡ଼ିଥିବା କଂପାନୀ ସୈନ୍ୟଙ୍କୁ ଉଦ୍ଧାର କରିଥିଲେ । ଏହି ଘଟଣାକୁ ଶ୍ରୀଯୁକ୍ତ ଦେଓ ଭାରତର ପ୍ରଥମ ସ୍ୱାଧୀନତା ଆନ୍ଦୋଳନ ବୋଲି ପ୍ରତିପାଦିତ କରିଛନ୍ତି । ୧୯୭୩ ସାଲରେ ପାଳିତ ଭାରତର ସ୍ୱାଧୀନତାର ରଜତ ଜୟନ୍ତୀ ଉପଲକ୍ଷେ ଉର୍ଲାଦାନୀ ଠାରେ ସ୍ଥାନୀୟ ଜନସାଧାରଣଙ୍କ ଉଦ୍ୟମରେ ଉକ୍ତ ଅମର ସହୀଦମାନଙ୍କ ସ୍ମୃତି କଳ୍ପେ ଗୋଟିଏ ସ୍ମୃତି ଶିଳାନ୍ୟାସ କରାଯାଇଛି । ଏହାକୁ କଳାହାଣ୍ଡି ଇତିହାସର ଏକ ଗୌରବମୟ ଅଧ୍ୟାୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । (୧୭)

## କନ୍ଧମେଳି

ଇଂରେଜ୍ ସରକାରଙ୍କ ବିରୁଦ୍ଧରେ କିପରି କଳାହାଣ୍ଡିର ଆଦିବାସୀଙ୍କ ଅନ୍ତରରେ ମେଳି ବା ବିପ୍ଳବର ବାଂଛା ସୃଷ୍ଟି ହୋଇଛି ତାହା ନିମ୍ନୋକ୍ତ କନ୍ଧ ଗୀତରେ ଲକ୍ଷଣୀୟ :—

"ଏ ଟେ ଟେ ଟେ ଆଡେ ଜାନି ! ଭୀମ ଟାଙ୍ଗ୍ କାଜନ୍ଦେ !!
ରାଜାମାନେର ଲାଲ୍ ରୁଧି ଫି ଫି ବଲନ୍ଦେ ।

Digitized by srujanika@gmail.com

ଆଜ୍‌ସେ ଫି କାଲ୍‌ସେ ଫି ଦିନେ ନାଇଁ ଦିନେ ଫି
ନାକର୍ ବିନାଶ ଉଁକୂଟ୍ କେଲେ କେନ୍ତା କେତେ ଭୀ
ଆମର୍ ଗଛା ଆମର୍ ମୂଲ ଆମର୍ ମାଟର୍ ଗାଢ଼ା
ଆମର ଜମିନ୍ କେନ୍ ନେଇଯେ ନା ମିଲତେ ପାଚା
ଆନାରେ ପିଲେ ମେଲ୍‌ଟାଙ୍ଗି ବୁଲତେ ବୁଁ
ବେଲେନ୍ ବୁଢ଼ା କାନ୍ଦଲେନେ
କନ୍ଧ ମାହେଂଜି କେନ୍ ମିରିଆ ଗଡ୍‌ଧଡ୍
ହଲ୍‌ଦି ପାନ୍ ଗୁଦ୍‌ଲେନେ.........

ଅର୍ଥାତ୍ – "ହେ ଜାନି (କନ୍ଧ ସମାଜର ମୁଖ୍ୟ ପୁରୋହିତ) ଭୀମା ଦେବତାର ବଳିପରଶୁ (କୁଠାର) ଅସନ୍ତୋଷରେ ଆହାର ନିମିତ୍ତ କାନ୍ଦୁଚି । ଗୋରା ମଣିଷର ତାଜା ଗରମ ରକ୍ତ ପିଇ ଶାନ୍ତି ପାଇବା ପାଇଁ ସେ ଡାକି କହୁଚି–ଆଜି ହେଉ ବା କାଲି ହେଉ ମୁଁ ଦିନେ ନା ଦିନେ ସେହି ଅତ୍ୟାଚାରୀର ରକ୍ତ ପିଇବି, ଏହା ନିଶ୍ଚିତ ଅଟେ । କାରଣ ମୋର ନିଶ୍ୱାସ ପବନ ଉପରେ କଟକଣା ଜାରି ହେଲେ ମୁଁ ବଂଚିବି କିପରି ? ଆମେ ଏଇମାଟିର ସନ୍ତାନ । ଆଦିମବାସୀ । ବଣ ଜଙ୍ଗଲ ଆମର, ମହୁଲଝୋର ଆମର । କିନ୍ତୁ ଆମର ଜମି ଜମାକୁ କିଏ ନେଇଯାଉଚି ଯେ ତାର ପତ୍ତା ମିଳୁନାହିଁ । ଆମର ସେହି ହୃତ ଅଧିକାରକୁ ଫେରଇ ଆଣିବା ପାଇଁ ଆଜି ଆମେ 'ମେଳି'ର ଶୁଭାରମ୍ଭ କରିବା । ହେ ଜଢୁଆ କନ୍ଧଯୁବକୁଳ ଆସ । ଆମେ ବିପ୍ଳବ-କୁଠାରକୁ ପ୍ରାନ୍ତର ପ୍ରାନ୍ତରେ ବୁଲାଇ ନେବା, ମେରିଆରକ୍ତ ପାନ କରିବା ପାଇଁ ଦେବୀ ବେଲେନ୍ ମଧ୍ୟ ଟାକି ରହିଚି । ମେରିଆର ଗୋଡକୁ ହଳଦି ପାଣିରେ ଧୋଇଦେବା ପାଇଁ କନ୍ଧନାରୀ ସଜ ହୋଇ ରହିଚି ।"

କଳାହାଣ୍ଡିରେ ରାଣୀ ଆଶାକୁମାରୀ ଦେବୀଙ୍କ ରାଜୁତ କାଳରେ (1882 A D.) କନ୍ଧମେଳି ହୋଇଥିଲା । ଏହା କନ୍ଧ ଉକଗ କମଲ ମାଝୀଙ୍କ ନେତୃତ୍ୱରେ ଅତୁରଚନ୍ଦବେସା ପ୍ରଗଣାରୁ ଆରମ୍ଭ ହୋଇଥିଲା । କୋଲତା ଗୁଷୀ ଓ ଈଶ୍ୱର ଦୌନ୍ତିଆ ଏହି ମେଳିର ପ୍ରଥମ ଶୀକାର ହୋଇଥିଲେ । ଏଇମେଳିର ଲେମ ହର୍ଷକୋରୀ ଚିତ୍ର ନର୍ଲା ବ୍ଲକ ଅନ୍ତର୍ଗତ ବାଗପୁର ଗ୍ରାମର ଆଦିବାସୀ କନ୍ଧ କବି ଶ୍ରୀ ଦଇତାରୀ ମାଝୀ ଜନପ୍ରିୟ 'କନ୍ଧମେଳି ଗୀତ"ରେ ଦେଖିବାକୁ ମିଳିଥାଏ । ପରୋକ୍ଷରେ ଇଂରେଜ ଶାସନ ବିରୁଦ୍ଧରେ ଉଦ୍ଦିଷ୍ଟ ଥିଲେ ହେଁ ପ୍ରତ୍ୟକ୍ଷରେ ସ୍ଥାନୀୟ କୋଲତା ଗୁଷୀ ଓ କଳାହାଣ୍ଡିର ରାଜତନ୍ତ୍ର ବିରୁଦ୍ଧ ରେ ଏହି ମେଳି ଭିଆଣ ହୋଇଥିଲା । (୧୮)

Digitized by srujanika@gmail.com

## କଳାହାଣ୍ଡିର ଲୋକ ସଂସ୍କୃତି :

ଲୋକ :–୧୯୮୧ ସାଲ ଜନଗଣନାନୁସାରେ କଳାହାଣ୍ଡିର ଜନସଂଖ୍ୟା ୧୧,୬୩,୮୬୯ । ଏମାନଙ୍କ ମଧ୍ୟରୁ ପୁରୁଷମାନଙ୍କର ସଂଖ୍ୟା ୫, ୭୮, ୯୨୯ ଏବଂ ସ୍ତ୍ରୀମାନଙ୍କ ସଂଖ୍ୟା ୫, ୮୪, ୯୪୦ । ଏଥିରୁ ଜଣାଯାଏ ଯେ ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନଙ୍କ ସଂଖ୍ୟା ଅଧିକ । (୧୯)

ସଂସ୍କୃତି :– କଳାହାଣ୍ଡିର ସଂସ୍କୃତି ସାଧାରଣତଃ ଗ୍ରାମଞ୍ଚଳରେ ବାସକରୁଥିବା ଆଦିବାସୀ ଓ ହରିଜନ ସଂସ୍କୃତି ଅଟେ । ୧୯୬୧ ର ଜନଗଣନାନୁଯାୟୀ ମୋଟ ଜନସଂଖ୍ୟା ୧୧, ୬୩, ୮୬୯ ମଧ୍ୟରୁ ୧୧, ୦୭, ୩୧୬ ଗ୍ରାମାଂଚଳରେ ବସବାସ କରନ୍ତି ଯାହାକି, ଶତକଡା ୯୫ ଭାଗ ଅଟେ । ଏମାନଙ୍କ ମଧ୍ୟରୁ ହରିଜନ (Scheduled Castes) ଙ୍କ ସଂଖ୍ୟା ୧, ୯୯, ୧୫୧ ଯାହାକି ଶତକଡା ୧୭, ୧୧ ଭାଗ ଅଟେ । ଆଦିବାସୀ (Scheduled Tribes) ଙ୍କ ସଂଖ୍ୟା ୩, ୪୦, ୫୪୧ ଯାହାକି ଶତକଡା ୨୯, ୨୬ ଭାଗ ଅଟେ । ଏହିପରି ହରିଜନ ଓ ଆଦିବାସୀମାନଙ୍କ ସଂଖ୍ୟା ଶତକଡା ୪୬, ୩୭ ଭାଗ ଅଟେ । (୨୦)

### ହରିଜନ :

ହରିଜନମାନଙ୍କ ମଧ୍ୟରେ ଥିବା ଜାତିମାନଙ୍କ ମଧ୍ୟରେ ବେଲଦାର, ଚମାର, ଧୋବା, ଡମ୍ ବା ଡମ, ଗଣ୍ଡା, ଘାସି, ମାହାର ଆଦି ଅଗ୍ରଗଣ୍ୟ । ଏମାନଙ୍କ ମଧ୍ୟରେ ଡମ୍ ବା ଡମ ବା ଦୁରିଆ ଡମ ଜାତି ସଂଖ୍ୟା ଗରିଷ୍ଠ ଅଟନ୍ତି, ୧୯୬୧ ସାଲ ଜନଗଣନାନୁସାରେ ଏମାନଙ୍କ ସଂଖ୍ୟା ୧, ୫୬, ୬୮୭, ଯାହାକି, ସମୁଦାୟ ହରିଜନ ସଂଖ୍ୟାର ଶତକଡା ୭୮, ୬୩ ଭାଗ ଅଟେ । ଏମାନେ କଳାହାଣ୍ଡିର ସଦର, ଥୁଆମୁଳ ରାମପୁର, କେସିଙ୍ଗା, କେଗାଁ, ମଦନପୁର-ରାମପୁର, ନର୍ଲା, ଧର୍ମଗଡ଼, ଜୁନାଗଡ, ଜୟପାଟଣା, କୋକସରା, ଖରିଆର, ଓ ସିନାପାଲି ଥାନା ଅଞ୍ଚଳରେ ବହୁଳ ଭାବେ ବାସ କରନ୍ତି ।

ଏହି ଜିଲ୍ଲାର ଡମମାନେ ଅନ୍ୟ ଜିଲ୍ଲାର ଡମମାନଙ୍କ ପରି ଏତେ ଅନୁନ୍ନତ ନୁହନ୍ତି । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଏମାନେ ଏକ ବିଶେଷ ଅଧିକାର ପ୍ରାପ୍ତ ସ୍ଥାନାପନ୍ନ ଅଟନ୍ତି । କନ୍ଧମାନେ ଏମାନଙ୍କୁ ସେମାନଙ୍କ ପରାମର୍ଶଦାତା ରୂପେ ଗ୍ରହଣ କରନ୍ତି । ଏମାନେ ଧୂର୍ତ୍ତତା, ଚତୁରତା, ଓ କୌଶଳରେ ଅତିଦକ୍ଷ ବୋଲି କୁହାଯାଏ (୨୧) । ଡଙ୍ଗର୍ଲା ଅଞ୍ଚଳରେ ଏମାନେ ଋଣଦାତା, ଓ କ୍ଷୁଦ୍ର ବ୍ୟାପାରୀ ରୂପେ କାମ କରନ୍ତି । ଏମାନଙ୍କ ମଧ୍ୟରୁ ଅନେକ ପୋଲିସ ବିଭାଗ ଦ୍ୱାରା ଗ୍ରାମ୍ୟ-ଚୌକିଦାର ବା ଗଣ୍ଡା ରୂପେ

Digitized by srujanika@gmail.com

ନିଯୁକ୍ତି ପାଇ କାମ କରନ୍ତି । ଏମାନେ କୃଷି, ବ୍ୟବସାୟ ଓ ସରକାରୀ ଚାକିରୀରେ ବର୍ତ୍ତମାନ ଦକ୍ଷତାର ସହ କାର୍ଯ୍ୟ କରୁଥିବାର ଦେଖାଯାଉଛି । ୧୯୭୧ ସାଲ ଜନଗଣନାନୁଯାୟୀ ଏମାନଙ୍କ ସାକ୍ଷରତା ଶତକଡା ୯.୧୧ ଥିଲା । ବର୍ତ୍ତମାନ ସରକାରଙ୍କ ଉଦାର ନୀତି ଯୋଗୁଁ ଏମାନଙ୍କ ସାକ୍ଷରତା ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଲାଣି ।

## ଶିବଙ୍କ ଡମ୍ବରୁ-ବାଦକ 'ଡମ୍ବ' ଜାତି

ଭବାନୀପାଟଣା ନିକଟସ୍ଥ ଦେପୁର ଗ୍ରାମର ସତୁରୀ ବର୍ଷର ବୟସ ଶ୍ରୀ ଦନାଇ ହରିଜନଙ୍କ ଠାରୁ ଜଣାଯାଏ ଯେ ଡମ୍ବମାନେ ପ୍ରାଚୀନ କାଳରେ ଶିବ ମନ୍ଦିର ମାନଙ୍କରେ ଡମ୍ବରୁ ବାଦକ ରୂପେ କାର୍ଯ୍ୟ କରୁଥିଲେ । ଏମାନେ ଡମ୍ବରୁ [ ବାଦ୍ୟଯନ୍ତ୍ର ] ର ଉଭୟ ପାଖରେ ଚମଡା ଆଚ୍ଛାଦନ କାର୍ଯ୍ୟ କରୁଥିଲେ (୨୨) ଏଥିପାଇଁ ମୃତ ଗାଈ ଗୋରୁର ଚମଡା ଉତାରି କରୁଥିଲେ (tanning) । କିନ୍ତୁ ଏକଦା (ଶ୍ରୀ ଦନାଇ ହରିଜନଙ୍କ କଥିତ କିମ୍ବଦନ୍ତୀ ଅନୁଯାୟୀ) ଜନୈକ ଡମ୍ବରୁ ବାଦକ ମୃତ ଗାଈର ଚର୍ମ ଉତାରିବା ସମୟରେ ପ୍ରଲୋଭିତ ହୋଇ ଗୋମାଂସ ଭକ୍ଷଣ କରିବା ଶିଖିଲେ । ଏହି କାରଣରୁ ଡମ୍ବରୁ ବାଦକ କାର୍ଯ୍ୟରୁ ଏହି ଜାତିକୁ ଶିବ ମନ୍ଦିର ସେବା କାର୍ଯ୍ୟରୁ ନିବୃତ କରାଗଲା ଏବଂ ହିନ୍ଦୁ ସମାଜରେ ଗାଈକୁ ଗୋମାତା ରୂପେ ପୂଜା କରାଯାଉ ଥିବାରୁ ପଶୁହତ୍ୟା (ବିଶେଷତଃ ଗୋହତ୍ୟା) ମହାପାପ ବୋଲି ହିନ୍ଦୁ ଧର୍ମରେ ବ୍ୟବସ୍ଥା ଥିବାରୁ ତଥା ଶିବ ସ୍ୱୟଂ ପଶୁପତି (ଯାହାଙ୍କ ବାହାନ ଅର୍ଣ୍ଣିର ଗୋଜାତୀୟ ଷଣ୍ଢ ଅଟେ) ରୂପେ ପୂଜା ପାଉଥିବାରୁ ଏହି ଜାତି (ଡମ୍ବ) ହିନ୍ଦୁ ସମାଜରେ ଅସ୍ପୃଶ୍ୟ ହୋଇଗଲେ । ବର୍ତ୍ତମାନ, କିନ୍ତୁ, ଏହି ଜାତିର ଅଧିକାଂଶ ଲୋକ ଗୋମାଂସ ଭକ୍ଷଣରୁ କ୍ଷାନ୍ତ ହେଲେଣି । ଏହି ଜାତିର ମହାସଭା ମଧ୍ୟ ଗୋମାଂସ ଭକ୍ଷଣ ନିଷିଦ୍ଧ କରିଥିବାର ଜଣାଯାଏ । ଏଠାରେ ଉଲ୍ଲେଖ ଯୋଗ୍ୟ କି କନ୍ଧମାନେ ମଧ୍ୟ ଗୋମାଂସ ଭକ୍ଷଣ କରନ୍ତି । ଏମାନେ ପୋଡ ବଳି ଦେଇ ପୋଡ ମାଂସ ମଧ୍ୟ ଖାଉଥିବାରୁ ଗୋମାଂସ ଖାଇବା ଅଭ୍ୟାସ କରି ପାରିଥାନ୍ତି । ଅଥବା ଏମାନଙ୍କ ସହ ଦୃଢ଼ ସମ୍ପର୍କ ଥିବାରୁ ଡମ୍ବମାନେ ଏମାନଙ୍କ ଠାରୁ ବା ଏମାନେ ଡମ୍ବମାନଙ୍କ ଠାରୁ ଗୋମାଂସ ଭକ୍ଷଣ ଶିଖିଥାଇ ପାରିଥାନ୍ତି ।

Digitized by srujanika@gmail.com

ଏଠାରେ ବିଶେଷ ଉଲ୍ଲେଖ ଯୋଗ୍ୟ କି, ସମ୍ବିଧାନିକ ବ୍ୟବସ୍ଥାନୁଯାୟୀ ଅସ୍ପୃଶ୍ୟତା ଏକ ଦଣ୍ଡନୀୟ ଅପରାଧ ରୂପେ ଘୋଷିତ ହେବା ପରେ କଳାହାଣ୍ଡିରେ ମନ୍ଦିର ଆଦି ସର୍ବସାଧାରଣ ସ୍ଥାନରେ ଅସ୍ପୃଶ୍ୟତା ବହୁ ପରିମାଣରେ ଦୂରୀଭୂତ ହେଲଣି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି କି, ସ୍ୱୟଂ ତଥା କଥିତ ଅସ୍ପୃଶ୍ୟ ଜାତିମାନଙ୍କ ମଧ୍ୟରେ ଅସ୍ପୃଶ୍ୟତା ଅତ୍ୟଧିକ ପରିମାଣରେ ଦେଖାଯାଉଛି । ଏଠାରେ ସ୍ମରଣ କରାଯାଇପାରେ ଯେ ଏହି ଜାତୀୟ ସମସ୍ୟାର ସମାଧାନ ପାଇଁ ସ୍ୱାମୀ ବିବେକାନନ୍ଦ ଏହି ଜାତିମାନଙ୍କୁ ସଂସ୍କୃତ ଭାଷା ଶିକ୍ଷା କରିବା ପାଇଁ ଉପଦେଶ ଦେଇଥିଲେ । ବର୍ତ୍ତମାନ ଯୁଗନିର୍ମାଣ ଯୋଜନା, ମଥୁରା ଓ ଯୁଗାନ୍ତକାରୀ ଚେତନା ହରିଦ୍ୱାର, ସ୍ୱାମୀ ବିବେକାନନ୍ଦଙ୍କ ଉପଦେଶକୁ କାର୍ଯ୍ୟକାରୀ କରିବା ପାଇଁ ବିଶେଷ ପଦକ୍ଷେପ ନେଉଥିବାର ଜଣାଯାଏ ।

ଶ୍ରୀ ଦନାର ହରିଜନ ପୁନଶ୍ଚ କୁହନ୍ତି ଡମମାନେ ମୂଳତଃ ତନ୍ତୀଥିଲେ । କପଡା ବୁଣୁଥିଲେ । ଆଜି ମଧ୍ୟ 'ଡମ୍-କପଟା' (ଡମ ବା ତନ୍ତୀବୁଣା କପଡା) କଳାହାଣ୍ଡିରେ ପ୍ରସିଦ୍ଧ ସରକାର 'ଜନତା' କପଡା ଯୋଗାଇବା ପୂର୍ବରୁ କଳାହାଣ୍ଡିରେ ଗରୀବ ଲୋକେ 'ଡମ କପଡା' ବ୍ୟବହାର କରୁଥିଲେ । (୨୩)

## ହରିଜନମାନଙ୍କ ବିବାହ ପଦ୍ଧତି 'ଭିଆ ବର୍ତ୍ତନ'

ହରିଜନ ଜାତିରେ ଯୌତୁକ ପ୍ରଥା ବିପରୀତ ରୀତିରେ ଦେଖାଯାଏ । ଏହି ଜାତିରେ ଝିଅ ନେବାପାଇଁ ଯୋଇଁକୁ ଟ ୧୦୦୦/ ୫୦୦/ ୨୦୦ ହିସାବରେ ଶ୍ୱଶୁର ପାଖରେ ଦାଖଲ କରିବାକୁ ପଡେ । ଏହାକୁ 'ହରଜା' କୁହାଯାଏ । ଝିଅ ଦେଖିବାକୁ ଆସି ଯୋଇଁକୁ ଝିଅର ଗାଁ ଲୋକ ଜାତିଭାଇଙ୍କୁ ମଦ ଖୋଇବାକୁ ପଡେ । ଝିଅକୁ ତାର ବ୍ୟବହାର୍ଯ୍ୟ ଜିନିଷ ଯଥା :-ବାସନ, ଅଳଙ୍କାର, ଗୁଡାକ ଇତ୍ୟାଦି, ବାପା ମାଁଙ୍କୁ ଦେବାକୁ ପଡେ । ଯୋଇଁର 'ହରଜା' ଉପରେ ଏ ସବୁର ପରିମାଣ ନିର୍ଭର କରେ ।

## ବିବାହ କର୍ମ କର୍ମାଣି

ଗନ୍ସାମଙ୍ଗଳା (ମେଂଗୁଳି) କରିବା ପାଇଁ ହଳଦି-ଚିକନ ଜଡାତେଲ ଫୁଲ ଗୁଡାକ ଧରି ଗାଁ ଦେବୀ-ଦେବତାଙ୍କୁ ପୂଜା କରନ୍ତି । ଝିଅ ଯୋଇଁଙ୍କୁ ଗୋଡରେ ଧଳ ସୂତା ବାନ୍ଧନ୍ତି । ଏହାକୁ 'ଗୋରଝଲ' ବା ଗ୍ରହଶାନ୍ତି କୁହାଯାଏ । ଗୋଟିଏ କୁକୁଡା ବଳି (କୁକୁଡାର ପେଟଚିରି) ବର-କନ୍ୟାଙ୍କୁ ଗୋଡରେ ମଡାଇ ଦିଅନ୍ତି । କନ୍ୟାର ଚିନିଅଙ୍ଗୁଠି (କନିଷ୍ଠା-ଅଙ୍ଗୁଳି) ସହ ବରର ଚିନିଅଙ୍ଗୁଠି ଛନ୍ଦି ହସ୍ତଗଣ୍ଠି ପକାନ୍ତି । ତାପରେ ଛେଳି ମରା ହୋଇ

Digitized by srujanika@gmail.com

ମଦ ସହ ଭୋଜି ହୁଏ । ସିଂଗବାଜା ବଜାଇ ନାଚଗୀତ ହୁଏ । ଗୀତର ନମୂନା:—

ଲେ ଲେ ଅନା ଲେ ଲେ ଅନା
ହାଟେ ଘେନିଦେମି ଖଜା-ଚନା (ଘୋଷା)
ଆର୍ ସୁନିଯା ସୁବା (ସଭ୍ୟ) ଜନ
ମୁଂଜି ଖାଇ ଛୁଲ୍‌କା ବୁନ
ଲେ ଲେ ଅନା ଲେ ଲେ ଅନ୍ନା
ହାଏ ଘଗିଗଲ ମନ ।
(ଦେନାର ହରିଜନ, ଦେପୁର ଠାରୁ ସଂଗୃହୀତ)

କନ୍ଧମାନଙ୍କ ଭଳି ହରିଜନମାନେ ମଧ୍ୟ ଡାବ୍-ବାଜା ବଜାଇ ପୁଅ-ଝିଅମାନେ ଅଲଗା—ଗୀତ ଗାଇ ନାଚନ୍ତି ।

ଝିଅକୁ ବଳତ୍କାର ଟାଣି ଆଣିବାକୁ ' ଘିଚିଅଣା ' ଓ ଝିଅ ନିଜ ଇଚ୍ଛାରେ ବର ଘରକୁ ଏକୁଟିଆ ଗ୍ଚଲିଯିବାକୁ ' ପରସା ମୁଡ଼ି ' କୁହନ୍ତି । ଏପରି ବିବାହକୁ ମୁଖିଆ ' ନାଏକ ' କେବଳ ସ୍ୱୀକୃତି ଦିଏ, ବିବାହର କୌଣସି କର୍ମ କର୍ମାଣି ହୁଏ ନାହିଁ । ଏଥିପାଇଁ 'ନାଏକ' ଗ୍ନନ୍ଦା ନିଏ । ନାଏକ ସାଧାରଣ ବିବାହରେ ମଧ୍ୟ ବରକନ୍ୟା ପକ୍ଷଠାରୁ ଏକ ଟଙ୍କା ଲେଖାଏଁ ଗ୍ନନ୍ଦା ନିଏ । ବିଧବା ବିବାହ ମଧ୍ୟ ହରିଜନ ଜାତିମାନଙ୍କ ମଧ୍ୟରେ ପ୍ରଚଳିତ ଏଥିପାଇଁ ନାଏକ ପାଞ୍ଚଟଙ୍କା ଗ୍ନନ୍ଦା ନିଏ । ଏମାନଙ୍କ ମଧ୍ୟ ଛାଡପତ୍ର 'ଛାଡ଼ି' ନାମରେ ପ୍ରଚଳିତ । ଏଥିପାଇଁ ମଧ୍ୟ ନାଏକ ଗ୍ନନ୍ଦା ନିଏ । ସୂତକ ମୃତକ କାର୍ଯ୍ୟରେ ମଧ୍ୟ ନାଏକ ଗ୍ନନ୍ଦା ନିଏ । ଏପରି ଗ୍ନନ୍ଦା ନେବାକୁ 'ଘେନିଖିଆ' କୁହନ୍ତି ।

## ସୂତକ:

ସନ୍ତାନ ଜାତହେଲେ ମାଁକୁ ୨୧ ଦିନ ପର୍ଯ୍ୟନ୍ତ ଅଲଗା ରହିବାକୁ ପଡେ । ୨୧ ଦିନ ଏକୋଇଶା ହୁଏ । ସନ୍ତାନର ନାମ-କରଣ ସଂସ୍କାର କରଯାଏ । ଏଥିପାଇଁ ନାଏକକୁ ଗ୍ନନ୍ଦା ଦିଆଯାଏ ।

## ମୃତକ:

ହରିଜନମାନେ ମୃତକ କାର୍ଯ୍ୟ ଦଶାହ ପାଳନ କରି ପବିତ୍ର ହୁଅନ୍ତି । ଏଥିରେ ମଦ ବ୍ୟବହାର କରନ୍ତି ଏବଂ ନାଏକକୁ ଗ୍ନନ୍ଦା ଦିଅନ୍ତି । ଶବକୁ ଦାହ କରନ୍ତି ବା ପୋତିଦିଅନ୍ତି ।

Digitized by srujanika@gmail.com

## ପର୍ବ-ପର୍ବାଣି-ଦିଆଲ୍ ପର୍ବ

ହରିଜନ ଜାତି ସମୂହ ହିନ୍ଦୁଧର୍ମର ଅନ୍ୟାନ୍ୟ ଧର୍ମ ପରେ ବାର ମାସରେ ତେର ପର୍ବ, ଓଷା, ବ୍ରତାଦି ପାଳନ କରନ୍ତି । କିନ୍ତୁ ଏମାନଙ୍କ ପ୍ରଧାନ ପର୍ବ 'ଦିଆଲ୍‌ପର୍ବ' ବା ଦୀପାବଳି ପର୍ବ । ଏହି ଦିନ ଏମାନେ ଘରଦ୍ୱାର ଆସବାବ ପତ୍ର ସଫା ସୁନ୍ଦର କରନ୍ତି ଏବଂ ପିତୃ ପୁରୁଷଙ୍କୁ ଶ୍ରାଦ୍ଧ ଦିଅନ୍ତି । ଗୃହ ସ୍ୱାମୀ ସ୍ତ୍ରୀ ଏବଂ ବୋହୂ ଉପାସ ରହନ୍ତି । ରେଙ୍ଗାଲ ବା ସର୍ଗି ପତ୍ରରେ ତିନୋଟି ଖଲି ତିଆରି କରନ୍ତି । କୁସୁମ୍ଭ ଧାନର ଭାତ ଗନ୍ଧତି, ଝୁନ୍‌ଗା, (ଝୁଣ୍ଗା) ଓ ସାଗୁ ମିଶାଇ ତରକାରୀ କରନ୍ତି । ଘର ଭିତରେ ଆୟୁଷ ପୂର୍ଣ୍ଣହୋଇ ମୃତ୍ୟୁବରଣ କରିଥିବା ପିତୃ ପୁରୁଷ, 'ସମଧି ସିଆନ୍' (ସମଧୀ) 'ଝି–ବହେନ୍' (ଝିଅ ଭଉଣୀ) ଏପରି ତିନୋଟି ଖଲିରେ ଭାତ ଓ ତରକାରୀ ବାଢ଼ନ୍ତି । ଜଡାତେଲରେ ଦୀପ ଜାଳନ୍ତି । ମନ୍ଦ ଥିପାଇ (ଢ଼ାଳି) ମଶାନ ଡୁମା (ମୋଶାଣିଭୂତ) ପ୍ରେତାତ୍ମା ମାନଙ୍କୁ ପୂଜା କରନ୍ତି । ଉଚ୍‌କୀ ଦଉଡ଼ି ଦେଇ, ବାଘଧର ବୁଡ଼ିମର ହାଣିହୁଆ, ବିଷ ଆଦି ଖାଇ ଆତ୍ମହତ୍ୟା, ବିପଦରେ ପଡ଼ି ମୃତ୍ୟୁବରଣ କରିଥିବା ଅତୃପ୍ତ ଆତ୍ମାମାନେ ସ୍ୱର୍ଗକୁ ନଯାଇ ଅଧା ସ୍ୱର୍ଗରେ ଥିବା ଏମାନଙ୍କର ବିଶ୍ୱାସ । ଏଣୁ ଏପରି ପିତୃପୁରୁଷଙ୍କୁ ଛାତ ବା ଛାଏନ୍ ଉପରେ ଭାତ ଦେଇ ଶ୍ରାଦ୍ଧ କରନ୍ତି ।

## ଆଦିବାସୀ

କଳାହାଣ୍ଡିରେ ଆଦିବାସୀମାନଙ୍କ ମଧ୍ୟରେ ୪୬ ପ୍ରକାର ଜାତି ଦେଖା ଯାଆନ୍ତି । ଏମାନଙ୍କ ମଧ୍ୟରେ ବନ୍‌ଜାର, ଭତଡା ବା ଭଦ୍ରା, ଭୁଞ୍ଜିଆ, ବିଂଝାଲ, ଡାଲ, ଗଣ୍ଡ, କନ୍ଧ, ମିର୍ଦ୍ଧା, ମୁଣ୍ଡା, ପରଜା, ସଉର, ଏବଂ ଶବର । ଏମାନେ କଳାହାଣ୍ଡି ସଦର, ଖଡ଼ିଆଳ, କୋମନା, ଜୟପାଟଣା, ମଦନପୁର ରାମପୁର, ନୂଆପଡା ଓ ଜୁନାଗଡ ଥାନା ମାନଙ୍କରେ ବହୁଳ ଭାବରେ ବସବାସ କରନ୍ତି ।

## ଗଣ୍ଡଜାତିः

ଆଦିବାସୀମାନଙ୍କ ମଧ୍ୟରେ ଗଣ୍ଡମାନଙ୍କ ସଂଖ୍ୟା ସର୍ବାଧିକ । ୧୯୭୧ ସାଲ ଜନଗଣନାନୁସାରେ ଏମାନଙ୍କ ସଂଖ୍ୟା ୧, ୨୩, ୭୬୮ । ଏହା ମୋଟ ଆଦିବାସୀ ସଂଖ୍ୟାର ଶତକଡା ୩୬, ୩୫ ଅଟେ । ଏମାନେ କଳାହାଣ୍ଡି, ଧର୍ମଗଡ, ନୂଆପଡା ଓ ଜୟପାଟଣା ତହସିଲ ଅଞ୍ଚଳରେବହୁଳ ଭାବରେ ବସବାସ କରନ୍ତି । ଏମାନେ ମୂଳତଃ ଦ୍ରାବିଡୀୟ ଗୋଷ୍ଠୀ ଭାଷା କହୁଥିଲେ, ବର୍ତ୍ତମାନ, କିନ୍ତୁ, ପ୍ରାୟ ଓଡ଼ିଆ କୁହନ୍ତି (୨୪) । ୧୯୭୧ ସାଲ ଜନଗଣନାନୁସାରେ ଏ ମାନଙ୍କ ସଂଖ୍ୟା ଶତକଡା ୮-୧୧ ଥିଲ ।

Digitized by srujanika@gmail.com

ଗଣ୍ଡମାନେ ସାଧାରଣତଃ ହୃଷ୍ଟ ପୁଷ୍ଟ, ଚଉଡ଼ା ଛାତି ଏବଂ ଓସାରିଆ କାନ୍ଧ ବିଶିଷ୍ଟ ଅଟନ୍ତି । ଏମାନେ ଭୁରୁଭୁରିଆ ନିଶ ଓ ବୁଦୁବୁଦିକିଆ ଦାଢ଼ୀ ଧରିବାକୁ ପସନ୍ଦ କରନ୍ତି । ଏମାନେ ଉଚ୍ଚପର୍ବତ ଆରୋହଣ ଓ ଅଣ-ଓସାରିଆ ପାର୍ବତ୍ୟ ପଥରେ ଯାତାୟତ କରି ବୋଝ ବୋହିନେବାରେ ଦକ୍ଷ ଅଟନ୍ତି । (୧୫) କେତେକ ଗବେଷକ ଏମାନଙ୍କୁ ଗଣପତିଙ୍କ ଗଣ (ଗଣାନାଂ ତ୍ୱା ଗଣପତି ହବାମହେ–ଯଜୁର୍ବେଦ–୨୩/୧୯) ମାନଙ୍କର ବଂଶଧର ବୋଲି କୁହନ୍ତି (୨୬) । ଗଣ୍ଡମାନେ କନ୍ଧମାନଙ୍କ ଅପେକ୍ଷା ଅଧିକ ପରିଶ୍ରମୀ ଓ କର୍ମଠ ।

ଗଣ୍ଡମାନଙ୍କ ମଧ୍ୟରେ ଅନେକ ଉପଜାତି ଅଛନ୍ତି । ଗୋଟିଏ ଉପଜାତି ଅନ୍ୟ ଏକ ଉପ–ଜାତି ସହ ବୈବାହିକ ସଂପର୍କ ସ୍ଥାପନ କରନ୍ତି ନାହିଁ । ଏମାନଙ୍କ ମଧ୍ୟରେ ବାଲ୍ୟବିବାହ ଓ ବଡ଼ିଲ ଝିଅ ବିବାହ ଉଭୟ ପ୍ରଥା ପ୍ରଚଳିତ । ଏମାନେ ମାମୁଁ ଝିଅକୁ ମଧ୍ୟ ବିବାହ କରନ୍ତି । ଏମାନେ କନ୍ୟାସୁନା (ଟଙ୍କା 'ହରଜା' ଦେଇ ବୋହୂ କରିବା) ପ୍ରଥା ପ୍ରଚଳନ କରିଛନ୍ତି । ଯେଉଁମାନେ ଟଙ୍କାଦେଇ ପାରନ୍ତି ନାହିଁ ଘରଜୋଇଁ ହୁଅନ୍ତି, ନଚେତ୍ କିଛିବର୍ଷ ଶ୍ୱଶୁରଘରେ ବେଠି ଖଟନ୍ତି । କନ୍ୟାସୁନା ଗୃହଜ ଓ ଟଙ୍କା ରୂପରେ ମଧ୍ୟ ଦିଆଯାଏ । ଗଣ୍ଡମାନଙ୍କ ଧର୍ମକାର୍ଯ୍ୟ ଜାନୀ ମାନଙ୍କ ଗଣ୍ଡ ପୁରୋହିତ ସମାହିତ କରେ । ଏମାନଙ୍କ ଜୀବନରେ ବିବାହ ଏକ ବ୍ୟୟ ବହୁଳ କାର୍ଯ୍ୟ । ଏଥିପାଇଁ ଗଣ୍ଡମାନେ ସର୍ବସ୍ୱାନ୍ତ ହେବାର ଦେଖାଯାଏ (୨୭) ।

## କୁଣାବରୀ

ଝିଅ ମାନଙ୍କୁ ୬/୭ ବର୍ଷ ବୟସରେ କୁଣାବରୀ ବା ବ୍ରତ କରଯାଏ । ଝିଅମାନେ ଏହି-ଦିନ ଉପାସ ରହି ତେଲ-ହଳଦୀରେ ଗଣସି (ମଙ୍ଗଳି) ହୁଅନ୍ତି । ନୂଆ କପଡା ଓ ତାଳ ପତ୍ରରେ ମୁକୁଟ ପିନ୍ଧନ୍ତି । ଆମ୍ବ ପତ୍ରର 'କାକୁନ' (ସୂତା) ଝିଅର ଡାହାଣ ହାତରେ ବାନ୍ଧନ୍ତି । ପାଞ୍ଜି ଓ ଜାତକ ଦେଖି ଏଥିପାଇଁ ଲଗ୍ନ ଦେଖାଯାଏ । ଏଥିପାଇଁ ଗୋଟିଏ ଛୋଟ ବେଦିରେ କଳସି ସ୍ଥାପନ କରଯାଏ । ଅରୁଆ ଗୃହଳ ପୁଞ୍ଜି ପାରି କଡାତେଲରେ ଦୀପ ଜଳାଯାଏ । ଜଣେ ପୁରୁଷ ଗୀତଗା'ନ୍ତି–

ସାତ ହାଣ୍ଡି (ରୁଖା) ବଏ (ସୂତା) ବାନ୍ଧି
ଶୁଭ୍ରାନି ଯୋଗ ଦେଖ
ଦେବତା ବ୍ରାହ୍ମଣ ଛନ୍ତି କେତେ ଦେବ ଦେଖ
ଆଗେ ଥନ୍ତି ଦାଏମତୀ (ଦେବୀ)

Digitized by srujanika@gmail.com

ଝାରି (ଗଙ୍ଗା) ପାଣି ଧରି
ପଛେ ହଜି ସରସ୍ୱତୀ ଇନ୍ଦ୍ରକୁଳ ବହି
ଲେଖନ୍ତି ଯେ ଦାଏମତି ପିଠ଼ର (ପିଠାଉ) ଗୁଲର (ଗୁଲଲ)
ଆପନ୍ତି ଯେ ସରସ୍ୱତୀ କୁମାଳ (ପାଣି) କଳସ
ଗମ ଗମ ଗମ ଗମ ଗମ ହରିହେ
ଗାଇଲେ ମଙ୍ଗଳ ଗୀତ ଦେଲେ ହୁଳ ହୁଳିହେ
(ମାଁ ଭଉଣୀ ମାନେ ହୁଳ ହୁଳି ଦିଅନ୍ତି)
(ହରିଶ୍ଚନ୍ଦ୍ର ପୁଟା, ଦେପୁରଙ୍କ ଠାରୁ ସଂଗୃହିତ)

ମାଁ କିମ୍ବା ବୋହୁ ଝିଅକୁ କୋଳରେ ଧରନ୍ତି ଏବଂ ସ୍ତ୍ରୀ ଲୋକ ମାନେ ଗଣସି ସାରିଲେ ପୁରୁଷମାନେ ଗଣସନ୍ତି ।

## ବିବାହ

ବିବାହ ପୂର୍ବରୁ ବରଘର ବୁଢ଼ାମାନେ କନ୍ୟା ଦେଖିବାକୁ ଆସନ୍ତି । ସାଙ୍ଗରେ ଳିଆ ଓ ମଦ ଧରି ଆସନ୍ତି । କନ୍ୟାଘର ଲୋକଙ୍କ ସାଙ୍ଗେ ଳିଆ ଓ ମଦ ଖା'ନ୍ତି । କନ୍ୟାର ନାମ ବୁଝିଯାନ୍ତି ପାଞ୍ଜି ଦେଖିବା ପାଇଁ । ଏହା ଉଚ୍ଚ ଜାତି ମାନଙ୍କର ଜାତକ ଶୁଝା-ଇବାର ଅନୁକରଣ ପରି ମନେ ହୁଏ । ତା'ପରେ ବରଘର ପକ୍ଷର ବୁଢ଼ୀ ବୁଇଜଣ କନ୍ୟା ଓ ଘର ଦେଖିବାକୁ ଆସନ୍ତି । ପାଞ୍ଜି ସୁଝିବା ପରେ ବରକନ୍ୟା ଦେଖା ଦେଖି ହୁଅନ୍ତି ଏଥିପାଇଁ ବର କନ୍ୟା ଘରକୁ ଆସେ ।

ବର ଘରେ ପ୍ରଥମ ଦିନେ ଘର ଭିତରେ ଅରୁଆ ଗୁଣ୍ଡଲ ପୁଞ୍ଜି ପାରି ଜଡାତେଲରେ ଦୀପ ଜାଳି ପିତୃ ପୁରୁଷଙ୍କୁ ଶ୍ରାଦ୍ଧ ଦିଅନ୍ତି । କୁଟୁମ୍ବ ଲୋକଙ୍କୁ ପାଂଚ ମାଣ ଗୁଡ଼ଲ ଗନ୍ଧି ଭେଜି ଦିଅନ୍ତି ।

## ବୁଢୀ ମାନଙ୍କ ବନା ଗୋଥା

ବରର ଅଜା, ଆଇ, ପୂର୍ବ ପୁରୁଷ ମାନଙ୍କ ନାମ ଧରି ବରର କପାଳ, କାନ୍ଧ, ଆଣ୍ଠୁରେ ଜଡା ରଙ୍ଗ ଲଗିଥିବା କନା ଘସି ଗୀତ ଗା'ନ୍ତି–
ବନା ଦେଖି ଆସ ଅଜା ଆଇ ବନା ଦେଖି ଆସ
ତୋର ନାତିର ବନା ପରୁଆ ଖୋଜି (ପାଉ ପାଦ ଆଙ୍ଗୁଠି) ବନା
ତୋର ନାତି ଭିଆ ଲଗିଛେ ପରୁଆ ଖୋଜି ବନା ... ହେଗେ ... ଲେଗେ (ଇତ୍ୟାଦି)
(ଶ୍ରୀ ହରିଶ୍ଚନ୍ଦ୍ର ପୁଟା, ନେପୁରଙ୍କ ଠାରୁ ସଂଗୃହିତ)

Digitized by srujanika@gmail.com

ଦ୍ୱିତୀୟ ଦିନ ବରକୁ ଗଣସନ କରନ୍ତି ଏବଂ କୁଟୁମ୍ବ ଜନଙ୍କୁ ଦଶମାଣ ଗୁଉଳ ରାନ୍ଧି ଖେଳି ଦିଅନ୍ତି । ତୃତୀୟ ଦିନ କନ୍ୟାଘରକୁ ବରଯାତ୍ରୀ ଯା'ନ୍ତି । ସାଙ୍ଗରେ ଗୁଉଳ ଦଶମାଣ, ବୁକ ବାଦା ବା ଛେଳି) ପଟେ, ଡାଲି ଆଦି ଯଥାଶକ୍ତି ଧରି ଯା'ନ୍ତି । କନ୍ୟା ପାଇଁ ଶାଢ଼ୀ, ବ୍ଲାଉଜ, ସାୟା, ଚୁଡ଼ି, ଏବଂ ପାରିବା ଲୋକ ସୁନାର ଅଳଙ୍କାର ମଧ୍ୟ ଦିଅନ୍ତି ଲିଆ, ମଦ, ଆରିସାପିଠା (୨୫ ଗୋଟି) ମଧ୍ୟ ସାଙ୍ଗରେ ନିଅନ୍ତି । କନ୍ୟାଘରେ ପ୍ରଥମ ଦିନ ଶ୍ରାଦ୍ଧ କରି କୁଟୁମ୍ବ ଲୋକଙ୍କୁ ପାଞ୍ଚ ମାଣ ଗୁଉଳ ରାନ୍ଧି ଖେଳି ଦିଅନ୍ତି । କନ୍ୟାର କୁଣା ବରି ଶୈଶବରେ ହୋଇ ସାରିଥିବାରୁ ଆଉ ଗଣସନ ମଂଗୁଳି) କରାଯାଏ ନାହିଁ । କିନ୍ତୁ ଉଚ୍ଚ ଜାତି ଭଳି ପର୍ଣ୍ଣ (ପାଛିଆ) ରେ ଗୁଉଳ, ଫୁଲ, ତେଲ, ହଳଦି ଧରି ଗାଁ ଦେବୀ ଦେବତାଙ୍କ ପାଠକୁ ଶିଂଘବଜା ହୋଇ ମାଁ ଭଉଣୀମାନେ ଯା'ନ୍ତି ଏବଂ ଦେବସେବନ କରନ୍ତି । ଦ୍ୱିତୀୟ ଦିନ ଲଗ୍ନ ଅନୁସାରେ ବିବାହ ହୁଏ । ବର-କନ୍ୟାକୁ ଛାମୁଣ୍ଡି ଆଡକେ ବସାଇ ଲଗ୍ନିଆ (ଯିଏ ଲଗ୍ନ ଦେଖି ଠିକ କରିଥାଏ) ବର-କନ୍ୟାର ହାତ ଧରେଇଦିଏ । ସମସ୍ତେ ହରିବୋଲ ଡାକ ଦିଅନ୍ତି ଏବଂ ମାଁ ଭଉଣୀ ମାନେ ହୁଳହୁଳି ଦିଅନ୍ତି । ସମସ୍ତେ ଯଥାଶକ୍ତି ପଇସା ପତ୍ର ଦେଇ କନ୍ୟାକୁ ଜୋହାରନ୍ତି । ତାପରେ ମଦ ମାଂସ ସହ ଖେଳି ଭାତ ହୁଏ । ରାତିରେ ସିଙ୍ଗବଜା ବଜାଇ ପୁଅଝିଅ ମାନେ ଅଲଗା ଅଲଗା ନାଚନ୍ତି । ମୁରବୀ ଘରର ଲୋକେ ଗୀତ ଗାନ୍ତି—

ଏତେ ଗରୀ ବିଭ କରୁଅଛି ସୋଭ

ଏଥିରେ ନାହିଁନା ହେଳା ଯେ,

କୁଟୁମ୍ବ ଗଙ୍ଗାକୁ ସବୁ ଖୋଇ ବାକୁ

କରୁଅଛି ଏତେ ଖଞ୍ଜା ଯେ

ଲୁଣ ହଳଦି ତେଲ

ବୋକା (ବୋଦା) ମେଲଛା (ବୋଦ ଷଣ୍ଢ) ସପୁର ଗୁଉଳ ଯେ

ହୁଳ ହୁଳି ଦେଇ ଗୀତ ଗାଇ ଗାଇ

ହଉଛ କେଢେ ଶରଧା ଯେ ... –

(ଶ୍ରୀ ହରିଶ୍ଚନ୍ଦ୍ର ପୁଟା, ଦେପୁରଙ୍କ ଠାରୁ ସଂଗୃହିତ)

## ପର୍‌ଗନିଆ (ଟାନୁଆ)

ଗଣ୍ଡଜାତିରେ ବିବାହ, ସୂତକ, ମୃତକ ଆଦି କାର୍ଯ୍ୟରେ ଯିଏ ଦାନ ନିଏ ତାକୁ 'ପରଗନିଆ' କୁହନ୍ତି । ଏମାନେ ବଂଶାନୁକ୍ରମେ ଏହି କାର୍ଯ୍ୟ କରନ୍ତି । ଗୋଟିଏ ଗୋଟିଏ ପ୍ରଟେ ପାଇଁ ଜଣେ ଲେଖାଏଁ ଥିବାରୁ ଏମାନଙ୍କୁ ପରଗଣିଆ ବା ପର୍‌ଗନିଆ କୁହାଯାଏ । ବିବାହ

Digitized by srujanika@gmail.com

ସମୟରେ ପରଗନିଆ କରଳ ପଗଡ଼ି ବା ଗାମୁଛା ଦାନ ନିଏ । ମୃତକ ସମୟରେ ଗାଈ, ଛେଳି, ମେଣ୍ଢା ଦାନ ଓ ଦକ୍ଷିଣା ବାବଦକୁ ଟଙ୍କା ଗ୍ରହଣ ତଥା ମୃତ ବ୍ୟକ୍ତିର ବ୍ୟବହାର୍ଯ୍ୟ ଜିନିଷ ସବୁ ଦାନ ନିଏ । ପରଗନିଆ 'ବିଙ୍କିବାଜା' ନାମକ ଏକ ପ୍ରକାର ସାରଙ୍ଗୀ ବଜାଇ ପୁରାଣର ସୃଷ୍ଟି କଥା ଗୀତାକାରରେ ଗାଏ । ଏହାକୁ ବେଦ ପଢ଼ିବା କୁହନ୍ତି । (୨୮)

## ଗଣ୍ଡ ମାନଙ୍କ ଦେବୀ ଦେବତା

ଗଣ୍ଡମାନଙ୍କ ପ୍ରଧାନ ଦେବତାର ନାମ 'ନିଗକାର' ଦେବତା । ପରଗନିଆର ବିଙ୍କିବାଜା ଭିତରେ ଏହି ନିଗକାର ଦେବତା ଅଛନ୍ତି ବୋଲି ଗଣ୍ଡ ମାନଙ୍କ ବିଶ୍ୱାସ । ପରଗନିଆ ଦାନ ନେବା ସମୟରେ ଏହି ଦେବତାଙ୍କୁ ଗୁଆଳ, ଧୂପ, ସଳିତାରେ ପୂଜାକରେ ଏତଦ୍ ବ୍ୟତୀତ ଏମାନେ ବୁଢ଼ାଦେଓ [ଭୈରବ/ବଳଦେବ] ଜଗାଦେଓ [ଜଗନ୍ନାଥ] ଲିଙ୍ଗାଦେଓ [ଶିବ] ନାମକ ତିନି ଦେବତାଙ୍କୁ ପୂଜା କରନ୍ତ । ଏହି ଦେବତାମାନେ ପ୍ରଧାନ ପୀଠ ଖଡ଼ିଅଳରେ ଥିବା ଏକ ପ୍ରାଚୀନ ମନ୍ଦିରରେ ପୂଜା ପାଉଛନ୍ତି । ଏତଦ୍ ବ୍ୟତୀତ ଏମାନେ ଅନ୍ୟାନ୍ୟ ହିନ୍ଦୁ ଦେବାଦେବୀଙ୍କୁ ମଧ୍ୟ ପୂଜା କରନ୍ତି ।

## ପର୍ବ ପର୍ବାଣୀ

କଳାହାଣ୍ଡିରେ ଗଣ୍ଡ ମାନେ ସମସ୍ତ ହିନ୍ଦୁ ପର୍ବ ପର୍ବାଣି ପାଳନ କରିବା ସଙ୍ଗେ ସଙ୍ଗେ କନ୍ଧମାନଙ୍କ ପରି ଚଇତ୍ର ପର୍ବ, ପୁଷ୍ ପର୍ବ, ଓ ନବାନ୍ନ ବା ନୂଆଖାଇ ପର୍ବ ପାଳନ କରନ୍ତି । ଏ ସମ୍ବନ୍ଧରେ, ପର୍ବ ପର୍ବାଣି ଓ ନୃତ୍ୟଗୀତ ପରିଚ୍ଛେଦରେ ବିଷଦ ଭାବେ ଆଲୋଚନା କରଯାଇଛି ।

## କନ୍ଧ

ଜନ ସଂଖ୍ୟାନୁଯାୟୀ,କଳାହାଣ୍ଡିର ଦ୍ୱିତୀୟ ବୃହତ୍ତମ ଜାତି ହେଉଛନ୍ତି କନ୍ଧ ଜାତି । ୧୯୭୧ ଜନଗଣନାନୁସାରେ ଏମାନଙ୍କ ଜନ ସଂଖ୍ୟା ୧, ୧୪,୬୪୪ । ଏହା ସମଗ୍ର ଆଦିବାସୀ ଜନ ସଂଖ୍ୟାର ଶତକଡ ୩୩.୭୬ । ଏମାନେ ଜିଲ୍ଲାର ସର୍ବତ୍ର ବସବାସ କଲେ ମଧ୍ୟ ସଦର, ଥୁଆମୁଳରାମପୁର, ଲାଞ୍ଜିଗଡ଼, ଧର୍ମଗଡ ଓ ଜୟପାଟଣା ତହସିଲରେ ସଘନ ଭାବରେ ବସବାସ କରନ୍ତି । ଏମାନେ ଅନ୍ୟାନ୍ୟ ଜାତି ସହ ସମତଳ ଅଞ୍ଚଳ ଓ ପାର୍ବତ୍ୟ ଅଞ୍ଚଳରେ ବସବାସ କରନ୍ତି । ଡମ [ହରିଜନ] ମାନେ ଏମାନଙ୍କ ପରାମର୍ଶ ଦାତା [ମନ୍ତ୍ରୀ] ତଥା ଋଣଦାତା ରୂପରେ ପରିଚିତ ।

Digitized by srujanika@gmail.com

କନ୍ଧ ମାନଙ୍କ ରଙ୍ଗ ସାଧାରଣତଃ କଳା, କିନ୍ତୁ ଏମାନଙ୍କ ମଧ୍ୟରେ ସାବର୍ଣ୍ଣ ରଙ୍ଗର କନ୍ଧ ମଧ୍ୟ ଦେଖାଯାନ୍ତି । ଏମାନଙ୍କ ମୋଟା ମୋଟି ଉଚ୍ଚତ ୫' ୪" । ଏମାନେ ପତଳା ହେଲେ ମଧ୍ୟ ସୁଦୃଢ଼ ମାଂସପେଶୀ ସଂପନ୍ନ ଅଟନ୍ତି । ଏମାନଙ୍କ ଛୋଟ କିନ୍ତୁ ଓସାରିଆ ନାକ ଥାଏ । ଏମାନଙ୍କ ଗାଲର ହାଡ ସବୁ ସୁଉଚ୍ଚ ଅଟେ । ଏମାନେ ମଙ୍ଗୋଲିୟ ଉପଜାତି ଗୋଷ୍ଠିର ଥିବା ଅନୁମାନ କରଯାଏ । କେତେକ ଗବେଷକଙ୍କ ମତରେ ଏମାନେ ହିମାଳୟ ପାର୍ବତ୍ୟ ଅଞ୍ଚଳର ଆଦିବାସୀଙ୍କ ବଂଶଧର ତଥା ପୌରଣିକ ସ୍କନ୍ଧ (କାର୍ତ୍ତିକେୟ) ଙ୍କ ଅନୁଚର ସାମରିକ ଗୋଷ୍ଠି । ଏଣୁ ସ୍କନ୍ଧର ଅପଭ୍ରଂଶ କନ୍ଧ ହୋଇ ଥିବାର ଅନୁମାନ କରଯାଏ (29) ।

କଳାହାଣ୍ଡିରେ କନ୍ଧ ମାନଙ୍କ ସ୍ଥାନ ସର୍ବୋଚ୍ଚ ଅଟେ । ପ୍ରାଚୀନ ପରଂପରନୁସାରେ, କଳାହାଣ୍ଡିର ରାଜଧାନୀ ଭବାନୀପାଟଣା ନିକଟସ୍ଥ ଜୁଗସାଏପାଟଣାରେ କନ୍ଧ କୋଳେରେ ସେ କଳାହାଣ୍ଡିର ରାଜାମାନେ ରାଜସିଂହାସନ ହେଉଥିଲେ । ସେମାନେ କନ୍ଧ କନ୍ୟା ବିବାହ କରୁଥିଲେ କିନ୍ତୁ, ଦାମ୍ପତ୍ୟ ଜୀବନ ଯାପନ ନ କରି, କେବଳ ରାଣୀର ସମ୍ମାନ ପାଉଥିଲେ (ଜମିବାଡ଼ି ଅର୍ଦ୍ଧ ଖଣ୍ଡା ଭୋଗ କରୁଥିଲେ । ଏଥିରୁ କନ୍ଧ ମାନଙ୍କ ପ୍ରାଧାନ୍ୟ ସ୍ପଷ୍ଟ ଅନୁମେୟ (30) ।

କନ୍ଧ ଜାତି ସାଧାରଣତଃ ତିନି ଭାଗରେ ବିଭକ୍ତ । ଯଥା– କୁଟିଆ, ଡଙ୍ଗରିଆ ଓ ଦେଶୀଆ । କୁଟିଆ କନ୍ଧ ମାନଙ୍କ ଘର ଭିତରେ ସାଧାରଣତଃ ଖାଲୁଆ ଥାଏ । ଡଙ୍ଗରିଆ କନ୍ଧ ମାନଙ୍କୁ, ମେରିଆ ବା ମେଳିଆ କନ୍ଧ ବୋଲି ମଧ୍ୟ କୁହାଯାଏ । ଏମାନେ ମେରିଆ ବା ନରବଳୀ ଦେଉଥିଲେ ଏବଂ ପୂର୍ବୋକ୍ତ ଅନୁଯାୟୀ ଏମାନେ କନ୍ଧ ମେଳିରେ ବିଶେଷ ଭୂମିକା ସଂପାଦନ କରିଥିବାର କୁହାଯାଏ । ଏମାନେ ସାଧାରଣତଃ ପାହାଡ ଉପରେ ରହନ୍ତି । ଦେଶୀଆ କନ୍ଧ ମାନେ ଅନ୍ୟ ଜାତି ମାନଙ୍କ ସହ ସମତଳ ଅଞ୍ଚଳରେ ବସବାସ କରନ୍ତି । କୁଟିଆ ଓ ଡଙ୍ଗରିଆ କନ୍ଧ ମାନଙ୍କ ପ୍ରଧାନ ଜୀବିକା ପୋଡୁଚାଷ । ଦେଶୀଆ କନ୍ଧମାନେ ସମତଳ ଅଞ୍ଚଳରେ ଅନ୍ୟ ମାନଙ୍କ ପରି କ୍ଷେତରେ ଚାଷକରନ୍ତି ।

ଭୟଙ୍କର ଜଙ୍ଗଲ ମଧ୍ୟରେ ଗିରିଝରର ଅନତି ଦୂରରେ ପାଞ୍ଚ ଦଶଟି ପରିବାରକୁ ନେଇ ଗୋଟିଏ ଗୋଟିଏ ଗ୍ରାମ । କାଠ, ବାଉଁଶ ଓ ନଡାରେ ନିର୍ମିତ କୁଡ଼ିଆ ଘର ପରିଷ୍କାର ପରିଛନ୍ନ ଥିବା ଘର ଗୁଡ଼ିକରେ ଆଗ ଓ ପଛ ପଟେ ଗୋଟିଏ ଗୋଟିଏ ଟାଟି କବାଟ ଥାଏ । ଗାଁ ଦାଣ୍ଡର ମଧ୍ୟ ଭାଗରେ ଧରଣୀ ଦେବୀ କନ୍ଧ ମାନଙ୍କ ଇଷ୍ଟଦେବୀ । ଗାଁ ମୁଣ୍ଡରେ ଧାଙ୍ଗଡାଘର (Bachelors' house) । ପ୍ରାୟ ପ୍ରତ୍ୟେକ କନ୍ଧ ଗାଁ ଏଭ

Digitized by srujanika@gmail.com

ଛାଞ୍ଚର (31) । ପୁରୁଷମାନେ, ସାଧାରଣତଃ, ଖଣ୍ଡିଏ କୌପୁନୀ ବ୍ୟତିତ ଅନ୍ୟ କିଛି ପିନ୍ଧନ୍ତି ନାହିଁ । ସ୍ତ୍ରୀ ଲୋକମାନେ ଅଣ୍ଟାରେ ଖଣ୍ଡିଏ କନା ବେଢ଼େଇ ହୁଅନ୍ତି । ହାତରେ ବଳା, ଗୋଡରେ ଖଡୁ ବା ପଏଁରୀ, ହାତ ଓ ଗୋଡର ଅଙ୍ଗୁଠି ମାନଙ୍କରେ ମୁଦି, କାନରେ ଗୋଛା ଗୋଛା ରିଙ୍ଗ୍ ସ୍ତ୍ରୀ ଲୋକ ମାନଙ୍କର ଅଳଙ୍କାର । ସ୍ତ୍ରୀ ଲୋକ ମୁହଁରେ ଚିତା କୁଟେଇବା ଏକ ପାରମ୍ପାରିକ ରୀତି । (32)

## ଖାଦ୍ୟ

ଏମାନଙ୍କ ପ୍ରଧାନ ଖାଦ୍ୟ ଭାତ୍ କନ୍ଦା, ଲେରକା କନ୍ଦା, କନ୍ଦିଆ କନ୍ଦା, ପ୍ରଭୃତି କନ୍ଦମୂଳ ! କେନ୍ଦୁ, ଚାହାଁର, ମହୁଲ, ବେଲ ଆମ୍ବ, ପଣସ, ପ୍ରଭୃତି ଫଳ ଓ କରଡ଼ି (ବାଉଁଶ ଗଜା) ଏବଂ ବାଉଁଶ ଛତି ଆଦି । ଏମାନଙ୍କ ଅନ୍ୟଏକ ମୁଖ୍ୟ ଖାଦ୍ୟ ହେଉଛି, । ଆମ୍ବ ଚକୁଆ/ପ୍ରକୃତି ଦତ୍ତ ଖାଦ୍ୟ ବ୍ୟତୀତ ଜଙ୍ଗଲ କାଟି ପୋଡୁ ଚାଷରୁ ମାଣ୍ଡିଆ, କାଙ୍ଗ୍, କୋଷଲ କାନ୍ଦୁଲ, ମୁଗ, ବିରି, ଝୁଡୁଙ୍ଗ, କୋଳଥ, ସୋରିଷ, ଜଡ଼ା, ମକା, ବାଜରା, ପ୍ରଭୃତି ଚାଷକର । ଡାଲି ଜାତୀୟ ଓ ତୈଳବୀଜ ଏମାନେ ବ୍ୟବହାର କରନ୍ତି ।

ସୂତକ– ପୁଅ ହେଉ ବା ଝିଅ ହେଉ, ସନ୍ତାନ ଜନ୍ମର ପାଞ୍ଚ/ସାତ ଦିନ ପରେ ପ୍ରସୂତି ସୂଚି କର୍ମ କରାଯାଏ । ସେହି ଦିନ ଗୃହ ସ୍ୱାମୀ ଶୋଷେଇ ଘରେ ସ୍ଥାପିତ ଇଷ୍ଟଦେବତାଙ୍କ ପାଖରେ ଗୋଟିଏ କୁକୁଡା ବଳି ଦିଅନ୍ତି । (33) ମାସକ ପରେ ସନ୍ତାନର ମସ୍ତକ ମୁଣ୍ଡନ କରି ପିତା ମାତା ଗୋଟିଏ ଭୋଜିର ଆୟୋଜନ କରନ୍ତି । ଗୋଟିଏ ପାଣି ପୂର୍ଣ୍ଣ ମାଟି ହାଣ୍ଡିକୁ ସମସ୍ତଙ୍କ ଉପସ୍ଥିତିରେ ନବଜାତ ଶିଶୁକୁ ଛୁଆଁଇ ଦେବାପରେ ଖାଦ୍ୟ ସହିତ ମଦ ଓ ମାଂସ ପରିବେଷଣ କରାଯାଏ । ଭୋଜି ଶେଷ ହେଲେ ସନ୍ତାନର ଜାତ କର୍ମ ଶେଷ ହୁଏ ।

## ବିବାହ ପ୍ରଥା

କନ୍ଧ ମାନଙ୍କର ବିବାହ ପ୍ରଥା ଆହୁରି ବୈଚିତ୍ର ପୂର୍ଣ୍ଣ । ଏହି ବିବାହରେ କନ୍ୟା ପିତାକୁ ଯୌତୁକ ଚିନ୍ତାରେ ବ୍ୟଥିତ ହେବାକୁ ପଡେନାହିଁ । ଦେବୀ ଦେବତାଙ୍କ ଦୂତ ରୂପେ ସମ୍ମାନ ପାଉଥିବା ଦିଶାରୀର ମଧ୍ୟସ୍ଥତାରେ କନ୍ୟା ପିତାର ସ୍ୱୀକୃତି ଜାଣିବା ପରେ ଦଶ ପନ୍ଦର ଜଣ ବ୍ୟକ୍ତି କନ୍ୟା ଘରେ ପହଞ୍ଚି ନିର୍ବନ୍ଧ କରନ୍ତି । ଏଥି ନିମନ୍ତେ ଦୁଇ ମାଠିଆ ଓ ଦୁଇ କୁମ୍ଭି (ଏକମାପ) ମଦ ବର ପିତାଙ୍କୁ ଦେବାକୁ ପଡେ । ବରପକ୍ଷ

Digitized by srujanika@gmail.com

ଓ କନ୍ୟା ପକ୍ଷର ଉପସ୍ଥିତିରେ ନବବଧୂକୁ ମଦ୍ୟପାନ କରାଇ ବରର ନାମ କନ୍ୟାକୁ ଦିଆଯାଏ । ସେହି ଦିନଠାରୁ କନ୍ୟାର ନାମ ବରର ନାମ ହୋଇଯାଏ । କନ୍ୟା ପକ୍ଷ ଓ ବର ପକ୍ଷର ଆର୍ଥିକ ବଳକୁ ଆଖି ଆଗରେ ରଖି ବିବାହ କିପରି ହେବ ସ୍ଥିର କରାଯାଏ । ଉଭୟ ପକ୍ଷର ଆର୍ଥିକ ଅବସ୍ଥା ସଚ୍ଛଳ ନଥିଲେ ବର ପକ୍ଷକୁ କମ୍ ଧନ ଦେବାକୁ ପଡେ । ଦେଇ ନ ପାରିଲେ ବରକୁ ଶ୍ୱଶୁର ଘରେ ରହି ଟଙ୍କା ସୁଝିବା ପର୍ଯ୍ୟନ୍ତ ରହି କାମ କରି-ବାକୁ ପଡେ । (34) ପଶୁ ଧନ ହିଁ ସାଧାରଣତଃ ଧନ ରୂପେ ବିବେଚିତ ହୁଏ । ଏପରି ବିବାହରେ ବରପକ୍ଷରୁ ବରଯାତ୍ରୀ ଆସେ ନାହିଁ । କନ୍ୟାପକ୍ଷ କନ୍ୟାକୁ ନେଇ ବରଘରେ ଛାଡ଼ି ଦେଇ ଆସନ୍ତି । କିନ୍ତୁ ଉଭୟ ପକ୍ଷର ଆର୍ଥିକ ଅବସ୍ଥା ଭଲଥିଲେ ବରପକ୍ଷକୁ ଅଧିକ ଧନ ଦେବାକୁ ପଡେ । ପଶୁଧନ ବ୍ୟତୀତ ଏପରି ଧନ ଟଙ୍କା (୧୦୦ରୁ୧୦୦୦ ପର୍ଯ୍ୟନ୍ତ) ଓ ଅଳଙ୍କାର ଆକାରରେ ମଧ୍ୟ ଦିଆଯାଏ । ଏହାକୁ ଓଲଟା ଧନ କୁହାଯାଏ । ଏପରି ବିବାହରେ କନ୍ୟା ଘରକୁ ବରଯାତ୍ରୀ ଆସନ୍ତି । ଗ୍ରାମ୍ୟ ପୁରୋହିତ ଜାନୀ ବିବାହ କାର୍ଯ୍ୟ ସଂପାଦନ କରିବା ପାଇଁ ନିଯୁକ୍ତ ହୁଏ । ଅନେକ ସ୍ଥାନରେ ବିନା ପୁରୋହିତରେ ମଧ୍ୟ ବିବାହ କାର୍ଯ୍ୟ ସଂପାଦନ କରିବା ପାଇଁ ବିଧି ମଧ୍ୟ ପ୍ରଚଳିତ ଅଛି । କନ୍ୟାଘରେ ବର ଦିନେ ଦୁଇଦିନ ରହେ । ରାତିରେ ଭୋଜି ଓ ଧାଙ୍ଗଡା ଧାଙ୍ଗଡ଼ି ନାଚ ହୁଏ । ସମ-ବୟସ୍କା ଯୁବତୀ ମାନେ ନିଜର ଜଣେ ସଙ୍ଗିନିକୁ ସବୁଦିନ ପାଇଁ ସେମାନଙ୍କ ପାଖରୁ ନେଇ ଯାଉଥିବାରୁ ବରକୁ ଅନେକ ଥଟ୍ଟା ପରିହାସ କରନ୍ତି । ଏ ସବୁ ବର ପକ୍ଷକୁ ସହି ବାକୁ ପଡେ । ଓଲଟା ଧନର ବିବାହ ପ୍ରଥାନୁଯାୟୀ କନ୍ୟା ପକ୍ଷକୁ ବର ଓ କନ୍ୟାକୁ କାନ୍ଧରେ ବସାଇ ବରଘରେ ଛାଡ଼ି ଆସିବାକୁ ପଡ଼େ । ଏହି ସମୟରେ କନ୍ୟା ପକ୍ଷର ଗ୍ରାମବାସୀ ମାନେ ବର ସହିତ ଯୁଦ୍ଧ କରି କନ୍ୟାକୁ ଫେରାଇ ଆଣିବାର ଅଭିନୟ କରନ୍ତି । କିନ୍ତୁ, ଏଥିରେ କୃତକାର୍ଯ୍ୟ ନହୋଇ ପାରିବାର ଛଳନା କରି କନ୍ୟାକୁ ଛାଡ଼ି ଦିଅନ୍ତି । (35).

## ମୃତକ ପ୍ରଥା

କନ୍ଧ ସମାଜରେ କନ୍ଧମାନେ ଜଣକର ମୃତ୍ୟୁ ହେଲେ ସମସ୍ତ ଗ୍ରାମବାସୀ କାଠ ବୋହି ଆଣି ଶବଦାହ କରନ୍ତି । ଛୋଟ ଛୋଟ ଶିଶୁ, ଅନ୍ତଃସତ୍ତ୍ୱା ସ୍ତ୍ରୀ ଲୋକ, ଏବଂ ବସନ୍ତ ରୋଗରେ ମୃତ ବ୍ୟକ୍ତିଙ୍କ ଶବ ଦାହନ କରି ମାଟିରେ ପୋତି ଦିଅନ୍ତି । ମୃତ୍ୟୁର ତିନିଦିନ କିମ୍ବା ସାତ ଦିନରେ ଶୁଦ୍ଧି କ୍ରିୟା କରାଯାଏ । ଘରର ସମସ୍ତ କପଡା, ଖଟ କୁଲା, (ପାଛିଆ), ଟୁପା (ଟୋକେଇ , ମାଟିହାଣ୍ଡି ଆଦି ସାମଗ୍ରୀ ଧୋଇ ସଫା କରାଯାଏ । ଏହିଦିନ ଘରର ସମସ୍ତେ 'ଆମ୍ବପାଣିଆ ଗାଧୁଆ' କାର୍ଯ୍ୟ ସମ୍ପାଦନ କରନ୍ତି । ଏଥିରେ ଜାନୀ ପୌରହିତ୍ୟ କରେ । ଏଥିପାଇଁ ମୃତ ବ୍ୟକ୍ତିର ପରିବାର ଲୋକେ କନ୍ଧ ସମାଜକୁ

Digitized by srujanika@gmail.com

ଗୋଟିଏ ଭୋଜିରେ ଅପ୍ୟାୟିତ କରନ୍ତି । ତାଙ୍କ ପରେ ଯେ କୌଣସି ମାସରେ କନ୍ଧ ସମାଜରେ ମୃତ ବ୍ୟକ୍ତିର ବାର୍ଷିକିଆ ପାଳନ କରଯାଏ । ଏହାକୁ 'ଦୋଶା' କୁହନ୍ତି । ଏହି ଦିନ ମଧ୍ୟ ସମାଜକୁ ଭୋଜି ଦିଆଯାଏ । (36) ଏଥିରେ ମଦ ମାଂସ ବ୍ୟବହାର କରଯାଏ ।

## କନ୍ଧ ମାନଙ୍କ ଦେବୀ ଦେବତା

କନ୍ଧମାନେ ଧରଣୀ ଦେବତା, ଗ୍ରାମ ଦେବତୀ, ଇଷ୍ଟଦେବତା, ଭୀମା ଦେବତା, ଏବଂ ଅନ୍ୟାନ୍ୟ ଦେବୀ ଯଥା— ଖଣ୍ଡ ଆଲ, ଦାତ ଭଏନ (ଭଉଣୀ), କାନ୍ଦୁଲବୋଯା, ଜିନା, ଏବଂ ଡୁମା ପୂଜାକରନ୍ତି । ଏମାନଙ୍କ ମଧ୍ୟରେ ଧରଣୀ ଦେବତା ପ୍ରଧାନ ଅଟନ୍ତି । ଏଠାରେ ଉଲ୍ଲେଖ ଯୋଗ୍ୟ କି, ପ୍ରତ୍ୟେକ କନ୍ଧ ଗ୍ରାମରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଗଛମୂଳରେ ତିନୋଟି ପଥର ବା କାଠ ଏକା ଧାଡ଼ିରେ ପାଖ ପାଖି ହୋଇ ଭୂମିରେ ଠିଆ କରି ପୋତା ଯାଇଥାଏ । ସେମାନଙ୍କ ଉପରେ ଅଧ ଖଣ୍ଡିଏ ପଥର ବା କାଠ ଛାତ ଭଳି ଥୁଆ ଯାଇ ଥାଏ । ଏହି ତିନୋଟି ପଥର ବା କାଠ ତିନି ଦେବତାଙ୍କୁ ବୁଝାଏ । ମଝିଦେବତାର ନାମ ତନାପେନୁ (ଧରଣୀ ଦେବୀ), ବାମକୁ ମୃତେବୀ ପେନୁ (ସୋନ ଭଇ), ଡାହାଣକୁ ଜାକେରି ପେନୁ, (ବଡଭଇ କେତେକଙ୍କ ମତରେ ସ୍ୱାମୀ) । ଗବେଷକଙ୍କ ମତାନୁଯାୟୀ କାଳ କ୍ରମେ ଏହି ତିନି ଦେବତା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ରୂପେ ପୁରୀ ଶ୍ରୀ କ୍ଷେତ୍ରରେ ପୂଜା ପାଇ ଆସୁଛନ୍ତି । ଉପର କାଠ ବା ପଥରଟି ସୁଦର୍ଶନ ରୂପେ ପୂଜା ପାଉଛନ୍ତି । (37)

## ପର୍ବ ପର୍ବାଣୀ ଓ ନୃତ୍ୟ ଗୀତ

କନ୍ଧ, ଗଣ୍ଡ ଆଦି ଆଦିବାସୀମାନେ ତଥା ହରିଜନେ ଓ ଅଣ ଆଦିବାସୀ ମାନେ, କଳାହାଣ୍ଡିରେ ସାଧାରଣତଃ ପୁଷ୍ (ପୌଷ ପର୍ବ, ଚଇତ୍ରା (ଚୈତ୍ର) ପର୍ବ, ଗଣା ପର୍ବ, ନୂଆଖାଇ (ନବାନ୍ନ), ଦଶହରା ପର୍ବ ଓ ହରିଜନ ମାନେ ବିଶେଷତଃ ଛେଆଳି ପର୍ବ ଯାହାକୁ ଅନ୍ୟ ମାନେ ଦିପାବଳୀ (ସର୍ବଭାରତୀୟ) ପର୍ବ ରୂପେ ପାଳନ କରନ୍ତି । କେବଳ ବ୍ରାହ୍ମଣ, କରଣ ଆଦି ଉଚ୍ଚବର୍ଣ୍ଣକୁ ଛାଡ଼ିଦେଲେ ଅନ୍ୟମାନେ ସମସ୍ତ ପର୍ବ ପର୍ବାଣୀରେ ମଦ ମାଂସର ଅବାଧ ପ୍ରୟୋଗ କରନ୍ତି । ଘୁମୁର, ଶିଂଘବାଜା, ଢ଼ାବବାଜା ଆଦି ବଜାଇ ଯୁବକ ଓ ଯୁବତୀ ମାନେ ଅଲଗା ଅଲଗା ନୃତ୍ୟ କରନ୍ତି ଓ ଗୀତ ଗାନ୍ତି ।

Digitized by srujanika@gmail.com

## ଡାବ୍ ନୃତ୍ୟ

କନ୍ଧ ଧାଙ୍ଗଡା (ଯୁବକ) ଓ ଧାଙ୍ଗଡୀ (ଯୁବତୀ) ମାନେ ଗୀତ ଗାଇ ନାଚନ୍ତି । ଯୁବକ-ମାନେ ଅଲଗା ଧାଡ଼ି ଏବଂ ଯୁବତୀ ମାନେ ଅଲଗା ଧାଡ଼ିରେ ନାଚନ୍ତି । ଏହି ନୃତ୍ୟରେ ସାଧାରଣତଃ 'ଡ଼ାବ' ନାମକ ବାଦ୍ୟ ଯନ୍ତ୍ର ଓ ଗମତାଳି ବ୍ୟବହୃତ ହୁଏ । ଏହି ଢ଼ାକ୍ ବାଦ୍ୟ କଳାହାଣ୍ଡିର ପ୍ରାଚୀନତମ ବାଦ୍ୟ । ଏହା ଆଜି ପର୍ଯ୍ୟନ୍ତ ଅକ୍ଷର୍ଣ୍ଣ ଭାବରେ ପ୍ରଚଳିତ । ଏହା ଉତ୍ତର ଭାରତର ଡ଼ଫ୍‌ଲି ବାଦ୍ୟ ସହିତ ସାମଞ୍ଜସ୍ୟ ଅଛି । ଛେଳୀର ଗୁଣ୍ଡି ପାଞ୍ଚ ଗୁଣ ବ୍ୟାସ ବିଶିଷ୍ଟ ଚକ୍ରାକାରର ଏକା କାଠର ଆଧାର ଉପରେ ଚମଡା ଛାଉଣୀ । ବାଦ୍ୟକାର ଏହି ବାଦ୍ୟକୁ କାଖରେ ଚାପେ । ଦୁଇ ହାତରେ ଦୁଇଖଣ୍ଡ କାଠି ଦ୍ୱାରା ବାଁ ହାତରେ ବାଦ୍ୟର ଉପର ଅଂଶ ଓ ଡାହାଣ ହାତରେ ତଳ ଅଂଶରେ ଡବ ଡବ ଧ୍ୱନି କରଯାଏ ଏକ ସୁନ୍ଦର ତାଳରେ ଗୀତର ଲୟ ସହ ସାମଞ୍ଜସ୍ୟ ରଖେ । ଦିନସାରା କଠିଣ ପରିଶ୍ରମ ପରେ ଶ୍ରମ ଲାଘବ ପାଇଁ ଆଦିବାସୀ ଯୁବକ ଯୁବତୀ ମାନେ ଗୀତ ଗାଇ ଗାଇ ନାଚନ୍ତି । ଯୁବକ ମାନଙ୍କ ହାତରେ ଡାବ ଓ ଯୁବତୀ ମାନଙ୍କ ହାତରେ ଗମ୍‌ତାଳି ଏହି ବାଦ୍ୟର ସଙ୍ଗୀତରେ ଆଦିରସ ପ୍ରାଧାନ୍ୟ ପରିଲକ୍ଷିତ ହୁଏ (38) ।
ଯଥା;-

ନାଯା ସରିଙ୍ଗ୍ ଦାନା ରୋଢ଼େ
(ଯୁବକ ଯୁବତୀଙ୍କୁ ଡାବ୍ ବଜାଇ ଡ଼ାକେ— ଆ ଆ ପିଯା ଯିବା ନାଚି ନାଚି)
ନାନା ଯୋଡ଼ିଙ୍ଗ ଦାନା ରୋଢ଼େ
**(ଯୁବତୀ ଯୁବକକୁ ଗମତାଳି ବଜାଇ ଉତ୍ତର ଦିଏ ଆସ ଆସ ପିଯ ଯିବା ନାଚି ନାଚି)**
**ସଂଗ୍ରହ- ପଗନୁ ମାଝୀ, ଢ଼େଙ୍ଗେନ୍ ଦେପୁର)**

## ବନାଚେଗଥା ବା ବନାଗୁଦା

କନ୍ଧ ସଂସ୍କୃତିରେ, ପରମ୍ପରାନୁଯାୟୀ, ଅଭିଆଡ଼ି ଝିଅ ମାନଙ୍କ ଅଙ୍ଗ ଲତାରେ ଚିତ୍ର ଅଙ୍କୁଟା-ଇବା ବା ଚିତା କୁଟାଇବା ପ୍ରଥାକୁ 'ବନାଗୁଦା' ବୋଲି କୁହାଯାଏ । ଅସୁର ଗଡ଼ ଦୁର୍ଗରୁ ମିଳିଥିବା କେତେକ ମୃତ୍ପାତ୍ର ଚିତ୍ରରେ ଏପରି ବନାଗୁଦା ଚିହ୍ନର ଅବିକଳ ସାମ୍ୟ ରହିଛି । ନଡ଼ିଆ ସଢେଇକୁ ପୋଡ଼ି କଳା କରଯାଏ ଏବଂ ସୂକ୍ଷ୍ମ ଛୁଞ୍ଚି ସାହାଯ୍ୟରେ ବନା ଗୁଦା-ଯାଏ । ଏପରି ବନାଗୁଦା କାର୍ଯ୍ୟ ପ୍ରଜାତିର ଭଟ ମାନଙ୍କର ସ୍ତ୍ରୀ ଲୋକମାନେ ବଂଶାନୁକ୍ରମେ କରନ୍ତି । ଏମାନଙ୍କୁ 'ତଏଗରେନ୍' (ବୈରାଗୀକାତାର ନାରୀ) ବାନାରୀ' (ବନାଗୁଦା ନାରୀ) ବୋଲି କୁହାଯାଏ । ନିମ୍ନଲିଖିତ ଗୀତ ଗାଇ ଏମାନେ ବନା

Digitized by srujanika@gmail.com

ଗୂଢାର୍ଥ:-

ନାକେ କାନେ ଭେଦେନା (ଜଣାହୋଇଥିବା)

ହାତେ ଗୂଢ଼େ ଗୂଢେନା (ବନା ଗୁଚ୍ଛା ହୋଇଥିବା)

ଗାଗଡ୍ (ଶରୀର) ଲୁବେ -ଲୁବନା (କମଳଙ୍ଗୀ)

ଛମ୍‌ଲିକେ (ନାଗରୀକୁ) ମୁଁ ଭିଁ ଘିଚେନା (ଟାଣି ନେବୀ)

ବାଏର (ବାଡ଼ି) ଆଡୁ ଭଟୋ (ଭିଣୋଇ) ବଇେ (ଡାକେ) ଓ କଚେନା (39)

## ନୂଆଖାଇ ବା ନବାନ୍ନ

ନୂଆଖାଇ ବା ନବାନ୍ନ କଳାହାଣ୍ଡିର ସର୍ବାଧିକ ଗୁରୁତ୍ୱ ପୂର୍ଣ୍ଣ ପର୍ବ । ଏହି ପର୍ବ ଭାରତର ସର୍ବତ୍ର ବିଭିନ୍ନ ନାମରେ ପ୍ରଚଳିତ । ପ୍ରାଚୀନ କାଳରେ ଋଷିଗଣ ସ୍ୱ ସ୍ୱ ଆଶ୍ରମରେ [ଆରଣ୍ୟକରେ] ନବଶସ୍ୟ ବ୍ୟବହାର ପୂର୍ବରୁ ଯଜ୍ଞରେ ଚରୁ ରୂପେ ସମର୍ପଣ କରୁଥିଲେ । ପଶ୍ଚିମ ଓଡ଼ିଶାରେ ଏହି ପର୍ବର ମହତ୍ୱ ସର୍ବାଧିକ । ଏହି ଅଞ୍ଚଳ ପ୍ରାଚୀନ କାଳରେ ଋଷି ଆଶ୍ରମରେ ପରିପୂର୍ଣ୍ଣ ଥିଲା । ଏହି ଋଷି ମାନଙ୍କୁ 'ଆରଣ୍ୟକ' କୁହାଯାଉଥିଲା । ବେଦର 'ଆରଣ୍ୟକ' ଶାଖା 'ବ୍ରାହ୍ମଣ' ଶାଖା ପରି ପ୍ରସିଦ୍ଧ । ଆଜି ମଧ୍ୟ ପଶ୍ଚିମ ଓଡ଼ିଶାର ବ୍ରାହ୍ମଣ ଜାତି 'ଝାଡ଼ୁଆ' ବା 'ଆରଣ୍ୟକ' ରୂପେ ପରିଚିତ । (40) ଏହି ପର୍ବ ସାଧାରଣତଃ ଭାଦ୍ରବ ଶୁକ୍ଳପକ୍ଷରେ ବିଭିନ୍ନ ସ୍ଥାନରେ ପଞ୍ଚମୀ, ସପ୍ତମୀ କିମ୍ବା ଦଶମୀରେ ପାଞ୍ଜି ଅନୁସାରେ ଅନୁଷ୍ଠିତ ହୁଏ । କଳାହାଣ୍ଡିର ପ୍ରାଚୀନ ରାଜଧାନୀ ଜୁନାଗଡ଼ସ୍ଥ ଆରଣ୍ୟକ ବ୍ରାହ୍ମଣ ସମାଜର ଧର୍ମପୀଠ 'ଦଧିବାମନ ମନ୍ଦିର' କର୍ତ୍ତୃପକ୍ଷ ଓଡ଼ିଆ ପାଞ୍ଜି ଅନୁଯାୟୀ ଶୁଭଦିନ ଧାର୍ଯ୍ୟକରି ବିଭିନ୍ନ ଅଞ୍ଚଳକୁ ଚିଠି ଦ୍ୱାରା ଜଣାଇ ଦିଅନ୍ତି । କଳାହାଣ୍ଡିର ଆଧୁନିକ ରାଜଧାନୀ ଭବାନୀପାଟଣା ନଗରବାସୀ କଳାହାଣ୍ଡି ମହାରାଜାଙ୍କ ଇଷ୍ଟଦେବୀ ମାଣିକେଶ୍ୱରୀଙ୍କୁ ଭୋଗ ଲଗାଇ ଦଶମୀ ଦିନ ନବାନ୍ନ ପର୍ବ ପାଳନ କରନ୍ତି । ଏହି ଦିନ ଗୃହର ଇଷ୍ଟଦେବୀ, ଲକ୍ଷ୍ମୀ ଏବଂ ଗ୍ରାମଦେବତାଙ୍କୁ ନବାନ୍ନ (ନୂଆଧାନର ଚୂଡ଼ା) ପୂଜା କରିବାପରେ ଗୃହର ମୁଖ୍ୟବ୍ୟକ୍ତି ନୂଆ ଧାନର ଚୂଡ଼ା ଗୋରସ ଓ ଚିନି ମିଶି ତିଆରି ହୋଇଥିବା ପାୟସାନ୍ନ ସମସ୍ତଙ୍କୁ ବଣ୍ଟନ କରନ୍ତି । ସମସ୍ତେ ଏକ ସ୍ଥାନରେ ଧାଡ଼ିରେ ବସି ପୂର୍ବାଭିମୁଖୀ ହୋଇ ନବାନ୍ନ ପାୟସାନ୍ନ ଗ୍ରହଣ କରନ୍ତି । ତାପରେ ସମସ୍ତେ ହାତ ଧୋଇ, ଗୃହର ଇଷ୍ଟଦେବୀ, ଲକ୍ଷ୍ମୀ ଦର୍ଶନ ପରେ ନିଜ ନିଜ ଠାରୁ ବୟସ୍କ ବ୍ୟକ୍ତିଙ୍କ ପାଖରେ ଦଣ୍ଡବତ ହୁଅନ୍ତି । ବ୍ରାହ୍ମଣାଦି ଉଚ୍ଚ ଶ୍ରେଣୀ ବ୍ୟତୀତ ହରିଜନ, ଆଦିବାସୀ ଓ ଅନ୍ୟାନ୍ୟ ଅନୁନ୍ନତ ଜାତି (Baetewand Classes) ଏହି ପର୍ବରେ ବେଶ୍ ଜମେ । ଏହି ପର୍ବରେ କଳାହାଣ୍ଡିର ବୀରବାଦ୍ୟ ଘୁମୁରା ସହ ସାମୂହିକ ନୃତ୍ୟ, କେବଳ ଯୁବକ ମାନେ କରନ୍ତି ।

Digitized by srujanika@gmail.com

## ଲୋକନୃତ୍ୟ ଘୁମୁରା

ଏହି ବାଦ୍ୟ କଳାହାଣ୍ଡିର ଅତି ପ୍ରାଚୀନ ବାଦ୍ୟ ଅଟେ । ଏହା ଓଡ଼ିଶା ତଥା ଭାରତର ଅନ୍ୟତ୍ର ଦୃଷ୍ଟି ଗୋଚର ହୁଏ ନାହିଁ । ଏହା ଗଡ଼କାୟ ସାମରିକ ବାଦ୍ୟ ହେବା ସଙ୍ଗେ ସଙ୍ଗେ ବିଭିନ୍ନ ପର୍ବ ପର୍ବାଣୀ, ବିଶେଷତଃ ନୂଆଖାଇ ଉତ୍ସବର ଏହା ମୁଖ୍ୟବାଦ୍ୟ (41) କୁହାଯାଏ । ଏହାର ଉତ୍ପତ୍ତି ପୌରାଣିକ ଯୁଗରେ ହୋଇଥିଲା ଯେତେବେଳେ ମହାଦେବୀ ଦୁର୍ଗା ମହିଷାସୁର ସହ ଯୁଦ୍ଧରତ ଥିଲେ । ଏହି ବାଦ୍ୟର ପରିକଳ୍ପନା ପୌରାଣିକ କଳାକାର 'ଚନ୍ଦ୍ରଧ୍ୱଜ' ଙ୍କ ଦ୍ୱାରା ହୋଇଥିଲା । କିମ୍ବଦନ୍ତୀ ଅନୁଯାୟୀ, ଏହିବାଦ୍ୟ କୁବେରଙ୍କ ପାଖରେ ଥିଲା ଏବଂ ପରବର୍ତ୍ତୀ କାଳରେ ଲଙ୍କାର ରାଜା ରାବଣଦ୍ୱାରା ସାମରିକ ବାଦ୍ୟରୂପେ ବ୍ୟବହୃତ ହେଉଥିଲା । ଅନ୍ୟ ଏକ କିମ୍ବଦନ୍ତୀ ଅନୁଯାୟୀ ଘୋଷିଂହଦେବ୍ୟ କଳାହାଣ୍ଡି ଅଞ୍ଚଳରେ ରାଜତ୍ୱ କରୁଥିଲେ । ତାଙ୍କର ରାଜତ୍ୱ ସମୟରେ କଳାହାଣ୍ଡି ଅଞ୍ଚଳ ଦଣ୍ଡକାରଣ୍ୟ ଅନ୍ତର୍ଗତ ରାବଣର ସାମ୍ରାଜ୍ୟଭୁକ୍ତ ଥିଲା । ତେଣୁ ଏହି ଅଞ୍ଚଳରେ ଲଙ୍କାର ବୀରବାଦ୍ୟ ଘୁମୁରା ପ୍ରଚଳିତ ହେଲା । ଏତଦ୍ ବ୍ୟତୀତ ସମୁଦ୍ରଗୁପ୍ତଙ୍କ ସମସାମୟୀକ ମହାକାନ୍ତାର (କଳାହାଣ୍ଡି ଅଞ୍ଚଳ) ର ଅଧିପତି ବ୍ୟାଘ୍ରରାଜଙ୍କ ବିଶାଳ ସୈନ୍ୟବାହିନୀର ଏହା ସାମରିକ ବାଦ୍ୟଥିଲା । ତତ୍ ପରବର୍ତ୍ତୀ କାଳରେ କଳାହାଣ୍ଡି ଅଞ୍ଚଳର ଶାସକବୃନ୍ଦ, ଯଥା– ସରଭପୁରିଆ, ସୋମ ବା କେଶରି ବଂଶ, କାଳଚୁରୀ ତଥା ନାଗ ବଂଶର ରାଜାମାନେ ଏହାକୁ ନିଜ ନିଜ ଯୁଦ୍ଧବାଜା ରୂପେ ଗ୍ରହଣ କରିଥିଲେ । ଏଠାରେ ବିଶେଷ ଉଲ୍ଲେଖ ଯୋଗ୍ୟ କି କୋଣାର୍କ ଓ ଭୁବନେଶ୍ୱରର ଭୀମେଶ୍ୱର ମନ୍ଦିର ଗାତ୍ରରେ ଖୋଦିତ ମୂର୍ତ୍ତୀ ଅନୁଯାୟୀ ଘୁମୁରାର ଲୋକପ୍ରିୟତା ପ୍ରମାଣିତ (42) ଏହି ବାଦ୍ୟ ଦଶହରା ପର୍ବର ଛତ୍ର ଯାତ୍ରାରେ ମଧ୍ୟ ବଜାଯାଏ ।

## ଛତ୍ରଯାତ୍ରା

କଳାହାଣ୍ଡି ନାଗବଂଶୀ ରାଜା ମାନଙ୍କର ଇଷ୍ଟଦେବୀ ମାଣିକେଶ୍ୱରୀ ଭବାନୀପାଟଣାସ୍ଥ ରାଜ ଉଆସ ମଧ୍ୟରେ ପ୍ରତିଷ୍ଠିତ । ଏହି ମନ୍ଦିରରେ ଦଶହରା ବା ଶାରଦୀୟ ପର୍ବରେ ଛତ୍ର ଯାତ୍ରା ହୁଏ । ମାଣିକେଶ୍ୱରୀଙ୍କ ଛତ୍ର, ଭବାନୀପାଟଣାର ପଶ୍ଚିମ ଦିଗରେ ଅବସ୍ଥିତ 'ଜେନାଖାଲ' କୁ ମହାଷ୍ଟମୀ ଦିନ, ମଧ୍ୟ ରାତ୍ରରେ ମନ୍ଦିରରେ ପୋଢ଼ଲୋୀ ହେବାପରେ ନିଆଯାଏ । ଜେନାଖାଲରେ ବୋଦାବଳି ଦିଆଯାଏ, ପୂର୍ବରୁ ମଣିଷ ବଳି ଦିଆ ଯାଉଥିବାର କୁହାଯାଏ । ନବମୀର ପ୍ରାତଃ କାଳରେ ଜେନାଖାଲରୁ ମାଣିକେଶ୍ୱରୀ ମନ୍ଦିର ପର୍ଯ୍ୟନ୍ତ ପ୍ରାୟ ତିନି କିଲୋମିଟର ପର୍ଯ୍ୟନ୍ତ ରାସ୍ତାରେ ମାଣିକେଶ୍ୱରୀ ଙ୍କ ଛତ୍ର ଯାତ୍ରା ହୁଏ । ଏହି ଛତ୍ର ଯାତ୍ରାର ସମ୍ମୁଖ ଭାଗରେ ଘୁମୁରା ଦଳ ସବୁ ବୀରବାଦ୍ୟ ବଜାଇ

Digitized by srujanika@gmail.com

ଅଗ୍ର ଧାବନ କରୁଥା'ନ୍ତି । ରଥର ଦୁଇ କଡରେ ଅସଂଖ୍ୟ ଛେଳି, ମେଣ୍ଢା, ପାର, କୁକୁଡ଼ା ବଳି ଦିଆଯାଇ ରଥ ରକ୍ତାକ୍ତ ହୋଇଯାଏ । ଛତ୍ର ଯାତ୍ରାର ପରବର୍ତ୍ତୀ ଦିନ 'ଲକ୍ଷବନ୍ଧା' ପର୍ବ ପାଳନ କରଯାଏ ।

## ଲାଖବିନ୍ଧା

ଦଶହରା ପର୍ବରେ ବିଜୟା ଦଶମୀ ଦିନ ଭବାନୀପାଟଣାର ପଶ୍ଚିମରେ ଅବସ୍ଥିତ ନକଟି-ଗୁଡ଼ା ଗ୍ରାମରେ ଏକ ଆମ୍ବ ତୋଟାରେ ମାଣିକେଶ୍ୱରୀଙ୍କ ଛତ୍ର ପୂଜା ହୁଏ । ବୋଦା ବଳି ଦିଆଯାଏ ଏବଂ ଲକ୍ଷବିନ୍ଧା ହୁଏ । ଏକ ସୁଉଚ୍ଚ ଆମ୍ବଗଛ ଉପରେ ଲକ୍ଷ ଦିଆଯାଇ ଏକ ମାଟି କୁଣ୍ଡି ବାନ୍ଧି ଦିଆଯାଏ । ବନ୍ଧୁକଧାରୀ ମାନେ ବନ୍ଧୁକ ଗୁଳିରେ ଏହି ଲକ୍ଷ କୁଣ୍ଡିକୁ ଲକ୍ଷ ଭେଦ କରନ୍ତି । ଯିଏ ଏଥିରେ ସମର୍ଥ ହୁଏ ତାକୁ ପୁରସ୍କାର ଦିଆଯାଏ । କଳା-ହାଣ୍ଡିର ପୂର୍ବତନ ରାଜା ବା ତାଙ୍କ ରାଜ ପ୍ରତିନିଧି ଏହି ପୁରସ୍କାର ଦିଅନ୍ତି । ଏହା ଅର୍ଥା-କାରରେ ଦିଆଯାଏ । ପୁରସ୍କୃତ ବ୍ୟକ୍ତିଙ୍କୁ ନିଜ ବନ୍ଧୁକ ଧରି ଲକ୍ଷବିନ୍ଧା ସ୍ଥାନରୁ ମାଣିକେ-ଶ୍ୱରୀ ମନ୍ଦିର ପର୍ଯ୍ୟନ୍ତ ଛତ୍ର ଯାତ୍ରାରେ ଛତ୍ର ସହ ପଦଯାତ୍ରା କରିବାର ସମ୍ମାନ ଦିଆଯାଏ । ଏହି ଯାତ୍ରାରେ ମଧ୍ୟ ବହୁ ଜନ ସମାଗମ ହୁଏ । ଏହି ଯାତ୍ରାର ପୁରୋଭାଗରେ ମଧ୍ୟ ଘୁମୁରାଦଳ ମାନେ, ବିଶେଷତଃ, ମହାଷ୍ଟମୀ ଛତ୍ରରେ ରାଜଆବାସ(Palace) ସମ୍ମୁଖରେ ଅନୁଷ୍ଠିତ ଘୁମୁରା ନୃତ୍ୟ ପ୍ରତିଯୋଗିତାରେ ପୁରସ୍କୃତ ଦଳମାନେ ଯୋଗ ଦେବାର ସମ୍ମାନ ଲାଭ କରନ୍ତି ।

## ଖଣ୍ଡାବସା

ଦଶହରା ପର୍ବରେ ଏହା ଯୁନାଗଡ଼ର ଲଙ୍କେଶ୍ୱରୀ ମନ୍ଦିରରେ ପାଳନ କରଯାଏ । ମହା-ଷ୍ଟମୀ ଦିନ କଳାହାଣ୍ଡିର ପୂର୍ବତନ ରାଜାମାନେ ଏହି ମନ୍ଦିରକୁ ଆସି ପୂଜା କରୁଥିଲେ । ସେ ଉପବାସ ରହି ଜ୍ୟୋତିଷ ନିର୍ଣ୍ଣିତ ଏକ ଶୁଭ ମୁହୂର୍ତ୍ତରେ ଏକ ଖଣ୍ଡା ଲଙ୍କେଶ୍ୱରୀ ଦେବୀଙ୍କ ମୂର୍ତ୍ତୀ ସମ୍ମୁଖରେ ଉପସ୍ଥାପନ କରୁଥିଲେ । ଲୋକଙ୍କ ବିଶ୍ୱାସ ଯେ ଯଦି ଏହି ଖଣ୍ଡା ସିଧା ରହିଯାଏ, ତେବେ ଶୁଭ ଏବଂ ବଙ୍କା ହେଲେ ଅଶୁଭ ହୁଏ । ମହାମାରୀ, ମଡ଼କ ଆଦି ବିପଦ ଘଟେ । ଏହି ଦିନ ବୋଦା ଓ ପୋଡବଳି ଦିଆଯାଏ । ଏଥିପାଇଁ ତିନିଦିନ ଧରି ବିରାଟ ଜନ ସମାଗମ ହୁଏ । ଏଥିରେ ମଧ୍ୟ ଘୁମୁରାବାଦ୍ୟ ମୁଖ୍ୟସ୍ଥାନ ଅଧିକାର କରେ । (43)

Digitized by srujanika@gmail.com

ଏଠାରେ ଉଲ୍ଲେଖ ଯୋଗ୍ୟ କି, ଛତ୍ର ଯାତ୍ରା, ଲଖବିନ୍ଧା ଓ ଖଣ୍ଡାବସା ଆଦି ପୂଜା ଯାତ୍ରା ରାମାୟଣ ବର୍ଣ୍ଣିତ ଲଙ୍କାର ରାବଣ ଦ୍ୱାରା ଅନୁଷ୍ଠିତ ପୂଜା ଉତ୍ସବ ସହିତ ସାମଞ୍ଜସ୍ୟ ଥିବାରୁ ଏହି ଜିଲ୍ଲା ରାମାୟଣ ଯୁଗରେ ରାବଣର ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ଥିଲବୋଲି ଅନୁମାନ କରାଯାଏ । (44)

## ଚୈତ୍ରାପର୍ବ ଓ ପୋଡ ପୂଜା (ବଳି)

ଆଦିବାସୀ ମାନଙ୍କ ପର୍ବ ପର୍ବାଣୀ ମଧ୍ୟରେ ଚୈତ୍ରାପର୍ବ ପ୍ରଧାନ । ପର୍ବର ପୂର୍ବଦିନ ଉପବାସ ରହି ଧରଣୀ ଓ ଡଙ୍ଗର ଦେବତାଙ୍କ ଆବାହନ କରାଯାଏ । ପର୍ବଦିନ ଧରଣୀ ଦେବୀଙ୍କ ନିକଟରେ ବାଜିଉଠେ ଢ଼ୋଲ ଓ ସିଙ୍ଗା । କନ୍ଧ ଧାଙ୍ଗଡା ମାନେ (ଯୁବତୀମାନେ) ଦେବାଦେବୀଙ୍କ ସ୍ତୁତିଗାନ କରି ନୃତ୍ୟ କରନ୍ତି । ମଦ୍ୟପୂଜା ହୁଏ ଏବଂ ସମସ୍ତେ ପ୍ରସାଦରୂପେ ମଦ୍ୟପାନ କରନ୍ତି । ସ୍ତ୍ରୀ ଲୋକ ମାନଙ୍କୁ ଏଥିରେ ଯୋଗ ଦେବାପାଇଁ ସୁଯୋଗ ଦିଆଯାଏ ନାହିଁ । ପୂଜା ଶେଷରେ ପୋଢ଼ ବଳି ଦିଆଯାଏ । କେତେକ ଗ୍ରାମରେ ବଳିଖୁଣ୍ଟରେ ବନ୍ଧା ଯାଇଥିବା ପୋଢ଼ ଦେହରୁ କଟୁରୀ ସାହାଯ୍ୟରେ ଟୁକୁରା ଟୁକୁରା ମାଂସ କାଟି ନେବାର ପ୍ରଥା ପ୍ରଚଳିତ । ଅନ୍ୟ ଗ୍ରାମରୁ ଆସିଥିବା ଲୋକେ ମଧ୍ୟ ବଳିଦେହରୁ ମାଂସ ଟୁକୁରା ନିଜ ନିଜ ଗ୍ରାମକୁ ଗ୍ରାମର ମଙ୍ଗଳ ଆଶାରେ ନେଇଯାନ୍ତି । ଏହି ପର୍ବରେ କାନ୍ଦୁଲ, ମହୁଲ, ଆଦି ନବଶସ୍ୟ ଦେବୀଙ୍କୁ ଅର୍ପଣ କରି ନବାନ୍ନ ପରି ବ୍ୟବହାର କରାଯାଏ । (୪୫)

ଏଠାରେ ବିଶେଷ ଉଲ୍ଲେଖ ଯୋଗ୍ୟକି, ମାଟିମାତା ବା ଧରନୀ ମାତାକୁ ମଣିଷ ରକ୍ତ ଦେଲେ ସେ ଭଲ ଫସଲ ଦିଏ, କନ୍ଧ ମାନଙ୍କ ଏହି ସରଳ ବିଶ୍ୱାସ । ଏହି ଧାରଣାରୁ ନରବଳୀ ଏକ କଠୋର ଧର୍ମୀୟ ବିଶ୍ୱାସର ସୃଷ୍ଟି । ଏବେ ସେହି 'ମେରିଆ' ନରବଳି ଆଉ ନାହିଁ । ତେବେ ସେହି ସାଂସ୍କୃତିକ କ୍ଷତି (Cultural Loss) ର କ୍ଷତି ପୂରଣ ପାଇଁ କନ୍ଧ ଜାନି ନିଜ ପୁଅକୁ ବଳି ଦେବା ସ୍ଥାନରେ ପୋଢ଼ ବଳିଦିଏ । ଏହା ବାର ବର୍ଷରେ ଥରେ ପାଳିତ ହୁଏ । ପୂର୍ବ ଆଚରିତ ନରବଳି 'ମେରିଆ' ପର୍ବଠାରୁ ତିଳେବି ଧର୍ମାଚାର ଓ ରୀତି ନୀତି ପାଳନରେ ବ୍ୟତିକ୍ରମ ହୁଏ ନାହିଁ । କେବଳ ପୋ' (Sun) ସ୍ଥାନରେ ପୋଢ଼ (Bafallow) ଦେବାଛଡ଼ା । (୪୬)

## ପୁଷ୍ ପର୍ବ ବା ଚୋକି ପର୍ବ ଓ (ପୌଷ ପୂର୍ଣ୍ଣିମା)

କନ୍ଧ ମାନଙ୍କ ଅନ୍ୟଏକ ବଡ ପର୍ବ ହେଉଚି ପୁଷ ପର୍ବ । ଏହା ପୌଷପୂର୍ଣ୍ଣୀମା ଦିନ ପାଳନ ପାଳନ କରାଯାଏ । ଏହାକୁ ଚୋକି ପର୍ବ ମଧ୍ୟ କୁହାଯାଏ । କନ୍ଧ ପରଜା ମାନଙ୍କ

Digitized by srujanika@gmail.com

ଟୋକୀ ପରବ Female Jenticide ଉପରେ ଆଧାରିତ । ଟୋକୀ ପରବରେ ପ୍ରଥମେ କିଆଣ୍ଡା ଝିଅର ପେଟ ଫଟାଇ ତା ସଦ୍ୟ ଛଳିଛାକୁ ଧରନୀ ମାତାକୁ (ଦେଉଥିଲେ ଭଲ ଫସଲ ପାଇଁ । ଏବେ ଟୋକୀ ସ୍ଥାନରେ ପ୍ରତୀକ ରୂପେ ମେଣ୍ଢା ଟିଏ ମରହୁଏ । (୪୭) ଗାଁର ମାଟି ଘରେ ଏହି ବଳି ଦିଆଯାଏ । ଖାଳି କରି ଗାଁକୁ ଗାଁ ଏହି ବଳି ମାନସିକ କରି କରାଯାଏ । ଏଠାରେ ଉଲ୍ଲେଖ ଯୋଗ୍ୟ କି ପର୍ବ ପରଦିନ ମାଟିଘରୁ ବଳି ହୋଇଥିବା ମେଣ୍ଢା (ଲୌକିକ ଭାଷାରେ ଗଡ଼୍ଗ) ର ହାତ ଗୋଡ ସବୁ ପାଖରେ ଥିବା 'ଢେନାଖାଇ' ରେ ପୋତି ଦିଅନ୍ତି (ଏଇ ଢେନାଖାଲରେ ପୂର୍ବ କାଳରେ ମେଡ଼ିଆ ବଳି ବା ମଣିଷ ବଳି ଦିଆଯାଉ ଥିଲା । ରାତିବେଳେ କେହି ଯଦି ଏକୁଟିଆ ଏହି ଢେନାଖାଲ ଦେଇ ଗତାୟତ କରେ ତାକୁ ଚଣ୍ଡି ମାଡ଼ି, ହାଡ଼ଗୋଡ଼ ଭାଙ୍ଗି ଢେନାଖାଲ ଭିତରେ ପୋତି ଦିଅନ୍ତି ବୋଲି ଲୋକଙ୍କ କୋକୁଆ ଭୟ । [୪୮]

## ଝାଂକିମତା

ପୌଷ ପୂର୍ଣ୍ଣୀମା ଦିନ ଲଞ୍ଜିଗଡ଼ ବ୍ଲକ୍‌ର ବିଶ୍ୱନାଥ ପୁର ଓ ମସାପଦର ଗ୍ରାମରେ ଦେବୀ ପୂଜକ ମାନେ ଦେବୀ ଭକ୍ତ ମାନଙ୍କ ହାତ ଧରି, ଜଳନ୍ତା ଅଙ୍ଗାର ଉପରେ ଖାଲି ପାଦରେ ଗ୍ଲି ଗ୍ଲି ଯା'ନ୍ତି କଂଟା ଦୋଳିରେ ବସି ଝୁଲନ୍ତି । ଏହା ଦେଖିବାକୁ ବହୁ ଜନ ସମାଗମ ହୁଏ । [୪୯]

## ପୁଷ୍‌ପୁନ-ଛେର୍‌ଛେରା ପରବ

ଉପରୋକ୍ତ ପୂଷ୍ ପରବ ବ୍ୟତିର ପୌଷ ପୂର୍ଣ୍ଣୀମା ଦିନ ପିଲାମାନେ ଘରଘର ବୁଲି ବଣ-ଭୋଜି କରିବା ପାଇଁ ଗ୍ଉଳ ପଇସା ଗ୍ନଦା ମାଗନ୍ତି । ଏହାକୁ 'ଛେର୍‌ଛେରା' ବୋଲି କୁହାଯାଏ । ପିଲାମାନେ ଗୋଟିଏ ଗୋଟିଏ ବାଡ଼ି ଧରି ପ୍ରତିଘର ସାମ୍ନାରେ ମାଟିରେ ବାଡ଼ିରେ ପିଟି ପିଟି ଗୀତ ଗାଆନ୍ତି–

ଛେର୍ ଛେରା ଛେର୍ ଛେରା ... ... ଆଜି ପୁନି ପୁନି କାଲି ପୁନି (ପୂର୍ଣ୍ଣିମା)
ଛିଡା ଫଟା (ଲୁଗା) ପଟା ଦୂନା ଦୁନି ... ଛେର୍ ଛେରା ... ...
ଇଘର ବୁଢ଼ି ହଗେଇ ହେଲା ... ... ...
ଛିଆ ଖାଇ ଖାଇ ଛେରେଇ ହେଲା– ଛେର୍ ଛେରା ... ... –
ହାଣ୍ଡି ଢୁନ୍ ଢୁନ୍ କରନା ... ... ...
ଦେବି ଦେବି ବଏଲ (କହିଲା) ନା– ଛେର୍ ଛେରା ... ... ...
ଆନ୍ (ଆନ) ପତର ଲମ୍ ଲମ୍ (ଲମ୍ବ)
ଘିଚି (ଟାଣ) ଦେମି ତୋର ପେଟର୍ ଚମ୍ (ଚର୍ମ) ଛେର୍ ଛେରା ...

Digitized by srujanika@gmail.com

ପୁଷ୍ପୁନି ଆଗରୁ ଚିରଲୁଗା ସଜାଡ଼ି ନେଇଥା'ନ୍ତି । ଫଟା ଲୁଗା ପରିଧାନ ଯେପରି ନିଷେଧ । ସମସ୍ତେ ସଫାସୁତର ଲୁଗା ପରିଧାନ କରନ୍ତି । କବି ଗଙ୍ଗାଧରଙ୍କ ଭାଷାରେ–

ଦିନା କେତେ ଗଲେ ପୁଷ୍ପୁନି ହେବ ସେ ଦିନ ଦେଖିବୁ ପ୍ରାତେ,
ଛେର୍ ଛେର କୁଟି, ବୁଲିବେ ପିଲାଏ, ଥରି ଥରି ଶୀତ ବାତେ ।
ଥିବ ତା ଡେଙ୍ଗରୀ ହାତେ ଟୁପୁଲି ଭୁଜନି ହାତରେ ବାଡ଼ି,
କେ ଥିବ ଉଲଗ୍ନ ଉଡ଼ିଥିବ କେହି, ମା'ଆର ପୁରୁଣା ଶାଢ଼ୀ ।

(ଗଙ୍ଗାଧର ଗ୍ରନ୍ଥାବଳୀ– ପୃ ୭୪୯)

ଏଠାରେ ଉଲ୍ଲେଖ ଯେ ଯଦି କି, ପୌଷ ପୂର୍ଣ୍ଣିମା ଦିନ ଶ୍ରୀକ୍ଷେତ୍ର ପୁରୀରେ ଜଗନ୍ନାଥଙ୍କ ପୁଷ୍ୟାଭିଷେକ ହେଉଥିବା ବେଳେ ଜନଗଣଙ୍କର ସାର୍ବଜନୀନ ପୁଷ୍ପୁନି ପଶ୍ଚିମାଞ୍ଚଳ ଆଦୀବାସୀ ଓ ଜନସାଧାରଣଙ୍କ ଏକ ଜାତୀୟ ପର୍ବରେ ପରିଣତ ହୋଇଛି । [୫୦]

## ଉପସଂହାର

## ସର୍ବଧର୍ମୀ ସମନ୍ୱୟର ପୀଠ ସ୍ଥଳୀ- ଦାଦପୁର ନୀଳକଣ୍ଠେଶ୍ୱର ମନ୍ଦିରର ବିଶେଷତ୍ୱ

ଭବାନୀପାଟଣା ନିକଟସ୍ଥ ଦାଦପୁର ଏକ ପୂର୍ବତନ ଜମିଦାରୀ ଅଞ୍ଚଳ ଅଟେ । ଏଠାରେ ଥିବା ପ୍ରାଚୀନ ନିଳକଣ୍ଠେଶ୍ୱର ମନ୍ଦିରର ସ୍ଥାପତ୍ୟ-କଳା, କଳାହାଣ୍ଡିର ଲୋକ ସଂସ୍କୃତିରେ ଏକ ବିଶେଷ ସ୍ଥାନ ଅଧିକାର କରିଥିବାର ମନେହୁଏ । କୋଶଳୀ ପଦ୍ଧତିରେ ନିର୍ମିତ ଏହି ମନ୍ଦିର କାରୁକାର୍ଯ୍ୟ ପୂର୍ଣ୍ଣ କୃତି ଅଟେ । ଏହା ମଧ୍ୟ ଯୁଗର ଶେଷାର୍ଦ୍ଧର ବୋଲି ଡାଃ ଦୀପକ ରଞ୍ଜନ ଦାସ ମତ ପ୍ରକାଶ କରିଛନ୍ତି । ଏହି ଅଞ୍ଚଳ ସ୍ଥାନୀୟ ଓ କଳିଙ୍ଗ ସଂସ୍କୃତିର ସଙ୍ଗମ ସ୍ଥଳି ଅଟେ । ବିବିଧ ପ୍ରକାର କାରୁକାର୍ଯ୍ୟ ଓ କଳାବିକାଶର କେନ୍ଦ୍ର ସ୍ଥଳି । ପୂର୍ବଦିଗର ସଂସ୍କୃତି ଓ ପଶ୍ଚିମ ଦିଗର ସଂସ୍କୃତି ପ୍ରଭାବରୁ ଏ ଅଞ୍ଚଳରେ ଏକ ସ୍ଥାନୀୟ ସଂସ୍କୃତି ପ୍ରଭାବରୁ ଏ ଅଞ୍ଚଳରେ ଏକ ସ୍ଥାନୀୟ ସଂସ୍କୃତି ଗଢି ଉଠିଥିଲା । [୫୧] ଏହି ମନ୍ଦିରର ବିଶେଷ ଆକର୍ଷଣ ହେଉଛି ହରିହର ମୂର୍ତ୍ତୀ (ଏଥିରେ ସହଫଂଟା ସଂଲଗ୍ନ) ଏହି ମୂର୍ତ୍ତୀର ଉତ୍ତର ବାମ ଓ ଡାହାଣ ପାଖରେ ଦଶାବତାର ମୂର୍ତ୍ତିମାନ ଖୋଦିତ ହୋଇଛନ୍ତି । ଗୋଡତଳେ ତିନି ନାରୀ ମୂର୍ତ୍ତି ଓ ଦୁଇ ଗୋଡ ଦୁଇ ପାଖେ ଦୁଇ ଦୁଇ ଏମିତି ସାତଟି ନାରୀମୂର୍ତ୍ତି ସପ୍ତମାତୃକା ମୂର୍ତ୍ତି ବୋଲି ମନେହୁଏ । ଏହି ମୂର୍ତ୍ତିଟି ମୁଗୁନି ପଥରରେ କୋଣାର୍କର ଉପର ମୂର୍ତ୍ତି ଢାଞ୍ଚାରେ ତିଆରି । ମୂର୍ତ୍ତିଟିର ପ୍ରାଚୀନତା ଯୋଗୁଁ ଅନେକ ଅଂଶ ଭାଙ୍ଗି ଯାଇଥିବାରୁ ସିମେଣ୍ଟ ଦ୍ୱାରା ମରାମତି କରଯାଇଛି । ଏହି ମୂର୍ତ୍ତିଟି ମନ୍ଦିର ଭିତରେ ନରଖି ବାହାରେ ଗୋଟିଏ ଗଛ ତଳେ ଠିଆ କରି ରଖାଯାଇ ଥିବାର ବିଶେଷ ତାତ୍ପର୍ଯ୍ୟ ପୂର୍ଣ୍ଣପରି ମନେହୁଏ । ମନ୍ଦିର ଭିତରେ [ଗର୍ଭ ମନ୍ଦିରରେ]

Digitized by srujanika@gmail.com

ପ୍ରାଚୀନ ଶିବ ଲିଙ୍ଗ । ଠିକ୍ ଲିଙ୍ଗର ପଶ୍ଚାଦରେ ମାର୍ବଲ ପଥରରେ ତିଆରି ତପସ୍ୟାରତା ଗୌରୀମୂର୍ତ୍ତି । ମୁଖ ଶାଳାରେ ଦୁଇଟି ମୁଗୁନି ପଥର ବୃଷଭ ମଧ୍ୟ ସ୍ଥଳିରେ ମାର୍ବଲ ପଥରରେ ତିଆରି ଚତୁର୍ମୁଖ ବ୍ରହ୍ମାଙ୍କ କେବଳ ମସ୍ତକ ଅଂଶ ଭୂମିରେ ପୋତା ହୋଇଛି । ଏଠାରେ ଉଲ୍ଲେଖ ଯୋଗ୍ୟ କି ପୌରଣିକ ମତବାଦାନୁଯାୟୀ ବ୍ରହ୍ମାଙ୍କ ମୂର୍ତ୍ତି ପୂଜନ ନିଷିଦ୍ଧ ଅଟେ । ପୁନଶ୍ଚ ଶିବ ମନ୍ଦିରରେ ବ୍ରହ୍ମା ଓ ବିଷ୍ଣୁଙ୍କ ମୂର୍ତ୍ତି ପୂଜନ ତାପର୍ଯ୍ୟପୂର୍ଣ୍ଣ ଅଟେ ବିଶେଷ ତାପର୍ଯ୍ୟ ପୂର୍ଣ୍ଣ ହେଉଚି ବିଷ୍ଣୁମୂର୍ତ୍ତି ମନ୍ଦିର ବାହାରେ ଶିବାଭିମୁଖୀ ହୋଇ ଦଣ୍ଡାୟମାନ, ଯେପରିକି ପ୍ରାର୍ଥନାରତ । ପୁନଶ୍ଚ ଏକାଧାଡ଼ିରେ ବ୍ରହ୍ମା [ମୁଖଶାଳାରେ] ଓ ବିଷ୍ଣୁ [ମନ୍ଦିର ବାହାରେ] ଶିବାଭିମୁଖୀ ।

ଏହି ମନ୍ଦିର ପଥର ନିର୍ମିତ ଦୁଇ ମହଲ ବିଶିଷ୍ଟ ପ୍ରାଚୀନ ମନ୍ଦିର ଅଟେ । ଏକ ବଡ ପଥର ସ୍ଲାବ ପଡ଼ି ଦ୍ୱିତୀୟ ମହଲ ତିଆରି । ଏହି ଉପର ମହଲକୁ ଯିବା ପାଇଁ ମଣିଷ ଗଳି ଯାଇ ପାରିବା ଭଳିଅଟେ । [ନିକଟସ୍ଥ ଗୋପିନାଥପୁର ଗ୍ରାମର ପୂର୍ବତନ ଗୌଡ଼ିଆ ଶ୍ରଯୁକ୍ତ ରାସବିହାରୀ ପଣ୍ଡାଙ୍କ ଠାରୁ ଜଣାଯାଏ ଯେ ତାଙ୍କ ପିତା କନ୍ଧମେଳି ସମୟରେ ଏହି ମନ୍ଦିରର ଉପର ମହଲରେ ଲୁଚିଥିଲେ । ] ବୋଧହୁଏ, ପ୍ରାଚୀନ ମନ୍ଦିର ମାନଙ୍କର ଉପର ମହଲ ଶତ୍ରୁଠାରୁ ରକ୍ଷା ପାଇବା ପାଇଁ ରଜା ମାନଙ୍କ ଗୁପ୍ତ ଆଶ୍ରୟ ସ୍ଥଳି ରୂପେ ବ୍ୟବହୃତ ହେଉଥିଲା ।

ମନେହୁଏ ଏହି ମନ୍ଦିର ପ୍ରଥମେ ବ୍ରାହ୍ମଣ୍ୟ ଧର୍ମର ଚିହ୍ନ ସ୍ୱରୂପ ବ୍ରହ୍ମାଙ୍କର ମୂର୍ତ୍ତି ସ୍ଥାପନ କରଯାଇ ଅପୂଜା ରହୁଥିଲା । ପରିବର୍ତ୍ତି କାଳରେ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରାବଲ୍ୟ ଯୋଗୁଁ ବିଷ୍ଣୁମୂର୍ତ୍ତି ସ୍ଥାପନ କରି ପୂଜା ଅର୍ଚ୍ଚନା କରଗଲା । ତତ ପରିବର୍ତ୍ତି କାଳରେ ଶୈବ ଧର୍ମର ପ୍ରଭବ ଯୋଗୁଁ ଶିବଲିଙ୍ଗ ସ୍ଥାପନ କରି ଗର୍ଭ ମନ୍ଦିରରେ ଥିବା ବିଷ୍ଣୁମୂର୍ତ୍ତିଙ୍କୁ ବାହାରେ ପ୍ରାର୍ଥନା ଭଙ୍ଗରେ ଦଣ୍ଡାୟମାନ କରି ସ୍ଥାପନ କରଗଲେ । ଏହି କାର୍ଯ୍ୟ ଦ୍ୱାରା ବୈଷ୍ଣବ ମାନଙ୍କୁ ଅପମାନିତ କରିବା ଅଭିପ୍ରାୟ ଥାଇପାରେ । ସେ ଯାହାହେଉ, ଏହି ମନ୍ଦିରରେ, ଏକଦା ପରସ୍ପରର ପ୍ରବଳ ବିରୋଧୀ ଥିବା ବ୍ରାହ୍ମଣ୍ୟ, ବୈଷ୍ଣବ ଓ ଶୈବ ସଂପ୍ରଦାୟ ବାଦର ଅପୂର୍ବ ସମନ୍ୱୟ ହେଇଚି । ଏହା ହିନ୍ଦୁ ସଂହତିର ପରିଚାୟକ ।

ଏଠାରେ ବିଶେଷ ଉଲ୍ଲେଖ ଯୋଗ୍ୟକି, ମନ୍ଦିରର ଅନତି ଦୂରରେ ଏକ ଗ୍ରାମର ନାମ ଜାଜୁଲଦେଇ ପୁର । ପାଖରେ ଏକ ଛୋଟିଆ କାଲିମାଟି ମିଶା ମୁଣ୍ଡିଆ ପାହାଡ । ଏହା ପ୍ରକୃତି ନିର୍ମିତ ନ ହୋଇ ମାନବକୃତ ପରି ମନେହୁଏ । ପଥର ଚାନାଡ ଓ ବେଢ଼ା ପାଚେରୀର ଭଗ୍ନାବଶେଷ ଖୁବ୍ କମ ପରିମାଣରେ ଥିଲେ ମଧ୍ୟ ସ୍ପଷ୍ଟ ବରିଲକ୍ଷିତ ହୁଏ ।

Digitized by srujanika@gmail.com

ବଡ ବଡ ଇଟାର ଭଗ୍ନାବଶେଷ ବର୍ତ୍ତମାନ ମଧ୍ୟ ଉପଲବ୍ଧ । ଏହି ପାହାଡ଼ିଆ ଡିପ ଜମିଟି ଖୋଦନ କଲେ ନେକ ଐତିହାସିକ ତଥ୍ୟ ମିଳିବାର ସମ୍ଭାବନା ଅଛି ।

ଏଠାରେ ଏକ ଐତିହାସକ ତଥ୍ୟ ଦୃଷ୍ଟି ପଥାରୁଢ଼ ହୁଏ । ଓଡ଼ିଶାର ପୂର୍ବ-ଉପକୂଳବର୍ତ୍ତି ଅଞ୍ଚଳରେ ଗଙ୍ଗବଂଶର ପ୍ରସାର ପୂର୍ବରୁ କଳଚୁରୀ ବଂଶ ପଶ୍ଚିମାଞ୍ଚଳର ଶକ୍ତିଶାଳୀ ଥିଲେ । ୧୧୧୪ ଖ୍ରୀଷ୍ଟାବ୍ଦ ପ୍ରତିପାଦିତ ରତନପୁର ପ୍ରସ୍ତର ଅଭିଲେଖରେ ସୂଚୀତ କଳଚୁରୀ ରାଜ ବଂଶର ଜଜ୍ଜଳଦେବ ପ୍ରଥମଙ୍କ ଅଧୀନରେ ଦକ୍ଷିଣ କୋଶଳର ସମସ୍ତ ଅଂଚଳ ଥିଲା । ଏହି ଏହି ଅଭିଲେଖରେ ଜଜ୍ଜଳଦେବ ପ୍ରଥମ ଜଣେ କୋଶଳାଧିପତି ସୋମେଶ୍ୱର ଦେବଙ୍କୁ ପରାଜିତ କରିଥିବା ଜଣାଯାଏ । ସେ ତେଲଗୁଚୋଡ ରାଜା ସୋମେଶ୍ୱର ଦେବଙ୍କ ବ୍ୟତୀତ ଆଉ କେହି ନୁହେଁ । କାରୁଣ୍ଡମଣ୍ଡଳ ରାଜ୍ୟାଂଶ କାଳଚୁରୀ ସାମ୍ରାଜ୍ୟର ନାମ ବିସ୍ତୃତ ହୋଇଥିବ । (୫୨) ଏହି ମନ୍ଦିର ନିକଟରେ ଗୋଟିଏ ପୁରୁଣା ମନ୍ଦିର ଅଛି । ଏହାର ନାମ ରାଣୀବନ୍ଧ । ଏହି ବନ୍ଧରେ ଜଣେ ରାଜାଙ୍କ ରାଣୀ ସଲିଳ ସମାଧି ନେଇଥିଲେ । ଏହାଙ୍କ ନାମ ଜଜୁଲ ଦେଇ ବୋଲି କୁହାଯାଉଚି । ଏମାନଙ୍କର ସମ୍ପର୍କ ଉପରୋକ୍ତ ଜଜ୍ଜଳଦେବଙ୍କ ସହ ଥାଇପାରେ ଅଥବା ଉକ୍ତ ଗ୍ରାମର ନାମ ଜଜୁଲ ଦେଇପୁର ନ ହୋଇ ପୂର୍ବ କାଳରେ ଜଜ୍ଜଳଦେବ ପୁର ହୋଇଥାଇ ପାରେ । ମନ୍ଦିରଟି କୋଶଳୀ ପଦ୍ଧତିରେ ତିଆରି ତେଣୁ କୋଶଳାଧିପତିଙ୍କୁ ଜୟ କରିଥିବା ଜଜ୍ଜଳ ଦେବ ଏକ ଗବେଷଣାର ବିଷୟେ ବସ୍ତୁ ହୋଇ ପଡ଼ିଚନ୍ତି ।

## ଉପସଂହାର

କଳାହାଣ୍ଡି ଜିଲ୍ଲାରେ ଥିବା ମନ୍ଦିର ଗୁଡ଼ିକ ବିଷୟରେ ଅଧ୍ୟୟନ ଅତି ପ୍ରଯୋଜନୀୟ । ପ୍ରତ୍ୟେକ ମନ୍ଦିର ସଂରକ୍ଷଣ ଓ ସୌନ୍ଦର୍ଯ୍ୟ ରକ୍ଷା ନିମନ୍ତେ । ଉଚିତ ପଦକ୍ଷେପ ନେବା ଉଚିତ । ଏହି ଅଞ୍ଚଳର ଭୂଗର୍ଭରେ ଯାହାସବୁ ଲୁକାୟିତ ତଥ୍ୟ ଅଛି । ତାହାକୁ ଲୋକ ଲୋଚନକୁ ଆଣିବା ପାଇଁ ସ୍ଥାନୀୟ ଲୋକଙ୍କ ସହଯୋଗ ନିତାନ୍ତ ଆବଶ୍ୟକ । ତାହା-ହେଲେ, ଏ ଅଞ୍ଚଳର ଲୁକାୟିତ ପ୍ରତ୍ନ ତାତ୍ତ୍ୱିକ ତଥ୍ୟ ଲୋକ ଲୋଚନକୁ ଆସିବ । (୫୩)

ସଂସ୍କୃତି ମୂଳରେ ଲୋକ-ସଂସ୍କୃତି ହିଁ ନିହିତ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

Digitized by srujanika@gmail.com

## BIBILOGRAPHY

1 ଦାଶ, ପ୍ରିୟବ୍ରତ– ଯଜୁର୍ବେଦ ସୌରଭ–ପୃ ୧୭

2 Sahu N. K.—Orissa Dist. Gazettears, Kalahandi - P-2

3 Singh Deo, J. P. — କାଳୁଣ୍ଡମଣ୍ଡଳ ଏକ ଅଧ୍ୟୟନ, ଗିରିଝର Nov. — 1986/21

4 Elliot's Report on Kalahandi State Dt. 28th July 1856 Orissa Dist. Gazettears Kalahandi Page-2/487

5 Singh Deo, J. P. କାଳୁଣ୍ଡମଣ୍ଡଳ ଏକ ଅଧ୍ୟୟନ, ଗିରିଝର Nov. 86 P-9

6 I bid — P-9

7 I bid — P-10-11

8 I bid — P-15-18

9 The Journal of Kalinga Historical Research Society Vol. II No. 1 June 1947 P-74

10 Singh Deo J.P. କାଳୁଣ୍ଡ ମଣ୍ଡଳ ଏକ ଅଧ୍ୟୟନ, ଗିରିଝର Nov. 86 P-19

11 ପଣ୍ଡା ଭବାନୀ ଶଙ୍କର (ଭଗତ) କଳାହାଣ୍ଡିର ସାଂସ୍କୃତିକ ଐତିହ୍ୟ 'ପଞ୍ଚପାଖୁଡ଼ା' ୯-୧୦/୮୦ ଶାରଦୀୟ ବିଶେଷାଙ୍କ ପୃ ୧୪

12 Ramsay, Cobdan - Bengal Gazettear P-182

13 Sahu, N K. - Orissa Dist. Gazettears, Kalahandi P-42

14 I bid P-41

15 ପଣ୍ଡା ଭବାନୀ ଶଙ୍କର (ଭଗତ) କଳାହାଣ୍ଡି ସାଂସ୍କୃତିକ ଐତିହ୍ୟ 'ପଞ୍ଚପାଖୁଡ଼ା' ୯-୧୦-୮୦ ଶାରଦୀୟ ବିଶେଷାଙ୍କ ପୃ ୧୨ ଓ ୧୩ ।

16 Sahu, N K. Orissa Dist. Gazettears, Kalahandi P-39

17 ପଣ୍ଡା, ଭବାନୀ ଶଙ୍କର ଭଗତ) କଳାହାଣ୍ଡିର ସାଂସ୍କୃତିକ ଐତିହ୍ୟ 'ପଞ୍ଚପାଖୁଡ଼ା' ୯-୧୦-୮୦ ଶାରଦୀୟ ବିଶେଷାଙ୍କ ପୃ ୧୩ ଓ ୧୪

18 ବିଶି, ଦୋଳଗୋବିନ୍ଦ, ଅଧ୍ୟାପକ ଓଡ଼ିଶାରେ ଇଂରେଜ ଚକ୍ରିଡୋଳରେ ଆଦିବାସୀ ବିପ୍ଳବ–ଉତ୍କଳ ପ୍ରସଙ୍ଗ ୧ମ ସଂଖ୍ୟା-ଅଗଷ୍ଟ ୧୯୮୫

Digitized by srujanika@gmail.com

1. 19. Sahu, N. K Orissa Dist, gazettears, Kalahandi P. 70

2. 20. I bid - P. 87 of 90

3. 21. I bid - P. 89

4. 22. ପଣ୍ଡା, ଭବାନୀଶଙ୍କର (ଭଗତ)– ନବାନ୍ନ ହିନ୍ଦୁ ଏକ ମୂତାର ପ୍ରତୀକ- ସାପ୍ତାହିକ 'ଗଷ୍ଟ୍ରଦୀପ' ତା ୧୦–୯–୮୪ – ପୃ ୫

5. 23. ନାୟକ ଶ୍ରୀ ଯୁଗଲକିଶୋର, 'ଭଲ୍ଡ ଦାସିଆ ବାଉରୀ, ପ୍ରବନ୍ଧରେ ବାଉରୀ ( ହରିଜନ ) ମାନଙ୍କୁ 'ବୁଣା ବାଉରି ରୂପେ ଅଭିହିତ କରିଛନ୍ତି । – ଉତ୍କଳ ପ୍ରସଙ୍ଗ ଫେବୃଆରୀ । ମାର୍ଚ୍ଚ ୮୪ – ପୃ ୩୯

6. 24. Sahu, N. K. Orissa Dist, gazettears, Kalahandi P. 95

7. 25. I bid - P. 95

8. 26. ପଣ୍ଡା, ଭବାନାଶଙ୍କର (ଭଗତ) ନବାନ୍ନ ହିନ୍ଦୁ ଏକାମୂତାର ପ୍ରତୀକ– ସାପ୍ତାହିକ 'ଗଷ୍ଟ୍ରଦୀପ' ତା ୧୦-୯-୮୪ – ପୃ ୫

9. 27. Sahu, N. K. Orissa Dist. gazettears, Kalahandi P. 95

10. 28. ପାତ୍ର, ଜଳିଆ, ଦେପୁରଙ୍କ ଠାରୁ ସଂଗୃହିତ ।

11. 29. ପଣ୍ଡା, ଭବାନୀଶଙ୍କର (ଭଗତ) ନବାନ୍ନ ହିନ୍ଦୁ ଏକାମୂତାର ପ୍ରତୀକ– ସାପ୍ତାହିକ 'ରଷ୍ଟ୍ରଦୀପ' ତା ୧୦-୯-୮୫ – ପୃ ୫

12. 30. Sahu, N. K. Orissa Dist. gazettears, Kalahandi P. 97

13. 31. ସାହୁ, ମୂର୍ତ୍ତିମନ୍ତ– କଳାହାଣ୍ଡି ଜିଲ୍ଲାର ଆଦିବାସୀ- ଏକ ଅଧ୍ୟୟନ– ଯୁଗଯାତ୍ରୀ ସାହିତ୍ୟ ସଂସଦ- ମଦନପୁର ରାମପୁର, ର ମୁଖପତ୍ର , ଯୁଗଶ୍ରୀ ପୃ–୨୦

14 32. Ibid - p. 20

15. 33. Sahu, N. K, Orissa Dist gazettears, Kalahandi P. 98

16. 34. I bid - P 97

17. 35. I bid - P 98

18. 36. I bid - P 98

Digitized by srujanika@gmail.com

19. 37 ପଣ୍ଡା, ଶ୍ରୀ ଭବାନୀଶଙ୍କର (ଭଗତ) – ଆଜିବନ ବାସୀ ଦେବତା ଓ ଗାୟତ୍ରୀ- ଉତ୍କଳପ୍ରସଙ୍ଗ– ୪୩ ଭାଗ ୧୧ଶ ସଂଖ୍ୟା- ଜୁନ '୮୭ ପୃ ୭୯

20. 38. ମୁଣ୍ଡ, ଶ୍ରୀ ପରଶୁରାମ, କଳାହାଣ୍ଡ ର ଗଣବାଦ୍ୟ- ପାଞ୍ଚ ପାଖୁଡା ୫ମ ବର୍ଷ ୩ୟ ଓ ୪ର୍ଥ ସଂଖ୍ୟା– କଳାହାଣ୍ଡି ସଂକଳନ– ୨ ( ନାଟକ– ବିଶେଷଙ୍କ )- ପୃ ୧୩

21. 39. ବିଶି, ଅଧ୍ୟାପକ ଦୋଳ ଗୋବିନ୍ଦ– ଲୋକକଳା 'ବନାଶୁଳା' )ଯନ୍ତ୍ରସ୍ଥ)

22 40. ପଣ୍ଡା, ଶ୍ରୀ ଭବାନୀଶଙ୍କର (ଭଗତ)– ନବାନ୍ନ ହିନ୍ଦୁ ଏକ ମୂଡାର ପ୍ରତୀକ ସାପ୍ତାହିକ 'ରଶ୍ମିଦୀପ' ତା ୧୦–୯–୮୪

23. 41. ମୁଣ୍ଡ, ଶ୍ରୀ ପରଶୁରାମ, କଳାହାଣ୍ଡିର ଗଣବାଦ୍ୟ–ପଞ୍ଚପାଖୁଡା ୫ମ ବର୍ଷ ୩ୟ ଓ ୪ର୍ଥ ସଂଖ୍ୟା- କଳାହାଣ୍ଡି ସଂକଳନ- ୨ (ନାଟକ ବିଶେଷଙ୍କ) ପୃ– ୧୩

24. 42. Kar, U. S & Acharya P. C -Birabadya gazett- eers, of Kalahandi Orissa Revitor VOL. × × × × - Mo 4 - Mov. 82 P. 43

25. 43. Sahu, N K. Orissa Dist gazettears, Kalahandi,- P. 117

26. 44. ପଣ୍ଡା, ଭବାନୀଶଙ୍କର (ଭଗତ)– କଳାହାଣ୍ଡିର ସାଂସ୍କୃତିକ ଐତିହ୍ୟ– ପଂଚପାଖୁଡା -9-10/80 ଶାରଦୀୟ ବିଶେଷାଙ୍କ – ପୃ–୧୨

27. 45. ସାହୁ, ମୂର୍ତ୍ତିମନ୍ତ- କଳାହାଣ୍ଡି ଜିଲ୍ଲାର ଆଦିବାସୀ –ଏକ ଅଧ୍ୟୟନ ଯୁଗଯାତ୍ରୀ ସାହିତ୍ୟ ସଂସଦ ମଦନପୁର ରାମପୁରର, ମୁଖପତ୍ର– ' ଯୁଗଶ୍ରୀ '– ପୃ-୨୧

28. 46. ମିଶ୍ର, ମହେନ୍ଦ୍ର କୁମାର ପଶ୍ଚିମ ଓଡ଼ିଶାର ଲୋକ ସଂସ୍କୃତିରେ ମାତୃ– ଭିତ୍ତିକ ଚେତନାର ପ୍ରତି ଫଳନ–ଗିରିଝର– 14th year VOL- III - 1987 ( ନ.ନା ଦିଗନ୍ତ– ପୃ– ୭

29. 47. I bid P 7

30. 48. ବେହେରା, ଭୁବନେଶ୍ୱର ପ୍ରଫେସର– ଚିତ୍ତି ଓ ତା'ର ପୃଷ୍ଠପଟ– ସମ୍ବାଦ ବାର୍ଷିକ ବିଶେଷାଙ୍କ – 1987- P. 70-73

31. 49. Sahu N. K. Orissa Dist gazettears Kalahandi- P. 418


Digitized by srujanika@gmail.com

32. 50 ମିର୍ଦ୍ଧା, ହାଡ଼ିବନ୍ଧୁ, ଅଧ୍ୟାପକ – ପଶ୍ଚିମ ଓଡ଼ିଶାର ଲୋକ ସଂସ୍କୃତି : ଜାତୀୟ ଉତ୍ସବ ' ପୁଷ୍ପୁନି ' –ଉତ୍କଳପ୍ରସଙ୍ଗ ୩୭ଶ ଭାଗ ୫ମ ସଂଖ୍ୟା ଡ଼ିସେମ୍ବର, ୧୯୮୦ – ପୃ ୧୧ ଓ ୧୨

51. ସିଂହଦେବ, ଜିତାମିତ୍ର କଳାହାଣ୍ଡି ଜିଲ୍ଲାରେ ପ୍ରତତାତ୍ତ୍ୱିକ ସୂକ୍ଷ୍ମାନୁସନ୍ଧାନ ଆବଶ୍ୟକତା ପଂଚପାଖୁଡ଼ା ୪ର୍ଥ ବର୍ଷ ୯ ଓ ଦଶମ ସଂଖ୍ୟା 9 10-80 ଶାରଦୀୟ ବିଶେଷାଙ୍କ, କଳାହାଣ୍ଡି ସଂକଳନ- – P 7 88

52. ସିଂହଦେବ, ଜିତାମିତ୍ର- କାଳୁଣ୍ଡମଣ୍ଡଳ ଏକ ଅଧ୍ୟୟନ- ଡିଚିଷିର ୧୯୮୬ 14th year VOL I – P. 15+16

53. Vide Sc. 51 - P. 8

Digitized by srujanika@gmail.com

# ।। କଳାହାଣ୍ଡିର କଳା ଓ ଭାସ୍କର୍ଯ୍ୟ ।।

ପ୍ରଫୁଲ୍ଲ କୁମାର ସାମନ୍ତରାୟ



କଳା ହେଉଛି ମଣିଷର ସୃଜନଶୀଳ ଆକାଂକ୍ଷାର ସାକାର ପରି ପ୍ରକାଶ । ନିଜ ସୃଷ୍ଟି କଳାକୁ ଅଧିକ ବୁଦ୍ଧିମନ୍ତ କରିବାକୁ କଳାକାର ଆପ୍ରାଣ ଉଦ୍ୟମ କରିଥାଏ । ସେଥି ପାଇଁ ନିଜ ପରିବେଶ ଉପଲବ୍ଧ ରଙ୍ଗ ଓ ଅନ୍ୟାନ୍ୟ ଆନୁସଙ୍ଗିକ ସୌନ୍ଦର୍ଯ୍ୟ ବର୍ଦ୍ଧନକାରୀ ଉପକରଣର ଉପଯୋଗ କରିଥାଏ । କଳାକାରର ସେହି ଐକାନ୍ତିକ ନିଷ୍ଠା କଳାକୁ କାଳଜୟୀ କରିଥାଏ । କିନ୍ତୁ ଏକଥା ସତ୍ୟ ଯେ କଳାକୃତି ସର୍ବଦା ସମାଜ ତଥା ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇଥାଏ ଓ ସଂସ୍କୃତିର ଆଧାର ଭାବେ ଉପସ୍ଥାପିତ ହୁଏ । କାରଣ କଳା ସୃଷ୍ଟି କରୁଥିବା କଳାକାରର କଳ୍ପନା ପରିଧି ବହୁ ଭାବରେ ସମାଜଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଉଦାହରଣ ସ୍ୱରୂପ ଲକ୍ଷ ଲକ୍ଷ ବର୍ଷ ତଳେ ସମାଜକୁ ଚିହ୍ନି ନଥିବା ଲଙ୍ଗଳା ମଣିଷ ନିଜର ଉଦର ପୂର୍ତ୍ତି ନିମିତ୍ତ ଜଙ୍ଗଲର ଫଳମୂଳ ସଂଗ୍ରହ କରୁଥିଲା ବା ପଶୁପକ୍ଷୀ ଶିକାର କରୁଥିଲା । ଏହା ଏକ ଅତ୍ୟନ୍ତ ଆୟାସ ସାଧ୍ୟ ଘଟଣା ଥିଲା । ବହୁ ସମୟ ପଶୁ ବା ପକ୍ଷୀ ପଛରେ ଘୂରି ଘୂରି କ୍ଳାନ୍ତ ହୋଇ ଯାଉଥିବା ମଣିଷ ପର୍ବତ ଗୁହାରେ ବିଶ୍ରାମ କରୁଥିଲା । ଏହି ଗୁହା କାନ୍ଥରେ ନିଜକୁ ତଥା ନିଜର ପରିବେଶକୁ ରୂପାୟିତ କରିବାର ପ୍ରୟାସ କରୁଥିଲା । ଯାହାଫଳରେ ଗଢି ଉଠିଥିଲା ପ୍ରାଗ ଐତିହାସିକ ଯୁଗୀୟ ଅନେକ ଗୁମ୍ଫାଚିତ୍ର । କେବଳ ସେତିକି ନୁହେଁ ନିଜର ଜୀବନ ଧାରଣର ମାର୍ଗକୁ ସାବଲୀଳ କରିବା ପାଇଁ କ୍ରମେ ମଣିଷ ପ୍ରସ୍ତରର ହାତ ହତିଆର ନିର୍ମାଣ କଲା । ପୁରାତନ ପ୍ରସ୍ତର ଯୁଗର ଏହି ପ୍ରସ୍ତର ଉପକରଣମାନ ପ୍ରାୟତଃ ବୃହଦାକାର ଅମାର୍ଜିତ ଓ କର୍କଶ ଥିଲା । କିନ୍ତୁ ଚିନ୍ତାଶୀଳ ମଣିଷ ପରେ ନିଜର ଉପକରଣ ମାନଙ୍କୁ ପରେ ଅଧିକ ସୁନ୍ଦର କରିବାକୁ ଇଚ୍ଛା କରିଛି ଓ ତାହାର କର୍ମରେ ସଫଳୀକୃତ ହୋଇଛି ମଧ୍ୟ କ୍ରମେ ସମାଜର ପ୍ରଗତି ସହ ନାନ୍ଦନିକ ଦୃଷ୍ଟିଭଙ୍ଗୀ ସମ୍ପ୍ରସାରିତ ହୋଇ ଯାଇଛି ଓ କଳାର ଇତିହାସ ସାଟିଣୀ ପୁରୋଯାତ୍ରା ଆରମ୍ଭ କରିଛି । ଏକଥା ସତ୍ୟ ଯେ ଆଦି ମାନବ ପୁରାତନ ପ୍ରସ୍ତର ଯୁଗରେ ନିଜର ଦୈନନ୍ଦିନ ଆବଶ୍ୟକତା ପରିପୂରଣ ନିମିତ୍ତ ପ୍ରସ୍ତର ଅସ୍ତ୍ର ଶସ୍ତ୍ର ନିର୍ମାଣ କରିଥିଲା । କିନ୍ତୁ ପରେ ସୌନ୍ଦର୍ଯ୍ୟ ଲିପ୍ସୁ ଶିଳ୍ପୀ ଏହାର କାର୍ଯ୍ୟକ୍ଷମ ଶକ୍ତିକୁ ଅପରିବର୍ତ୍ତିତ ରଖି ଅଥବା ଏହାର ଅଭିବୃଦ୍ଧି ଘଟାଇବା ସଙ୍ଗେ ସଙ୍ଗେ ଉପକରଣ ଗୁଡ଼ିକ ଅଧିକା ଆକର୍ଷଣୀୟ କରିବାରେ ଲାଗିଲା ଓ ପାହାଡ଼ ଗୁମ୍ଫାରେ ଆଙ୍କୁଥିବା ଚିତ୍ରରେ ରଙ୍ଗ ଦେଇ ତାହାକୁ ଅଧିକ

Digitized by srujanika@gmail.com

ମନୋରମ କରିବାର ପ୍ରୟାସ କଲା । କ୍ରମେ ସଭ୍ୟତ ର ବିବର୍ତ୍ତନ ସହ ମନୁଷ୍ୟ ପ୍ରସ୍ତରରେ ବିଭିନ୍ନ ସରସ ସୁନ୍ଦର ଉପକରଣ ମର୍ତ୍ତି ଆଦି ଗଢି ଶିଖିଲା । କେବଳ ପଥର ନୁହେ କେତ ସହ ବିଭିନ୍ନ ଧାତୁର ବ୍ୟବହାର ସମ୍ବନ୍ଧୀୟ ଜ୍ଞାନ ଅର୍ଜନ କଲା । ମନୁଷ୍ୟର ଏହି କ୍ରମ ବର୍ଦ୍ଧିଷ୍ଣୁ କଳାକୃତି ପରିପ୍ରକାଶର ଆଗ୍ରହ ବିଭିନ୍ନ ଅନବଦ୍ୟ ଭାସ୍କର୍ଯ୍ୟ ତଥା ମନ୍ଦିର ଆଦି ନିର୍ମାଣ କରିବାକୁ ତାହାକୁ ପ୍ରେରଣା ପ୍ରଦାନ କଲା ।

କଳାହାଣ୍ଡି ଶବ୍ଦର ଆକ୍ଷରିକ ଅର୍ଥ ହେଉଛି କଳାର ହାଣ୍ଡି ବା ପାତ୍ର । ବାସ୍ତବରେ କଳାହାଣ୍ଡି ଜିଲ୍ଲାର ଘଞ୍ଚ ଅରଣ୍ୟାନୀ, ସୁଉଚ୍ଚ ପର୍ବତ ଶ୍ରେଣୀ, ପୂଣ୍ୟତୋୟା ନିର୍ଝରିଣୀ, ମୂଲ୍ୟବାନ ଖଣିଜ ସଂପଦ ତଥା ଅରଣ୍ୟ ସଂପଦ ଓ ସର୍ବୋପରେ କଳାହାଣ୍ଡିର ଅଧିବାସୀଙ୍କ ସରଳ ଜୀବନ ଯାତ୍ରା ଏହାକୁ ବିଶ୍ୱ ବକ୍ଷରେ ଏକ ପ୍ରାକୃତିକ କଳାର ପାତ୍ର ରୂପେ ଗଢି ତୋଳିଛି । କଳା କ୍ଷେତ୍ରରେ କଳାହାଣ୍ଡିର ଏକ ସମୃଦ୍ଧ ପରମ୍ପରା ରହିଅଛି । କଳାହାଣ୍ଡି ମାଟିରେ କାହିଁ କେଉଁ ପ୍ରାଗ୍ଐତିହାସିକ ଯୁଗରେ କଳାପ୍ରୀୟ ମଣିଷ ନିଜର କଳାକୃତକୁ ଚିତ୍ରାୟିତ କରିବାର ଉଦାହରଣ ରହିଅଛି । ସେଥିପାଇଁ କେହି କେହି ଗବେଷକ ହାଣ୍ଡି ଶବ୍ଦକୁ ବଜାର ଅର୍ଥରେ ଗ୍ରହଣ କରି କଳାହାଣ୍ଡିକୁ କଳା ସାମଗ୍ରୀର ଏକ ବଜାର (Market place for art objects ) ରୂପେ ଗ୍ରହଣ କରୁଛନ୍ତି ।

ବାସ୍ତବରେ କଳାହାଣ୍ଡି କଳାର ପସରାଟିଏ । କଳାହାଣ୍ଡିର ପର୍ବତ ଗାତ୍ରରେ ତିନିଗୋଟି ପ୍ରସ୍ତର ଯୁଗୀୟ 'ଗୁମ୍ଫା ଚିତ୍ରର ସନ୍ଧାନ କରଯାଇଛି । ପ୍ରଥମ ଗୁମ୍ଫା ଚିତ୍ରଟି ଗୁଡହାଣ୍ଡି ପାହାଡ ଗାତ୍ରରେ ଅଛି ଉକ୍ତ ଚିତ୍ରଟି ସଂକ୍ରାନ୍ତରେ ଐତିହାସିକ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ପ୍ରଥମେ ବ୍ୟାପକ ଆଲୋଚନା କରିଥିଲେ । (୨) ଉକ୍ତ ଗୁମ୍ଫା ଚିତ୍ରଟିର ଆକର୍ଷଣୀୟ ଦିଗଟି ହେଉଛି ଗୋଟିଏ ପ୍ରସ୍ତର ଉପକରଣ ଦ୍ୱାରା ଜଣେ ଶିକାରୀ ଗୋଟିଏ ହରିଣକୁ ଶିକାର କରୁଛନ୍ତି । ଏତଦ୍‌ଭିନ୍ନ ବିଭିନ୍ନ ଜ୍ୟାମିତିକ ଆକୃତି ବିଶିଷ୍ଟ ଚିହ୍ନ ଯଥା ତ୍ରିଭୁଜ, ବର୍ଗକ୍ଷେତ୍ର ଆୟତକ୍ଷେତ୍ର, ଗୋଲକ ଓ ଚକ୍ର ଆଦିର ଚିହ୍ନ ମଧ୍ୟ ରହିଅଛି । ଚିହ୍ନଟିରୁ ପଶୁଶିକାର କରିବାର ଭଙ୍ଗୀ, ଶିକାର ସମୟରେ ଶିକାର କରଯାଉଥିବା ପ୍ରାଣୀର ମନୋଭାବ ଓ ସର୍ବୋପରି ନିକଟରେ ଥିବା ଅଗ୍ନିର ଚିତ୍ରରୁ ଏହା ଜଣାପଡୁଛି ଯେ ସେସମୟରେ ମଣିଷ କଞ୍ଚାମାଂସ ପରିବର୍ତ୍ତେ ମାଂସକୁ ପୋଡ଼ି ଖାଇବା ଶିଖିଥିଲା । ଏହି ଚିତ୍ରରେ ଢାଲ ରଙ୍ଗର ବ୍ୟବହାର କରଯାଇଛି । ୩) ମୋଟ ଉପରେ ଚିତ୍ରଟିରେ ଶିକାରୀ ମଣିଷଟିର ପାରିପାର୍ଶ୍ୱିକ ଚିତ୍ର ଉପସ୍ଥାପିତ କରଯାଇଛି । କିନ୍ତୁ ଖଡ଼ିଆଳ ଠାରୁ ୯ କିମି ଦୂର ଚିଞ୍ଚଗାଁ ନିକଟସ୍ଥ 'ଯୋଗୀମଠ' ଗୁମ୍ଫା ଚିତ୍ରଟି ଅଙ୍କନ ବେଳକୁ ମଣିଷ କେବଳ ଶିକାର ଉପରେ ନିର୍ଭରଶୀଳ ହୋଇ ରହିନାହିଁ । ଏଥିରେ ଥିବା ଗାଈ ସହିତ ବାଛୁରୀର ଚିତ୍ର ଓ କେତେକ

Digitized by srujanika@gmail.com

ଉପକରଣରୁ ମଣିଷ ସେ ବେଳକୁ କୃଷିକର୍ମ ଶିଖିଥିବାର ପ୍ରମାଣ ମିଳୁଛି । କିନ୍ତୁ ଏହିଚିତ୍ରରେ ଥିବା ଗାଈ ବାଛୁରୀ ଓ ଷଣ୍ଢ ଚିତ୍ରକୁ ଏକ ପରବର୍ତ୍ତୀ କାଳୀନ ସଂଯୋଗ ବୋଲି ଶ୍ରୀଯୁକ୍ତ ପ୍ରଧାନ ସନ୍ଦେହ କରୁଛନ୍ତି (୪) ଓ ମୂଳ ଚିତ୍ରଟି ପୁରାତନ ପ୍ରସ୍ତର ଯୁଗର ବୋଲି ଅନୁମାନ କରୁଛନ୍ତି । କିନ୍ତୁ ବାସ୍ତବରେ ତାହାଙ୍କର ଏହି ଅନୁମାନଟି ଅମୂଳକ ମନେହୁଏ । କାରଣ ପ୍ରତ୍ୟେକ ଚିତ୍ରରେ ବ୍ୟବହୃତ ହୋଇଥିବା ରଙ୍ଗର ସାମ୍ୟ ରହିଥିବାରୁ ତଥା ଚିତ୍ର-ଟିର ପରିବେଷଣ ଭଙ୍ଗୀରେ ଏକତା ଥିବାରୁ ଏହି ଚିତ୍ରଟି ଯେ ପରବର୍ତ୍ତୀ କାଳୀନ ଏଥିରେ ଦ୍ୱିମତ ନାହିଁ । ଏଥିରେ ଥିବା ଷଣ୍ଢ, ଗାଈ ଓ ବାଛୁରୀକୁ ପଶୁପାଳନର ପ୍ରତୀକ ସ୍ୱରୂପ ତଥା ସମୁଦାୟ ଚିତ୍ରଟିକୁ ନୂତନ ପ୍ରସ୍ତର ଯୁଗର ବୋଲି ବହୁ ଐତିହାସିକ ଗ୍ରହଣ କରି ନେଲେଣି । (୫) ଏହି ଗୁମ୍ଫାଚିତ୍ରଟି ଖ୍ରୀ- ପୂ ୧୦ ହଜାର ବର୍ଷର ବୋଲି ଅନୁମାନ କରା-ଯାଇଛି । ଏହା ବ୍ୟତୀତ ସିନାପାଲି ବ୍ଲକ ଅନ୍ତର୍ଗତ ଘାଟଘୁମର ପାହାଡ କାନ୍ଥରେ ଥିବା ଚିତ୍ରଟି ପ୍ରାୟତଃ ଲିଭି ଲିଭି ଆସିଲାଣି । ଏଥିରେ ବ୍ୟବହୃତ ହୋଇଥିବା ରଙ୍ଗଟି ଯୋଗୀ-ମଠ ଚିତ୍ର ଅନୁରୂପ ଅର୍ଥାତ୍ ଗେରୁ ରଙ୍ଗ । ସୁତରାଂ ଏହି ଚିତ୍ରଟିକୁ ମଧ୍ୟ ନୂତନ ପ୍ରସ୍ତର ଯୁଗର ବୋଲି ମନେ କରାଯାଉଛି । (୬)

ଏହି ଗୁମ୍ଫା ଚିତ୍ରମାନ ନିଛକ କଳା ପ୍ରୀତିରୁ ଉଦ୍ଭବ ହୋଇନଥିଲା । କଳାକାଂକ୍ଷା ସହ ଦୈନନ୍ଦିନ ଆବଶ୍ୟକତାର ଚିହ୍ନଟ ନିମିତ୍ତ ଏଥିରେ ପ୍ରୟାସ ହୋଇଥିଲା । ବିଶେଷତଃ ମଣିଷର କୌଣସି ଆନନ୍ଦ ମୁଖର ଶିକାରକୁ ମନେ ରଖିବାକୁ, ଅଥବା ଅରଣ୍ୟର ଶକ୍ତ ଜୀବଜନ୍ତୁଙ୍କୁ ଚିହ୍ନେଇବାରେ ବା ଶିକାର କୌଶଳ ଦେଖେଇବା ପାଇଁ ଅବସର ମୁହୂର୍ତ୍ତରେ ଶିଳ୍ପୀ ଏଭଳି ଚିତ୍ର ଅଙ୍କନ କରିଥିଲା । ଅବଶ୍ୟ ଏହି ଚିତ୍ର ମାନଙ୍କ ଦ୍ୱାରା ଅନ୍ୟମାନଙ୍କୁ ପ୍ରଭାବିତ କରିବାର ଚେଷ୍ଟା ଏଥିରେ ନଥିଲା । ପରେ ପ୍ରକୃତିର ବିଭିନ୍ନ ବିଭବକୁ ଭୟ ତଥା ଭକ୍ତି କରିବା ଅବସରରେ ଏହିଭଳି ଚିତ୍ର ବା ପ୍ରତିମା ଅଙ୍କନ ଉପାସନା ପ୍ରଥା ସହ ସାମିଲ ହୋଇ ଲୋକ ଉପଚାର ସହ ଅଙ୍ଗାଙ୍ଗୀ ହୋଇଗଲା ।

ପ୍ରସ୍ତର ଯୁଗୀୟ ଗୁମ୍ଫା ଚିତ୍ରମାନ ମୁଖ୍ୟତଃ ରେଖାକୃତି ଥିଲା । ଏହା ମଣିଷ ବା ଅନ୍ୟାନ୍ୟ ପ୍ରାଣୀର ଅବିକଳ ପ୍ରତିରୂପ ନଥିଲା । ସେ ସମୟରେ ଚିତ୍ର ଅଙ୍କନ ପାଇଁ ଆବଶ୍ୟକୀୟ ସୂକ୍ଷ୍ମ ଉପକରଣର ଅଭାବ ମୂର୍ତ୍ତିଗୁଡ଼ିକୁ ଏଭଳି ରହିବାପାଇଁ ବାଧ୍ୟ କରିଥିଲା । ହେଲେ ବି ଏହି ଚିତ୍ର ମାଧ୍ୟମରେ ସେ କାଳର ଶିଳ୍ପୀ ନିଜର ଜୀବନ ଧାରଣର ଝଲକ ପ୍ରକାଶ କରିବାରେ ସମର୍ଥ ହୋଇପାରିଛି । କଳାହାଣ୍ଡିରୁ ଆବିଷ୍କୃତ ତିନିଗୋଟି ଗୁମ୍ଫାଚିତ୍ର ମଧ୍ୟରୁ କୌଣସିଟିରେ ନାରୀ ଚିତ୍ର ନାହିଁ । ପୁରାତନ ପ୍ରସ୍ତର ଯୁଗ ଶେଷ ପର୍ଯ୍ୟନ୍ତ ପ୍ରାୟତଃ ଚିତ୍ର ବା ଉପକରଣ ଆଦି ନିର୍ମାଣ କ୍ଷେତ୍ରରେ ଏକ ପ୍ରାକୃତିକ ଧାରା ରହିଥିଲା । ଏପରିକି ପୁରା-ତନ ପ୍ରସ୍ତର ଯୁଗରୁ ନୂତନ ପ୍ରସ୍ତର ଯୁଗକୁ ଯିବା ମଧ୍ୟବର୍ତ୍ତୀ ସମୟରେ ମଧ୍ୟ ଏହି ଧାରାରେ

Digitized by srujanika@gmail.com

କୌଣସି ପରିବର୍ତ୍ତନ ଘଟିନାହିଁ । ନୂତନ ପ୍ରସ୍ତର ଯୁଗରେ ପ୍ରଥମ କରି ରିତୀ (Style) ରେ ପରିବର୍ତ୍ତନ ଘଟିଲା । (୭) ଏଥିରେ ଆଖିଗୁଡ଼ିକୁ ଦେଖେଇ ଦେବାପାଇଁ ଦୁଇଟି ବିନ୍ଦୁ, ପୁରୁଷକୁ ଚିହ୍ନେଇବା ପାଇଁ ତା ହାତରେ କୌଣସି ହତିଆର, ଅଥବା ନାରୀକୁ ଚିହ୍ନେଇବା ପାଇଁ ବକ୍ଷରେ ଦୁଇଟି କ୍ଷୁଦ୍ର ବିନ୍ଦୁ ଦିଆଗଲା । ଏପରିକି ଗୋଟିଏ ବା ଦୁଇଟି ଗାର ଉପରେ ଗୋଲକ ଟିଏ ରହିଲେ ତାହାକୁ ମନୁଷ୍ୟ ବୋଲି ଗ୍ରହଣ କରି ନିଆଗଲା । ଖଡ଼ିଆଳ ସଂଗ୍ରହାଳୟରେ ଥିବା ଏକ କ୍ଷୁଦ୍ର ମୃଣ୍ମୟ ନାରୀ ମୂର୍ତ୍ତୀରେ ଏହି ସମୟର ଛାପ ରହିଥିବାର ପରିଦୃଷ୍ଟ ହୁଏ । ପ୍ରସ୍ତର ଯୁଗରେ କଳାହାଣ୍ଡିର ଉଲ୍ଲେଖନୀୟ ଦିଗଟି ହେଉଛି ସେ କାଳରେ ଏଠାକାର ଅଧିବାସୀ ଗୁମ୍ଫା ଚିତ୍ରକୁ ରଙ୍ଗ କରିବା ଶିଖିଥିଲେ । ବିଶେଷତଃ କଳାହାଣ୍ଡିର ସମସ୍ତ ଗୁମ୍ଫା ଚିତ୍ରରେ ଉଜ୍ଜ୍ୱଳ ଗେରୁରଙ୍ଗ ବ୍ୟବହାର କରଯାଇଛି ।

କେବଳ ଗୁମ୍ଫା ଚିତ୍ର ନୁହେଁ କଳାହାଣ୍ଡିରୁ ଅନେକ ପ୍ରସ୍ତର ଯୁଗୀୟ ଉପକରଣର ମଧ୍ୟ ସନ୍ଧାନ କର ଯାଇଛି । ବିଶେଷତଃ କଳାହାଣ୍ଡିର ଚିଲପା ଓ ମାରଗୁଡ଼ା ଉପତ୍ୟକା ତଥା ଅନ୍ୟାନ୍ୟ ଅଞ୍ଚଳ ମାନଙ୍କରୁ ମିଳିଥିବା ଉପକରଣ ମାନଙ୍କର ଗଠନ ରିତୀ ଅପେକ୍ଷା– କୃତ ମାର୍ଜିତ ମନେହୁଏ । (୮) ଖଡ଼ିଆଳ ସଂଗ୍ରହାଳୟରେ ଏକ ପ୍ରସ୍ତର ଯୁଗୀୟ ଗଦା ରହିଛି ଯାହାର ନିର୍ମାଣ କୌଶଳ ଅତ୍ୟନ୍ତ କୌତୂହଳୋଦ୍ଦୀପକ । ଦୁଇମୁଣ୍ଡକୁ ଧରିବାକୁ ସରୁ କରଯାଇଛି ଯାହା ଫଳରେ ଧାବମାନ ଜନ୍ତୁ ଉପରକୁ ଏହା ସହଜରେ ନିକ୍ଷେପ କରିହେବ । ଏହା ବ୍ୟତୀତ ସମଗ୍ର କଳାହାଣ୍ଡିରୁ ବହୁଳଭାବେ ମୁଦ୍ରିକା ପ୍ରସ୍ତରମାନ ମିଳୁଅଛି । ଏହି ମୁଦ୍ରିକା ପ୍ରସ୍ତରମାନ ବିଭିନ୍ନ ଆକାରର । ଅର୍ଦ୍ଧ ଖୋଦିତ ଅବସ୍ଥାରେ ଥିବା ଗୋଟିଏ ମୁଦ୍ରିକା ପ୍ରସ୍ତର (Ring stone) ମଧ୍ୟ ଖଡ଼ିଆଳ ସଂଗ୍ରହାଳୟରେ ରଖାଯାଇଛି । ଏହାକୁ ପ୍ରସ୍ତର ଯୁଗୀୟ ଏକ କୃଷି ଉପକରଣ, ଉତ୍ପାଦନ ଉପଗ୍ରର ସହ ସଂଯୁକ୍ତ ଏକ ବସ୍ତୁ ବା ଓଜନର ଏକକ ଭାବେ ବ୍ୟବହୃତ ହେଉଥିଲା ବୋଲି ପଣ୍ଡିତମାନେ ମତ ପୋଷଣ କରିଥାନ୍ତି । ଅନ୍ୟ କେତେକଙ୍କ ମତରେ ଏହି ମୁଦ୍ରିକା ପ୍ରସ୍ତର ମାନ ହେଉଛି ମାତୃ ଜନନେନ୍ଦ୍ରୀୟର ପ୍ରତୀକ ସୁତରାଂ ଏହା ଶାକ୍ତ ଉପାସନାର ପ୍ରାଚୀନତମ ସ୍ମାରକୀ । କଳାହାଣ୍ଡିର ମାରଗୁଡ଼ା ଉପତ୍ୟକାରୁ ଗୋଟିଏ ପ୍ରସ୍ତର ଯୋନି ଅବିଷ୍କାର କରଯାଇଛି । ସମ୍ପ୍ରତି ଏହା ଶ୍ରୀ ଜିନାମିତ୍ର ସିଂହଦେବଙ୍କ ବ୍ୟକ୍ତିଗତ ସଂଗ୍ରହାଳୟରେ ରକ୍ଷିତ ଅଛି । ଏହି ପ୍ରତ୍ନ ସଂପଦଟିର ପରିସୀମା ୨୩ ସେ-ମି ଓ ଏହାକୁ ମହେଞ୍ଜୋଦାର ସଭ୍ୟତା ସମକାଳୀନ ଏକ ସଂପଦ ବୋଲି ଶ୍ରୀ ସିଂହଦେବ ଦାବୀ କରନ୍ତି । (୯) ଉକ୍ତ ପ୍ରସ୍ତର ଯୋନି ଓଡ଼ିଶାର ଶାକ୍ତ ଧର୍ମ ଇତିହାସର ପ୍ରାଚୀନତମ ଅବଶେଷ ବୋଲି ମନେ କରାନ୍ତି । ପରନ୍ତୁ ଉକ୍ତ ପ୍ରସ୍ତର ଯୋନିର ଉନ୍ନତ କଳାକୌଶଳ ଓ ଗଠନଶୈଳୀ ଯୋଗୁଁ ସିନ୍ଧୁ ସଭ୍ୟତା କାଳରେ ଏଭଳି ଏକ ଉନ୍ନତ ମାନର ନିର୍ମାଣ କୌଶଳ ଆୟତ୍ତ ଯାଇ ହୋଇ

Digitized by srujanika@gmail.com

ଥିବା ବିଷୟରେ କେତେକ ଗବେଷକ ସନ୍ଦିହାନ ହୋଇଥାନ୍ତି । ପରେ ଏହା ଉପରେ ପଙ୍ଖାନୁପୁଙ୍ଖ ଗବେଷଣା ହିଁ ଏହାର ଉପଯୁକ୍ତ କାଳ ନିର୍ଣ୍ଣୟ କରିବାରେ ସକ୍ଷମ ହୋଇ ପାରିବ ।

ଆର୍ଯ୍ୟମାନଙ୍କ ଆଗମନ ପରେ ପ୍ରାଥମିକ ଅବସ୍ଥାରେ ପ୍ରତିମା ଗଠନ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇ ନଥିଲା । ପ୍ରକୃତିର ବିଭିନ୍ନ ବିଭବ ଯଥା ନଦୀ, ସମୁଦ୍ର, ବୃକ୍ଷ, ବିଭିନ୍ନ ପଶୁପକ୍ଷୀ ଆକାଶ ପୃଥିବୀ, ଅଗ୍ନି, ବାୟୁ ବୃଷ୍ଟି ଇତ୍ୟାଦିଙ୍କୁ ଉପାସନା କରାଗଲା କିନ୍ତୁ ଏହି ବୃହତ୍ତର ସତ୍ତାକୁ ଅନୁଭବ କରିବାକୁ ସମାଜର ନିମ୍ନ ବର୍ଗର ଲୋକେ ସକ୍ଷମ ନହେବାରୁ ତାଙ୍କ ପାଇଁ ପ୍ରତିମା ଗଠନର ଆବଶ୍ୟକତା ଅନୁଭୂତ ହେଲା । ସେଥିପାଇଁ କୁହାଗଲା– "ଅଜ୍ଞାନମ୍ ଭବନାର୍ଥାୟ ପ୍ରତିମା ପରି କଳ୍ପିତା" । (୧୦) ଭାରତ ବର୍ଷରେ ସିନ୍ଧୁ ସଭ୍ୟତା ପରଠାରୁ ମୌର୍ଯ୍ୟମାନଙ୍କ ଆଗମନ ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀ କାଳର କୌଣସି ଉଲ୍ଲେଖନୀୟ କଳା ଅବଶେଷ ପ୍ରାପ୍ତ ହୋଇନାହିଁ । ସିନ୍ଧୁ ସଭ୍ୟତା କାଳରେ ଚରମ ବିକାଶ ଲାଭ କରି– ଥିବା ଏକ ସଂସ୍କୃତି ପରେ ସଂପୂର୍ଣ୍ଣ ଲୋପପାଇ ଯାଇଥିବା କଥା ବିଶ୍ୱାସ ହୁଏ ନାହିଁ । ହୁଏତ ଏହି ମଧ୍ୟବର୍ତ୍ତୀ କାଳୀନ ସଭ୍ୟତାର କଳା ଏ ଯାବତ୍ ଲୋକ ଲୋଚନକୁ ଆସି ପାରି ନାହିଁ ଅଥବା ସେ ସମୟର କଳା ସାମଗ୍ରୀ ଓ ପ୍ରତିମା ଆଦି କୌଣସି ଅସ୍ଥାୟୀ ଉପାଦନ ଯଥା କାଠ, ମାଟି ଇତ୍ୟାଦି ଦ୍ୱାରା ନିର୍ମିତ ହେଉଥିବାରୁ ତାହା ଧ୍ୱଂସ ହୋଇ– ଯାଇଛି । (୧୧) କିନ୍ତୁ ଠିକ୍ ପରେ ପରେ ମୂର୍ତ୍ତି ଗଠନ ତଥା ଉପାସନାର ଦୃଷ୍ଟିଭଙ୍ଗୀ ପରିବର୍ତ୍ତିତ ହୋଇଗଲା । ଭଗବତ ରଚନା ବେଳକୁ ମୂର୍ତ୍ତିପୂଜାଟି ଏକ ଗୌରବାବହ କଟଣା ରୂପେ ସ୍ୱୀକୃତି ଲାଭ କରିଥିଲା ଓ ଏହା ସଂକ୍ରାନ୍ତର ପୂଜାରୀ ରୂପେ ବିବେଚନା କରାଯାଉଥିଲା ଓ ସମାଜର ଉପର ଶ୍ରେଣୀରେ ସୀମାବଦ୍ଧ ଥିଲା । ସେତେବେଳେ ଅଧିକାଂଶ ମୂର୍ତ୍ତି କାଷ୍ଠରେ ନିର୍ମିତ ହେଉଥିଲା । (୧୨) କିନ୍ତୁ ପରେ ପରେ ମୂର୍ତ୍ତିମାନଙ୍କୁ ଅଧିକ ସୁନ୍ଦର ତଥା ଦୀର୍ଘ ସ୍ଥାୟୀ କରିବାର ଚେଷ୍ଟା ହେଲା । ଗୁପ୍ତ ରାଜତ୍ୱ ବେଳକୁ ମୂର୍ତ୍ତି ଗଠନରେ ବିଶେଷ ଉନ୍ନତି ପରିଲକ୍ଷିତ ହେଲା ଓ ମୂର୍ତ୍ତିପୂଜା ସମାଜର ପ୍ରତ୍ୟେକ ସ୍ତରରେ ପରିବ୍ୟାପ୍ତ ହୋଇଗଲା । ମୂର୍ତ୍ତିପୂଜା ସପକ୍ଷରେ କୁହାଗଲା–

"ଚିନ୍ମୟସ୍ୟା ଦ୍ୱିତୀୟସ୍ୟ ନିଷ୍କଳସ୍ୟା ଶରୀରୀଣଃ
ଉପାସକାନାଂ କାର୍ଯ୍ୟାର୍ଥେ ବ୍ରହ୍ମାଣୋ ରୂପ କଳ୍ପନା ।" (୧୩)

ମୂର୍ତ୍ତି ପୂଜାର ବ୍ୟାପକ ପ୍ରସାର କାଳରେ ଏହା କେବଳ ପୂର୍ଣ୍ଣାଙ୍ଗ ମୂର୍ତ୍ତି ପୂଜା ମଧ୍ୟରେ ସୀମାବଦ୍ଧ ରହିଲାନାହିଁ । ଅସ୍ପଷ୍ଟ ପ୍ରତୀକମାନ କ୍ରମେ ସ୍ପଷ୍ଟ ହୋଇ ଉଠିଲେ । ଏପରିକି ଇଷ୍ଟଙ୍କର ବିଭିନ୍ନ ଅବୟବମାନଙ୍କୁ ପବିତ୍ର ଭାବରେ ଗ୍ରହଣ କରି ତହିଁର ଉପାସନା ମାଧ୍ୟ-

Digitized by srujanika@gmail.com

ମରେ ଇଷ୍ଟକୁ ସନ୍ତୁଷ୍ଟ କରିବାର ପ୍ରୟାସ ହେଲା । ଯାହା ଫଳରେ କେବଳ ମସ୍ତକ, ପାଦ, ହସ୍ତ, ଆଦିର ପୂଜା କରାଗଲା । କିନ୍ତୁ ଏଭଳି ପୂଜାର ପ୍ରଚଳନ ପୂର୍ବରୁ ଆର୍ଯ୍ୟେତର ସମ୍ପ୍ରଦାୟରେ ପ୍ରଜନନ ଶକ୍ତିର ପ୍ରତୀକ ସ୍ୱରୂପ ଲିଙ୍ଗ ଓ ଯୋନି ଉପାସନାର ମଧ୍ୟ ପ୍ରଚଳନ ଥିଲା । ସେମାନଙ୍କର ଅନୁକରଣରେ ଆର୍ଯ୍ୟମାନେ ଲିଙ୍ଗକୁ ମହାଦେବଙ୍କର ପ୍ରତୀକ ଓ ଯୋନିକୁ ମହାଦେବୀଙ୍କର ସ୍ୱରୂପ ଭାବରେ ଗ୍ରହଣ କରିନେଇ ସେହିଭଳି ଭାବରେ ପୂଜା-କଲେ । କଳାହାଣ୍ଡି ଜିଲ୍ଲାରେ ପାଦପୂଜା ବିଶେଷ ପ୍ରସାର ଲାଭ କରିଥିଲା । ଉପାସ୍ୟଙ୍କର ପଦ ବନ୍ଦନା କରିବା ତଥା ତାଙ୍କ ପଦ ଦେଶରେ ବିଲୀନ ହେବାକୁ ଭକ୍ତ ସର୍ବଦା କାମନା କରିଥାଏ ଓ ଇଷ୍ଟଙ୍କ ପଦ ଯୁଗଳକୁ ସଦା ସର୍ବଦା ନିଜର ମସ୍ତକ ଉପରେ କଳ୍ପନା କରି-ଥାଏ । ପାଦପୂଜା ସମାଜରେ ଠିକ୍ କେଉଁ ସମୟରେ ଅନୁପ୍ରବେଶ କରିଛି ତାହା କହି-ନହେଲେ ହେଁ ରାମାୟଣ ଯୁଗରେ ଭରତ, ରାମଚନ୍ଦ୍ରଙ୍କ ପାଦୁକା ପୂଜା କରିବା ଘଟଣା ଏ ପ୍ରକାର ଉପାସନାକୁ ଅଧିକ ଲୋକପ୍ରିୟ କରିବାରେ ସହାୟକ ହୋଇଛି । କେବଳ ବ୍ରାହ୍ମଣ ଧର୍ମରେ ନୁହେଁ ବୌଦ୍ଧ ଧର୍ମରେ ମଧ୍ୟ ଏପରି ଉପାସନାକୁ ଉତ୍ସାହିତ କରାଯାଇଛି । ସାଞ୍ଚି, ବୋଧଗୟା, ବେର୍‌ହୁଟ ଆଦି ସ୍ଥାନରେ ବୁଦ୍ଧଙ୍କ ଉପାସନା କେତେକ ଚିହ୍ନ ମାଧ୍ୟ-ମରେ ପ୍ରତୀକିତ ହେଉଅଛି । ବୁଦ୍ଧଙ୍କର ଉପସ୍ଥିତି ପାଇଁ ଗୋଟିଏ ଗଛ, ଚକ୍ର, ସ୍ତୁପ, ପାଦୁକା ଯୁଗଳ, ଛତ୍ର ଇତ୍ୟାଦି ଚିହ୍ନକୁ ମଧ୍ୟ ବ୍ୟବହାର କରାଯାଇଛି । (୧୪) ଏହି ଚିହ୍ନ ହିଁ ପୂର୍ଣ୍ଣ ବୁଦ୍ଧଙ୍କ ସହ ସମାନ ବୋଲି କଳ୍ପନା କରାଯାଇଛି । କଳାହାଣ୍ଡିର ବିଭିନ୍ନ ସ୍ଥାନରୁ ଏହି ଭଳି ପାଦପୂଜାର ସ୍ମାରକୀମାନ ମିଳୁଅଛି । ଖଡ଼ିଆଳ ନିକଟବର୍ତ୍ତୀ କୋଟିପଦର ଗ୍ରାମରୁ ଏକ ପ୍ରସ୍ତର ପଦ ଯୁଗଳ ମିଳିଅଛି । ପଦର ଚତୁର୍ଦ୍ଦିଗରେ ପଦ୍ମଫୁଲ ଘେରି ରହିଛି । ଠିକ୍ ସେହିପରି ମଦନପୁର ରାମପୁର ନିକଟବର୍ତ୍ତୀ ବୁଢ଼ାଗଡ ଠାରେ ପ୍ରସ୍ତରର ପ୍ରସ୍ଫୁଟିତ ପଦ୍ମଫୁଲ ମଧ୍ୟ ଦେଶରେ ପଦ ଯୁଗଳ ରହିଅଛି । ଏହା ବ୍ୟତୀତ ପେଣ୍ଡୋ-ରେନ୍, ଭୀମଖୋଜ ଆଦି ସ୍ଥାନରେ ମଧ୍ୟ ପାଦ ପୂଜା ହେଉଥିବାର ସଙ୍କେତମାନ ଅଦ୍ୟା-ବଧି ରହିଅଛି । ପ୍ରାଚୀନ ଦକ୍ଷିଣ କୋଶଳରେ ଶାସନ କରୁଥିବା ନଳରାଜାମାନେ ବିଷ୍ଣୁ ପାଦ ପୂଜା ପାଇଁ ସ୍ୱତନ୍ତ୍ର ମନ୍ଦିରର ବ୍ୟବସ୍ଥା କରିଥିଲେ । (୧୫) କଳାହାଣ୍ଡିରୁ ମିଳିଥିବା ପାଦପୂଜା ସଂକ୍ରାନ୍ତୀୟ ସ୍ମାରକୀମାନ ବୈଷ୍ଣବ ଧର୍ମ ସହ ସଂପର୍କକୃତ ଥିବା ମନେହୁଏ । ଠିକ୍ ସେହିପରି ଖଡ଼ିଆଳ ସଂଗ୍ରହାଳୟରେ ଥିବା ଦେବୀ ମସ୍ତକ, ସମଲେଶ୍ୱରୀ ରୂପେ ପୂଜା ପାଉଥିବା ଦେବୀ ତଥା ଥୁଆମୂଳ ରାମପୁରର ମାଣିକେଶ୍ୱରୀ ରୂପେ ପୂଜା ପାଉ-ଥିବା ମୂର୍ତ୍ତି କେବଳ ମସ୍ତକ ଅଟେ । ଉପାସନା ଇତିହାସରେ ସଂପୂର୍ଣ୍ଣ କଳେବର ପୂଜାର ପ୍ରଚଳନ ପ୍ରଥମେ ହୋଇଛି ନା ବିଭିନ୍ନ ଅବୟବ ଯଥା ମସ୍ତକପଦ ଇତ୍ୟାଦିର ପୂଜା ପ୍ରଥମେ ହୋଇଛି ତାହା ନିର୍ଣ୍ଣୟ କରିବା କଷ୍ଟକର ହେଲେ ହେଁ କଳାହାଣ୍ଡି ତଥା ଓଡ଼ି-ଶାରେ ପଶ୍ଚିମାଞ୍ଚଳରେ ପ୍ରସାର ଲାଭ କରିଥିବା ଅବୟବ ପୂଜା ପଦ୍ଧତି ଆର୍ଯ୍ୟେତର

Digitized by srujanika@gmail.com

ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇଥିବା ପ୍ରସଙ୍ଗକୁ ଏଡ଼ାଇ ଦିଆଯାଇ ନପାରେ ।

ଉପାସନା ଇତିହାସ ସାରିଣୀରେ, କ୍ରମେ ବହୁଦେବ ଦେବୀଙ୍କର ଉଦ୍‌ଭବ ହେଲା । ଗୋଟିଏ ଦେବତାଙ୍କୁ ଅନ୍ୟ ଦେବତାଙ୍କ ସହ ତୁଳନା କରାଗଲା । ଆସକ୍ତ ଭକ୍ତଗଣ ନିଜର ପ୍ରୀୟଦେବ ଦେବୀଙ୍କୁ ସର୍ବ ଶ୍ରେଷ୍ଠ ବୋଲି ଉଦ୍‌ଘୋଷଣା କଲେ । ଯାହାଫଳରେ ଭିନ୍ନ ଭିନ୍ନ ଧର୍ମୀୟ ସଂପ୍ରଦାୟ ମୁଣ୍ଡଟେକିଲା । ବୌଦ୍ଧ ଓ ଜୈନମାନଙ୍କ ପରି ଶୈବଶାକ୍ତ ବୈଷ୍ଣବ ଗାଣପତ୍ୟ ଆଦି ବିଭିନ୍ନ ସଂପ୍ରଦାୟର ଉଦ୍‌ଭବ ହେଲା ଓ ପ୍ରତ୍ୟେକ ଦେବତାଙ୍କ ମହିମାକୁ ଆଧାରକରି ମୂର୍ତ୍ତିମାନ ଗଠନ କରାଗଲା । କଳାହାଣ୍ଡିରୁ ବିଭିନ୍ନ ଦେବଦେବୀଙ୍କର ଯେଉଁ ମୂର୍ତ୍ତିମାନ ମିଳିଅଛି ସେଗୁଡ଼ିକ ଖ୍ରୀଷ୍ଟୀୟ ୪ର୍ଥ/୫ମ ଶତାବ୍ଦୀରୁ ଆରମ୍ଭ କରି ଅଷ୍ଟାଦଶମ ଶତାବ୍ଦୀ ମଧ୍ୟର ବୋଲି ଜଣାଯାଏ । ବିଶେଷତଃ ସମୁଦ୍ରଗୁପ୍ତଙ୍କ ଦାକ୍ଷିଣାତ୍ୟ ବିଜୟ ପରେ ଉକ୍ତ ଅଞ୍ଚଳରେ ଗୁପ୍ତ ପ୍ରଭାବ ଅନୁଭୂତ ହେଲା ଓ ଗୁପ୍ତ ପ୍ରଭାବରେ ସମଗ୍ର ଭାରତ ବର୍ଷରେ ମୂର୍ତ୍ତିଗଠନ ଶୈଳୀ ତଥା ମନ୍ଦିର ଗଠନ ପଦ୍ଧତିରେ ଚରମ ଉନ୍ନତି ପରିଲକ୍ଷିତ ହେଲା । ସୋମବଂଶୀ ରାଜାମାନଙ୍କ ରାଜତ୍ୱ ସମୟକୁ କଳା ଓ ସ୍ଥାପତ୍ୟ ଓଡ଼ିଶାର ପଶ୍ଚିମାଞ୍ଚଳରେ ଉନ୍ନତିର ଚରମ ସୀମାରେ ଉପନୀତ ହୋଇଥିଲା । କଳାହାଣ୍ଡିରେ ସୋମବଂଶୀ କାଳାଚୁରୀ ତଥା ଗଙ୍ଗବଂଶ କାଳୀନ ବହୁ ଉନ୍ନତ ମାନର ଭାସ୍କର୍ଯ୍ୟ ପରିଦୃଷ୍ଟ ହୋଇ-ହୋଇଥାଏ । କଳାହାଣ୍ଡିର ବିଭିନ୍ନ ସ୍ଥାନରେ ବହୁମୂର୍ତ୍ତି ଇତସ୍ତତଃଭାବେ ଅଦ୍ୟାବଧି ପଡ଼ି ରହିଛି ସେଗୁଡ଼ିକ ପୁଙ୍ଖାନୁପୁଙ୍ଖ ଆଲୋଚନା ଏ ପର୍ଯ୍ୟନ୍ତ କୌଣସି ଗବେଷକଙ୍କ ଦ୍ୱାରା ହୋଇନାହିଁ । ଏହି ପ୍ରବନ୍ଧଟିରେ ସମ୍ୟକଭାବେ କଳାହାଣ୍ଡିରେ ଥିବା ବିଭିନ୍ନ ସମ୍ପ୍ରଦାୟର ମୂର୍ତ୍ତିମାନଙ୍କ ସଂପର୍କରେ ଆଲୋକପାତ କରାଯାଉଛି । ଯାହାକି ପରବର୍ତ୍ତୀ ସମୟରେ ଆଗ୍ରହୀ ଗବେଷକ ମାନଙ୍କର କ୍ଷେତ୍ର ଅନୁଧ୍ୟାନ ନିମନ୍ତେ ମାର୍ଗ ପ୍ରଶସ୍ତ କରିବାରେ ସହାୟକ ହୋଇ ପାରିବ ।

ପ୍ରଥମରେ ଜୈନଧର୍ମ ଓ ଜୈନ କଳା ସ୍ଥାପତ୍ୟ କଥା ବିଚାରକୁ ନିଆଯାଉ । କେବଳ କଳାହାଣ୍ଡି କାହିଁକି ସମଗ୍ର ପଶ୍ଚିମ ଓଡ଼ିଶାରେ ବହୁଳ ଭାବେ ଜୈନ ମୂର୍ତ୍ତି ପରିଲକ୍ଷିତ ହୁଏ ନାହିଁ । ସୁତରାଂ ଜିନଧର୍ମ ଏ ଅଞ୍ଚଳରେ ବିଶେଷ ରାଜ କରୁଣା ଲାଭ କରିଥିବାର ମନେହୁଏ ନାହିଁ । ଯାହାହେଉ ମାରାଗୁଡ଼ା ଉପତ୍ୟକାରୁ ଏକ ଉପାସ୍ୟ ଜୈନ ମୂର୍ତ୍ତି ମିଳିଅଛି । ତାହା ବର୍ତ୍ତମାନ ଖରିଆର ଗେଡ଼ଘାଟ ଏକ ଜୈନ ମନ୍ଦିରରେ ପୂଜା ପାଉଛି । ମୂର୍ତ୍ତିଟିର ଉଚ୍ଚତା ୧୦ ଇଞ୍ଚ । ଏହା ମହାବୀରଙ୍କର ମୂର୍ତ୍ତି ଅଟେ ଓ ବକ୍ଷ ଦେଶରେ ଶ୍ରୀବତ୍ସ ଲାଞ୍ଛନ ଚିହ୍ନ ରହିଅଛି । ଠିକ ସେହିପରି ବିଶ୍ୱନାଥ ପୁର ନିକଟବର୍ତ୍ତୀ ତୋପିଗାଁ ନିକଟରେ ଏକ ବୃହତ୍‌କାୟ ସପ୍ତଫେଣ ଛାଦିତ କମନୀୟ ଜୈନ ମୂର୍ତ୍ତି ରହିଅଛି । ଏହି ମୂର୍ତ୍ତିଟିର ଗଠନ କୌଶଳ ନିଶ୍ଚିତ ରୂପେ ଉନ୍ନତମାନର ।

Digitized by srujanika@gmail.com

ଜୈନ ମୂର୍ତ୍ତିପରି ବୌଦ୍ଧମୂର୍ତ୍ତି ମଧ୍ୟ କଳାହାଣ୍ଡିରେ ବିଶେଷ ପରିଦୃଷ୍ଟ ହେଉନାହିଁ । ମାଗଗୁଡା ଉପତ୍ୟକାରୁ ଗୋଟିଏ ଭଗ୍ନ ବୁଦ୍ଧ ମୂର୍ତ୍ତି ଅଣାଯାଇ ବର୍ତ୍ତମାନ ଖଡ଼ିଆଳ ସଂଗ୍ରହାଳୟରେ ରଖାଯାଇଛି । ଇତ୍ୱର୍ଗା ନିକଟବର୍ତ୍ତୀ କାଣିବାହାଲ ଠାରେ ଏକ ବୁଦ୍ଧ–ମୂର୍ତ୍ତି ଡ଼ୋକରୀ ବୁଢ଼ି ଭାବରେ ପୂଜା ପାଉଛନ୍ତି । କଳାହାଣ୍ଡିର ମଦନପୁର ରାମପୁର ଅଞ୍ଚଳରେ ବିଶେଷତଃ ଫୁଲବାଣୀ ଜିଲ୍ଲାକୁ ଲାଗିଥିବା ଅଞ୍ଚଳ ମାନଙ୍କରେ କେତେକ ବୁଦ୍ଧ ମୂର୍ତ୍ତି ରହି ଥିବାର ସମ୍ବାଦ ମିଳିଛି । କେତେକ ସ୍ଥାନରେ ବୁଦ୍ଧ ମୂର୍ତ୍ତି ଡୋକରୀ ଦେବୀ ଭାବେ ପୂଜା ପାଉଥିବାର ପର୍ଶୁରାମ ମୁଣ୍ଡ ତାଙ୍କର ଏକ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି । ଅବଶ୍ୟ କଳାହାଣ୍ଡିରେ ପ୍ରବାହିତ ହେଉଥିବା ରାହୁଲ ନଦୀ ଓ ବଜ୍ରଗଡ ଆଦି ସ୍ଥାନ ବୌଦ୍ଧ ସଂସ୍କୃତି ସହ ସଂପର୍କୀକୃତ ଥିବାର ମନେହୁଏ । କିନ୍ତୁ ଏକଥା ମଧ୍ୟ ସତ୍ୟ ଯେ କଳାହାଣ୍ଡିରେ ବୁଦ୍ଧ ମୂର୍ତ୍ତି ସଂଖ୍ୟା ପ୍ରଚୁର ନୁହେଁ । ଅଶୋକଙ୍କ ପୃଷ୍ଠପୋଷକତାରେ ମୌର୍ଯ୍ୟକଳା ସମଗ୍ର ବିଶ୍ୱରେ ଖ୍ୟାତି ଲାଭ କରିଥିଲା ଓ ନିଜକୁ ଏକ ସ୍ୱତନ୍ତ୍ରମାନର ବୋଲି ପ୍ରମାଣିତ କରିଥିଲା । ଏପରିକି ଗ୍ରୀସର କଳାଠାରୁ ଏହା ଉତ୍କୃଷ୍ଟ ବୋଲି ପ୍ରମାଣିତ ହୋଇଥିଲା । କିନ୍ତୁ କଳାହାଣ୍ଡି ମୌର୍ଯ୍ୟ ଶାସନାନ୍ତର୍ଗତ ହୋଇ ନଥିବାରୁ ସମ୍ଭବତଃ ଏ ଅଞ୍ଚଳରେ ଉକ୍ତ ପ୍ରଭାବ ପରି ଲକ୍ଷିତ ହୋଇନାହିଁ । କଳାହଣ୍ଡିରେ ଉଭୟ ବୌଦ୍ଧ ଓ ଜୈନ ମୂର୍ତ୍ତିର ଅପ୍ରତୁଳତା ଏହି ଅଞ୍ଚଳକୁ ଶାସନ କରିଥିବା ରାଜ ପୁରୁଷ ଗଣ ବୌଦ୍ଧ ବା ଜୈନ ଧର୍ମାବଲମ୍ବୀ ହୋଇ ନଥିବାର ପ୍ରମାଣ ଦେଇଥାଏ ।

ସମଗ୍ର ଭାରତ ବର୍ଷରେ ଶୈବଧର୍ମ ବ୍ୟାପକଭାବେ ପ୍ରସାରିତ । କଳାହାଣ୍ଡିରେ ଶୈବ–ଧର୍ମର ତାନ୍ତ୍ରିକ ମୂର୍ତ୍ତିମାନ ବହୁଳ ସଂଖ୍ୟାରେ ରହିଛି । ଏହି ଜିଲ୍ଲାରେ ଶିବ ଉପାସନା ସଂକ୍ରାନ୍ତୀୟ ପ୍ରଥମ ଲୈଖିକ ବିବରଣୀଟି ହେଉଛି ମୋହନ ଗିରିର । ଉକ୍ତ ଶିଳାଲେଖ ଅନୁସାରେ ସେଠାକାର ଉପାସ୍ୟଦେବ ହେଉଛନ୍ତି ବ୍ୟାଧ ଭୈରବ ଓ ମନ୍ଦିରର ନିର୍ମାତା ଥିଲେ ମୁଦ୍‌ଗଳ ବଂଶୀ ରାଜା ସୀତଚନ୍ଦ୍ର । (୧୬) ମାଗଗୁଡ଼ା ଉପତ୍ୟକାରେ ଅଷ୍ଟଶମ୍ଭୁ ମନ୍ଦିର ଥିବାର ଐତିହାସିକ ପ୍ରମାଣ ମିଳିଅଛି ଓ ଏଠାରେ ବହୁଳ ଭାବେ ଶିବଲିଙ୍ଗ ରହି-ଥିଲା । ସେଥିମଧ୍ୟରୁ ଏକ ବିରାଟ ଶିବ ଲିଙ୍ଗକୁ ସମ୍ପ୍ରତି ନୂଆପଡା ଠାରେ ରଖାଯାଇଛି । ଏହା ବ୍ୟତୀତ ଉକ୍ତ ଉପତ୍ୟକାରେ ଅନ୍ୟ କେତୋଟି ଶିବଲିଙ୍ଗ ଇତଃସ୍ତତଃ ଭାବରେ ପଡ଼ିରହିଛି । କେବଳ ଶିବଲିଙ୍ଗ ନୁହେଁ ଶିବଙ୍କର ଭୈରବ ମୂର୍ତ୍ତି କଳାହାଣ୍ଡିର ଅନେକ ସ୍ଥାନରେ ରହିଅଛି । ଭୈରବ ମୂର୍ତ୍ତି ମିଳିବା କ୍ଷେତ୍ରରେ ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲା ତୁଳ-ନାରେ କଳାହଣ୍ଡିର ସ୍ଥାନ ନିଶ୍ଚିତ ରୂପେ ଶୀର୍ଷରେ । ଏପରିକି ଏବେ ମଧ୍ୟ କଳାହଣ୍ଡିର ଜନଜୀବନରେ ଭୈରୋଁ ବା ଭୈରବ ସର୍ବ ଆପଦଭଞ୍ଜନ ଦେବ ଭାବରେ ସ୍ୱୀକୃତି ପାଉଛନ୍ତି । ବେଲଖଣ୍ଡି ଠାରେ ମଧ୍ୟ ଅଷ୍ଟଶମ୍ଭୁ ମନ୍ଦିର ରହିଥିଲା । ସେଥିମଧ୍ୟରୁ ୫ଟି ମନ୍ଦିର ଭଗ୍ନ ଓ

Digitized by srujanika@gmail.com

୩ଟି ମନ୍ଦିର ଏବେ ଜୀର୍ଣ୍ଣାଙ୍ଗ, ଅବସ୍ଥାରେ ଅଛି । ଏତଦ୍‌ଭିନ୍ନ ବେଲଖଣ୍ଡି ଠାରେ ଥିବା ସମୁଦାୟ ୨୬ ଗୋଟ ମୂର୍ତ୍ତି ମଧ୍ୟରୁ ୩ ଗୋଟି, ଭୈରବ ମୂର୍ତ୍ତି ଗୋଟିଏ ଶିବଙ୍କର ଅନ୍ଧକାସୁର ବଧ ମୂର୍ତ୍ତି ଓ ଅନ୍ୟାନ୍ୟ ପାଞ୍ଚଟି ହରପାର୍ବତୀ ମୂର୍ତ୍ତି ରହିଅଛି । ଏହା ବ୍ୟତୀତ ଥୁଆମୂଳ ରାମପୁରର ଉଇଗ୍ର ଭୈରବ ମୂର୍ତ୍ତି, ଜୁନାଗଡ଼ ତାଢବନ୍ଧ-ପଡ଼ାର ଉର୍ଦ୍ଧ୍ୱଲିଙ୍ଗ ଭୈରବ ମୂର୍ତ୍ତି, କୋମନା ବ୍ଳକ ଅନ୍ତର୍ଗତ ଡୁଙ୍ଗୁରିପାଲିର ଭୈରବ ମୂର୍ତ୍ତି ଓ ପଣ୍ଡା ପଥରର ଭୈରବ ମୂର୍ତ୍ତିମାନ ପ୍ରଧାନ ଅଟନ୍ତି । ଆନୁମାନିକ ୪ ଫୁଟ ଉଚ୍ଚତା ବିଶିଷ୍ଟ ଅନ୍ୟ ଏକ ଚତୁର୍ହସ୍ତ ବିଶିଷ୍ଟ ଭୈରବ ମୂର୍ତ୍ତି ଜୁନାଗଡ଼, ବ୍ଳକ ଅଫିସ ନିକଟରେ ରହିଅଛି । ମୂର୍ତ୍ତିଟିର ନିମ୍ନଦେଶରେ ଏକ ଶିଳା ଲେଖ ଥିଲା । କିନ୍ତୁ ସମୟର ନିଷ୍ଠୁର କଷା ଘାତରେ ଏହି ଶିଳାଲେଖଟି ଲିଭି ଲିଭି ଆସିଲାଣି ; ଯାହାର ପାଠୋଦ୍ଧାର ଅସମ୍ଭବ । କିନ୍ତୁ ଅକ୍ଷରର ଗଠନ ଶୈଳୀରୁ ଏହା ୧୧ଶ/୧୨ଶ ଶତାବ୍ଦୀର ବୋଲି ଅନୁମିତ ହୁଏ । ଶିବଙ୍କର ଭୈରବ ମୂର୍ତ୍ତି ଭିନ୍ନ ତାହାଙ୍କର ନଟରାଜ ସ୍ୱରୂପ ପ୍ରକଟନ କରୁଥିବା ଦୁଇଗୋଟି ମୂର୍ତ୍ତି କଳାହାଣ୍ଡିରେ ରହିଅଛି । ପ୍ରଥମ ମୂର୍ତ୍ତିଟି ଖଡ଼ିଆଳ ନିକଟବର୍ତ୍ତୀ ସାନ ଦୋହେଲ ଗ୍ରାମର ଏକ ପ୍ରାଚୀନ ଶିବ ମନ୍ଦିର ଉପାସ୍ୟ ଦେବ ଥିଲେ । ମନ୍ଦିରଟି ଭଙ୍ଗିଯାଇଛି ଓ ଏହି ନଟରାଜ ମୂର୍ତ୍ତିଟି ଏବେ ସାନଦୋହେଲ ଗ୍ରାମର ଜଣେ ବ୍ୟକ୍ତିଙ୍କ ଗୃହରେ ପୂଜାପାଉଛନ୍ତି । ବେଲଖଣ୍ଡି ଠାରେ ମଧ୍ୟ ଏକ ନଟରାଜ ମୂର୍ତ୍ତି ରହିଅଛି । ମଧ୍ୟ ଯୁଗରେ ଓଡ଼ିଶାର ପଶ୍ଚିମାଞ୍ଚଳରେ ଖ୍ୟାତି ଲାଭକରିଥିବା ମତ୍ତମୟୁର ତାନ୍ତ୍ରିକ ଶୈବ ଧର୍ମର ପ୍ରଭାବ କଳାହାଣ୍ଡିର ବିଭିନ୍ନ ଅଞ୍ଚଳରେ ପ୍ରଭୂତ ଅନୁଭୂତ ହୋଇଥିବାର ମନେହୁଏ ଓ ଏହି ତାନ୍ତ୍ରିକ ପଦ୍ଧତିକୁ ଆଧାର କରି ବହୁଳ ଭାବେ ତାନ୍ତ୍ରିକ ଶୈବ ମୂର୍ତ୍ତିମାନ ଗଢି ଉଠିଥିଲା । ଏ କ୍ଷେତ୍ରରେ ଏକ ଉଲ୍ଲେଖ-ନୀୟ ଘଟଣା ହେଉଛି ହିନ୍ଦୁଧର୍ମର ଅନ୍ୟାନ୍ୟ ଶାଖା ଠାରୁ ଶୈବ ଧର୍ମର ଏଠ ରେ ଅଧିକ ପ୍ରସାର ଘଟିଥିଲା । ସୋମବଂଶୀ ତଥା କାଳାଚୁରୀ ରାଜା ମାନଙ୍କର ଶୈବଧର୍ମ ପ୍ରତି ଅନୁ-ରକ୍ତି ଏହାକୁ ପ୍ରସାରିତ କରିବାରେ ସହାୟକ ହୋଇଥିଲା । କ୍ରମେ ଏହା ଲୋକଧର୍ମକୁ ରୂପାନ୍ତରିତ ହୋଇ ଯାଇଥିଲା ।

କଳାହାଣ୍ଡିରୁ ମିଳିଥିବା ପ୍ରମୁଖ ବୈଷ୍ଣବ ମୂର୍ତ୍ତିମାନଙ୍କ ମଧ୍ୟରୁ ସିନାପାଲି ନିକଟସ୍ଥ ଝଙ୍କ-ନାର ତ୍ରିମୂର୍ତ୍ତି ପ୍ରସ୍ତର ଖଣ୍ଡର ନାମ ବିଶେଷ ଉଲ୍ଲେଖ ଯୋଗ୍ୟ । ପ୍ରାୟତଃ ୧୦ ଇଞ୍ଚ ଓସାର ଓ ୬ ଇଞ୍ଚ ଉଚ୍ଚତା ବିଶିଷ୍ଟ ଏକ ପତଳା ସମତଳ ପ୍ରସ୍ତର ଖଣ୍ଡ ଉପରେ ଅଙ୍କିତ ହୋଇଥିବା ଚିତ୍ରମାନ ଅସ୍ପଷ୍ଟ ହୋଇ ଗଲଣି କିନ୍ତୁ ଉକ୍ତ ତ୍ରିମୂର୍ତ୍ତିର ପାଦ ଦେଶରେ ଏକ ମର୍କଟ ଯୋଡ ହସ୍ତରେ ରହିଥିବାରୁ ମୂର୍ତ୍ତିଟିକୁ ରାମ ଲକ୍ଷ୍ମଣ ସୀତା ଓ ପାଦ ଦେଶରେ ହନୁମାନ ବୋଲି ଚିହ୍ନଟ କରଯାଇଛି । ମୂର୍ତ୍ତିଟିର ଗଠନରୀତୀରୁ ଏହା କଳାହାଣ୍ଡିର ପ୍ରାଚୀନତମ ବୈଷ୍ଣବ ମୂର୍ତ୍ତୀବୋଲି ଅନୁମାନ କରଯାଏ । (୧୭) ମୂର୍ତ୍ତିଟି ପ୍ରାକ୍ ଗୁପ୍ତ-କାଳୀନ ଭାସ୍କର୍ଯ୍ୟ ଅଟେ । ସମ୍ଭବତଃ ନଳରାଜା ମାନଙ୍କ ସମୟରେ ମୂର୍ତ୍ତିଟି ଗଠନ

Digitized by srujanika@gmail.com

କରଯାଇଥିବା ମନେହୁଏ । ଏହା ବ୍ୟତୀତ ଖଡ଼ିଆଳ ସଂଗ୍ରହାଳୟରେ ଏକ ଭଗ୍ନ ବିଷ୍ଣୁ ମୂର୍ତ୍ତି ରହିଛି । କିରୀଟ ମୁକୁଟ ଧାରଣ କରିଥିବା ଏହି ଚତୁର୍ଭୁଜ ମୂର୍ତ୍ତିକୁ ଉତ୍ତର ଗୁପ୍ତ ଯୁଗୀୟ ଭାସ୍କର୍ଯ୍ୟ ରୂପେ ଗ୍ରହଣ କରଯାଉଛି । ଦାଦପୁର ଗ୍ରାମର ନୀଳକଣ୍ଠେଶ୍ୱର ମନ୍ଦିର ବେଢ଼ାରେ ଅନ୍ୟଏକ କମନୀୟ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି ରହିଛି । ମୂର୍ତ୍ତିର ଗଠନରିତୀରୁ ଏହା ମଧ୍ୟଯୁଗୀୟ କଳାବୋଲି ଅନୁମିତ ହୁଏ । ଖଡ଼ିଆଳ ଓ ଦାଦପୁର ଭିନ୍ନ ବେଲଖଣ୍ଡି ଠାରେ ମଧ୍ୟ କେତୋଟି ବୈଷ୍ଣବ ମୂର୍ତ୍ତି ରହିଅଛି । ଜୁନାଗଡ ଠାରେ ଥିବା ମୂର୍ତ୍ତିମାନଙ୍କ ମଧ୍ୟରୁ ଧନୁଧାରଣ କରିଥିବା ଦୁଇଟି ଚତୁର୍ଭୁଜ ମୂର୍ତ୍ତିକୁ କାମଦେବ ବୋଲି ଚିହ୍ନଟ କରାଯାଉଛି । ମୂର୍ତ୍ତିର ଦୁଇ କଡ଼ରେ ଦୁଇଟି ନାରୀ ମୂର୍ତ୍ତି ରହିଛନ୍ତି ଓ ସେମାନଙ୍କ ମଧ୍ୟରୁ ଜଣେ ନାରୀ ଧନୁ ଧାରଣ କରିଛନ୍ତି । ଧନୁଧାରଣ କରିଥିବା ନାରୀ ଜଣଙ୍କ କାମଦେବଙ୍କ ପତ୍ନୀ ରତି ବୋଲି ଅନୁମାନ କରଯାଏ । ମୂର୍ତ୍ତିର ଗଠନ ରିତୀରୁ ଏହା ୮ମ/୯ମ ଶତାବ୍ଦିର ବୋଲି ମନେହୁଏ । (୧୮) ଏହା ବ୍ୟତୀତ ଖଡ଼ିଆଳ ସଂଗ୍ରହାଳୟରେ ଚେପ୍‌ଟା ଭାସ୍କର୍ଯ୍ୟର ଏକ ମଧ୍ୟ ଯୁଗୀୟ ନୃସିଂହ ମୂର୍ତ୍ତି ମଧ୍ୟ ରହିଅଛି । ବୈଷ୍ଣବ ଧର୍ମ ସଂକ୍ରାନ୍ତରେ କଳାହାଣ୍ଡିର ଏକ ଉଲ୍ଲେଖନୀୟ ଦିଗ ହେଉଛି ଏଠାରେ କୃଷ୍ଣମୂର୍ତ୍ତି ବିରଳ । ଏଠାରେ କେବଳ ବିଷ୍ଣୁ, ନୃସିଂହ ବା ହରି ମୂର୍ତ୍ତି ପୂଜାର ପ୍ରଚଳନ ଥିଲା । ୧୬ଶ ଶତାବ୍ଦୀ ବେଳକୁ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ଯେପରି କୃଷ୍ଣ ଭକ୍ତିର ପ୍ରାବଲ୍ୟ ଅନୁଭୂତ ହେଲା ତାହା ଏ ଅଞ୍ଚଳକୁ ବିଶେଷ ପ୍ରଭାବିତ କରି ନଥିଲା ।

ହିନ୍ଦୁଧର୍ମରେ ମଙ୍ଗଳର ପ୍ରତୀକ ରୂପେ ଗ୍ରହଣ କରଯାଉ ଥିବା ବିଘ୍ନନାଶକ ଗଣେଶ ମୂର୍ତ୍ତି କଳାହାଣ୍ଡିର ବିଭିନ୍ନ ସ୍ଥାନରେ ଥିବାର ଦୃଷ୍ଟି ଗୋଚର ହୋଇଥାଏ । ସେଥି ମଧ୍ୟରୁ ପ୍ରମୁଖ କେତୋଟି ଗଣେଶ ମୂର୍ତ୍ତି ହେଉଛନ୍ତି ଖଡ଼ିଆଳର ବିର୍ଣ୍ଣବ୍ରେ ବେଢ଼ାର ଗଣେଷ ମୂର୍ତ୍ତି ଜୁନାଗଡ ଠାରେ ଥିବା ଗ୍ରହି ଗୋଟି ଗଣେଶ ମୂର୍ତ୍ତି, ବେଲଖଣ୍ଡିର ଗଣେଷ ମୂର୍ତ୍ତି ଓ ମାରଗୁଡା ଉପତ୍ୟକାର ଗଣେଶ ମୂର୍ତ୍ତି । ଏ ସମସ୍ତ ଗଣେଶ ମୂର୍ତ୍ତି ଚତୁଃହସ୍ତ ବିଶିଷ୍ଟ ଓ ଏମାନେ ଉପବେଶନ ମୁଦ୍ରାରେ ରହିଛନ୍ତି କିନ୍ତୁ ଜୁନାଗଡ ଠାରେ ଏକ ଗଣେଶ ମୂର୍ତ୍ତି ରହିଛି ଯେଉଁଟା ଦ୍ୱିଭୁଜ ବିଶିଷ୍ଟ । ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ ମୂର୍ତ୍ତିମାନଙ୍କରେ ପ୍ରଥମେ ଦୁଇଟି ହସ୍ତ ରଖା ଯାଉଥିଲା ଓ ପରେ ବହୁ ହସ୍ତ ବିଶିଷ୍ଟ ମୂର୍ତ୍ତିମାନ ଗଠନ କରଗଲା । ଏହି ଗଣେଶ ମୂର୍ତ୍ତି ଉପରେ ଦକ୍ଷିଣ ଭାରତୀୟ କଳାର ପ୍ରଭାବ ରହିଅଛି । ମୂର୍ତ୍ତି ଗୁଡ଼ିକ ୮ମ/୯ମ ଶତାବ୍ଦୀ ଠାରୁ ୧୨ଶ ଶତାବ୍ଦୀ ମଧ୍ୟବର୍ତ୍ତୀ ସମୟ ମଧ୍ୟରେ ନିର୍ମିତ ହୋଇ ଥିବାର ମନେହୁଏ ।

କଳାହାଣ୍ଡି ଭୂମିରେ ଶାକ୍ତ ଧର୍ମର ଏକ ସମୃଦ୍ଧ ପରମ୍ପରା ରହିଛି । ଏକେତ ଆର୍ଯ୍ୟେତର ଗୋଷ୍ଠିର ମୁଖ୍ୟଧର୍ମ ଶାକ୍ତ ଧର୍ମ ଥିଲା ଓ ପରେ ଆର୍ଯ୍ୟ ମାନଙ୍କର ଆଗମନ ପରେ ଇନ୍ଦ୍ର

Digitized by srujanika@gmail.com

ଧର୍ମ ଉପରେ ଅଧିକ ଗୁରୁତ୍ୱ ଆରୋପ କରଯିବା ଫଳରେ ଏହା ଏକ ଗଣ ଧର୍ମର ମାନ୍ୟତା ଲାଭ କଲା । ସମଗ୍ର ଓଡ଼ିଶା ତଥା ଦକ୍ଷିଣ କୋଶଳ ପରିପ୍ରେକ୍ଷୀରେ ବିଗ୍ଭର କଲେ କଳାହାଣ୍ଡି ଜିଲ୍ଲାରୁ ଶାକ୍ତଧର୍ମ ସମ୍ପର୍କୀୟ ପ୍ରଥମ ଲେଖିକ ବିବରଣୀଟି ସଂଗ୍ରହ କରଯାଇଛି । ତାହା ହେଉଛି ପର୍ବତ ଦ୍ୱାରକା ରାଜାଙ୍କର ସ୍ତମ୍ଭେଶ୍ୱରୀଙ୍କୁ ଉପାସନା କରୁଥିବା ଦାନପତ୍ର । ଶାକ୍ତଧର୍ମର ବହୁ ଦେବ ଦେବୀଙ୍କ ମୂର୍ତ୍ତି କଳାହାଣ୍ଡିରେ ଦୃଷ୍ଟି ଗୋଚର ହୋଇଥାଏ । ମାଗଗୁଡ଼ା ଉପତ୍ୟକାରୁ ଏକ ଚତୁର୍ଭୁଜା ମହିଷା ମର୍ଦ୍ଦିନୀ ଦୁର୍ଗାମୂର୍ତ୍ତି ଆବିଷ୍କାର କରାଯାଇଛି । ମୂର୍ତ୍ତିଟିର ପାଦ ଦେଶରେ ବ୍ରାହ୍ମୀଲିପିରେ "ମାହେଶ୍ୱରୀ ଭଦ୍ରୋ" ଲେଖା ଯାଇଥିବାର ଐତିହାସିକ ଡକ୍ଟର ନବୀନ କୁମାର ସାହୁ ପାଠ କରିଛନ୍ତି । (୧୯) ଏହି ମହିଷାମର୍ଦ୍ଦିନୀ ଦେବୀ ଏକ ଶାକ୍ତ ବିହାରର ଇଷ୍ଟଦେବୀ ରୂପେ ପୂଜା ପାଉଥିଲେ । ମାଗଗୁଡ଼ାରୁ ଆବିଷ୍କୃତ ହୋଇଥିବା ଶାକ୍ତ ବିହାରଟିକୁ ଭାରତ ବର୍ଷର ପ୍ରାଚୀନତମ ଶାକ୍ତ ବିହାରର ଗୌରବ ପ୍ରଦାନ କରଯାଉଛି । ଲିପିକୁ ଭିତ୍ତିକରି ତଥା ମୂର୍ତ୍ତିର ଗଠନ ରିତୀରୁ ଏହାକୁ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ବୋଲି କଳ୍ପନା କରଯାଇଛି । ବେଲଖଣ୍ଡିର ସପ୍ତମାତୃକା ଦେବୀମାନେ ଶାନ୍ତ ଭାବେ ଉପବେଶନ କରିଛନ୍ତି । ଏଠାରେ ମାତୃକାମାନଙ୍କୁ ଯୋଗେଶ୍ୱରୀଙ୍କୁ ରଣ କ୍ଷେତ୍ରରେ ସାହାଯ୍ୟ କରିବା ଭଳି ଉଗ୍ରଭାବାପନ୍ନ କରନଯାଇ ଶାନ୍ତ ବର ଦାୟିନୀ କରିବାର ପ୍ରୟାସ ହୋଇଛି । ମଧ୍ୟଯୁଗରେ ଶାକ୍ତଧର୍ମ ସମ୍ପୂର୍ଣ୍ଣ ରୂପେ ତନ୍ତ୍ରକୁ ଆଶ୍ରୟ କରିନେବା ଫଳରେ ବହୁ ତାନ୍ତ୍ରୀକ ମୂର୍ତ୍ତିମାନ ଉଦ୍‌ଭବ ହେଲା । ବେଲଖଣ୍ଡିଠାରୁ ଏକ ଭଗ୍ନ ଗ୍ୱାମୁଣ୍ଡା ମୂର୍ତ୍ତି ଓ ଅନ୍ୟ ଏକ ମହିଷାସୁର ମର୍ଦ୍ଦିନୀ ମୂର୍ତ୍ତି ମଧ୍ୟ ରହିଅଛି । ବେଲଖଣ୍ଡିର ମୂର୍ତ୍ତି ଗୁଡ଼ିକ ୯ମ/୧୦ମ ଶତାବ୍ଦୀର ଉତ୍ସର୍ଗ ବୋଲି ଅନୁମାନ କରଯାଉଛି । ଓଡ଼ିଶାର ପୂର୍ବାଞ୍ଚଳରେ ସାଧାରଣତଃ ଷଡ଼ହସ୍ତା ଦେବୀ ମୂର୍ତ୍ତି ବହୁଳ ସଂଖ୍ୟାରେ ଦେଖାଯାଏ ନାହିଁ । କିନ୍ତୁ କଳାହାଣ୍ଡି ଜିଲ୍ଲାରେ ଦୁଇଗୋଟି ଷଡ଼ହସ୍ତା ଦେବୀ ମୂର୍ତ୍ତିର ଆବିଷ୍କାର ଏ ଅଞ୍ଚଳରେ ଷଡ଼ହସ୍ତା ମୂର୍ତ୍ତି ନିର୍ମିତ ହେଉଥିବାର ପ୍ରମାଣ ଦେଉଅଛି । ପ୍ରଥମ ମୂର୍ତ୍ତିଟି ହେଉଛି ଷଡ଼ହସ୍ତା ମହିମାମର୍ଦ୍ଦିନୀ ମୂର୍ତ୍ତି । (୨୦) ଏହି ମୂର୍ତ୍ତିଟିକୁ ବେଲଖଣ୍ଡିଠାରୁ ନେଇ ବର୍ତ୍ତମାନ ସମ୍ବଲପୁର ବିଶ୍ୱବିଦ୍ୟାଳୟ ସଂଗ୍ରହାଳୟରେ ରଖା ଯାଇଛି । ଏହା ବ୍ୟତୀତ ଖଡ଼ିଆଳ ନିକଟବର୍ତ୍ତୀ ଭୁଲିଆସିକୁଆଁ ଠାରେ ଅର୍ଦ୍ଧ ଉପବେଶନ ଭଙ୍ଗୀରେ ଏକ ଭୟଙ୍କର ଗ୍ୱାମୁଣ୍ଡା ମୂର୍ତ୍ତି ରହିଅଛି । ଜୁନାଗଡର ଲଙ୍କେଶ୍ୱରୀ ଦେବୀଙ୍କୁ ମହାଦେବୀ ଓ ବୈଷ୍ଣବୀଙ୍କର ଏକ ମିଶ୍ର ରୂପ ପ୍ରଦାନ କରଯାଇଛି । (୨୧) ଏହି ଚତୁର୍ଭୁଜା ଦେବୀ ପଦ୍ମାସନରେ ରହିଛନ୍ତି ଓ ତାହାଙ୍କର ଉପର ଦୁଇହସ୍ତରେ ଶଙ୍ଖ ଓ ଚକ୍ର ରହିଛି ଓ ନିମ୍ନ ହସ୍ତଦ୍ୱୟ ଅଭୟ ମୁଦ୍ରାରେ ରହିଅଛି । କିନ୍ତୁ ଦେବୀ ଜିହ୍ୱା ବିସ୍ତାର କରିଛନ୍ତି । ତାନ୍ତ୍ରିକ ଉପାୟରେ ପୂଜା ନିମିତ୍ତ ଦୁଇ ବୃହତ୍ ଶକ୍ତିର ମିଶ୍ରରୂପ ପ୍ରଦାନ କରଯାଇ ତାହାଙ୍କ ଠାରୁ ଉଭୟ ଦେବୀଙ୍କର କରୁଣା ଲାଭ ପାଇଁ ମଧ୍ୟ ଯୁଗରେ ଚେଷ୍ଟା ହୋଇଥିଲା । ପ୍ରାଚୀ ଅବବାହିକାର ମୋଟିଆ ଗ୍ରାମରୁ ଏହିଭଳି ଏକ ମିଶ୍ର ମୂର୍ତ୍ତି ଆବିଷ୍କାର କରଯାଇଛି ।

Digitized by srujanika@gmail.com

ଉପର ଦୁଇ ହସ୍ତରେ ଶଙ୍ଖ ଚକ୍ର ଥିବା ବେଳେ ତଳ ଦୁଇ ହସ୍ତରେ ତ୍ରିଶୂଳ ଧାରଣ କରିଛନ୍ତି । ମୋଚିଆରୁ ମିଳିଥିବା ମୂର୍ତ୍ତିଟି ୯ମ ଶତାବ୍ଦୀର ବୋଲି ଅନୁମାନ କରଯାଇଛି । ମାଣିକେଶ୍ୱରୀ ରୂପରେ ଉପାସିତ ହେଉଥିବା କଳାହାଣ୍ଡିର ଇଷ୍ଟଦେବୀ ଚତୁର୍ଭୁଜା ଭୁବନେଶ୍ୱରୀ ଅଟନ୍ତି । ଏତଦ୍‌ଭିନ୍ନ ସମଲେଶ୍ୱରୀ ଓ ରକ୍ତାମ୍ବରୀ ଆଦି ଦେବୀଙ୍କ ଗଠନ ରିତୀରେ ଆର୍ଯ୍ୟୋତ୍ତର ସଂସ୍କୃତିର ଛାପ ସୁସ୍ପଷ୍ଟ । ଖଡ଼ିଆଳ ନିକଟବର୍ତ୍ତୀ କୋଟିପଦର ଗ୍ରାମରୁ ଲଜ୍ଜା ସଂସ୍କୃତିର ପ୍ରତୀକ ଏକ ତାନ୍ତ୍ରୀକ ମୂର୍ତ୍ତି ମିଳିଅଛି । ମୂର୍ତ୍ତିଟିର ମସ୍ତକ ପରିବର୍ତ୍ତେ ଶୀର୍ଷ ଦେଶରେ ସହସ୍ର ପଦ୍ମ ପାଖୁଡ଼ାର ଚିତ୍ର କରଯାଇଛି । ତାନ୍ତ୍ରିକ ଦେବୀଟି ପ୍ରସବ ପୂର୍ବବର୍ତ୍ତୀ ମୁଦ୍ରାରେ ରହିଛନ୍ତି । ଯୌନଯୋଗାଗ୍ନର ମାଧ୍ୟମରେ କୁଣ୍ଡଳିନୀ ଶକ୍ତିକୁ ଶୀର୍ଷ ବିନ୍ଦୁରେ ପହଞ୍ଚାଇ ଶତଦଳ ପଦ୍ମ ପ୍ରାପ୍ତି ପ୍ରସଙ୍ଗକୁ ସମ୍ଭବତଃ ଏହି ଚିତ୍ର ମାଧ୍ୟମରେ ସୂଚାଇ ଦିଆ ଯାଇଛି । ନେହେନାର ଶିବ ମନ୍ଦିରର ଜଗମୋହନରେ ନିଶାଗ୍ରସ୍ତ ଭାବେ ନୃତ୍ୟ କରୁଥିବା ଭଙ୍ଗୀରେ ଏକ ଚତୁର୍ଭୁଜା ଦେବୀ ମୂର୍ତ୍ତି ରହିଛନ୍ତି । ମୂର୍ତ୍ତିଟିକୁ ବୌଦ୍ଧ ଦେବୀ ହେରୁକା ବୋଲି ଅନୁମାନ କରଯାଉଛି । ମୂର୍ତ୍ତିଟି ପ୍ରାକ୍ ମଧ୍ୟ ଯୁଗର ଉପସ୍ଥ ଅଟେ ।

ତନ୍ତ୍ର ଯାନଟି ଯୌନାଙ୍ଗକୁ ଆଧାର କରି ପରିପୁଷ୍ଟ ହୋଇଥିବାରୁ ମଧ୍ୟ ଯୁଗରେ ଅନେକ ମୈଥୁନ ମୂର୍ତ୍ତି ଗଠନ କରଗଲା । ଉକ୍ତ ମୈଥୁନ ମୂର୍ତ୍ତି ମାନଙ୍କୁ ଉପାସ୍ୟ ଭାବରେ ଗ୍ରହଣ ନକରି ମନ୍ଦିର ଗାତ୍ରରେ ଅବସ୍ଥାପିତ କରଗଲା । କଳାହାଣ୍ଡି ତଥା ସମଗ୍ର ପଶ୍ଚିମ ଓଡ଼ିଶାରେ ତନ୍ତ୍ର ବ୍ୟାପକ ପ୍ରସାର ଲାଭ କରିଥିଲା । ସୁତରାଂ ଏହି ଅଞ୍ଚଳରେ ବହୁ ସଂଖ୍ୟକ ମୈଥୁନ ମୂର୍ତ୍ତି ମିଳିଥାଏ । କଳାହାଣ୍ଡି ଜିଲ୍ଲାରେ ଥିବା ମିଥୁନ ମୂର୍ତ୍ତିମାନଙ୍କ ମଧ୍ୟରୁ କେତୋଟି ବିଶେଷ ମୂର୍ତ୍ତିର ଉଦାହରଣ ଦେବା ଏ କ୍ଷେତ୍ରରେ ଅପ୍ରାସଙ୍ଗିକ ହେବ ନାହିଁ । ଖଡ଼ିଆଳ ସଂଗ୍ରହାଳୟରେ ଥିବା ଏକ ମୈଥୁନ ମୂର୍ତ୍ତିରେ ନାରୀ, ପୁରୁଷଙ୍କ ମଝିରେ ମଧ୍ୟସ୍ଥତା କରୁଥିବା ଏକ ଦାସୀର ଚିତ୍ର ରହିଛି । ମୂର୍ତ୍ତିଟିର ବିଶେଷତ୍ୱ ହେଉଛି ଯେ ବାମମାର୍ଗୀ ତାନ୍ତ୍ରୀକ ମାନେ ପ୍ରୟୋଗ କରୁଥିବା ଅଷ୍ଟକାମ କଳାରୁ ଏଥିରେ ଉଚ୍ଚାଟନ ଓ ଆକର୍ଷଣ ଉପରେ ଗୁରୁତ୍ୱ ଆରୋପ କରଯାଇଛି । ତାନ୍ତ୍ରିକ ଯୌନାଙ୍ଗର ପାଇଁ ପ୍ରସ୍ତୁତ ଅଛନ୍ତି । ତନ୍ତ୍ର ଉପାସନା ପାଇଁ ଆଗ୍ରହୀନାରୀ ସଲଜ୍ଜ ସମ୍ମତି ପ୍ରଦାନ କରିଛନ୍ତି । ଦୁହିଁଙ୍କୁ ଏକତ୍ର କରାଇବା ପାଇଁ ମଧ୍ୟଦେଶସ୍ଥ କୁଟ୍ଟଣୀ ନିଜର ଚେଷ୍ଟା ଅବ୍ୟାହତ ରଖିଛି । ଭୁଲିଆ ସିକୁଆଁ ଠାରେ ଥିବା ଅନ୍ୟଏକ ନାରୀ ମୂର୍ତ୍ତି ନିଜର ଯୌନାଙ୍ଗକୁ ଦୁଇ ହସ୍ତରେ ସମ୍ପ୍ରସାରଣ କରୁଛି । ଏହା ବ୍ୟତୀତ ଅନ୍ୟ ଏକ ମୂର୍ତ୍ତିରେ ପୁରୁଷଟି ନିମ୍ନ ଆଡ଼କୁ ହସ୍ତ ପ୍ରସାରଣ କରି ତଥା ମସ୍ତକ ତଳକୁ ରଖି ଦୁଇଗୋଡ ଉପରକୁ ଟେକି ନାରୀ ସହ ମୈଥୁନ ରତ ଅଛି । ବେଲଖଣ୍ଡି ଠାରେ ଥିବା ଏକ ମୈଥୁନ ମୂର୍ତ୍ତିରେ ନାରୀଟି ବାମଗୋଡ ଟେକି ଦକ୍ଷିଣ ଗୋଡରେ ପୁରୁଷ ଆଡ଼କୁ ମୁହଁ କରି ଠିଆ ହୋଇଛି । ପୁରୁଷର ଦକ୍ଷିଣ ହସ୍ତ ଉପରେ ନାରୀର ବାମଗୋଡ ରହିଛି । ଉଭୟ ମୈଥୁନ ମୁଦ୍ରାରେ ଅଛନ୍ତି । (୨୨) ଏହି ଭଙ୍ଗୀର ଏକ ମୂର୍ତ୍ତି

Digitized by srujanika@gmail.com

ଚରଦାର ଶିବ ମନ୍ଦିର କାନ୍ଥରେ ରହିଛି ଓ ଅନ୍ୟଏକ ମୂର୍ତ୍ତି କୋଣାର୍କ ମନ୍ଦିରରେ ରହିଛି । ତେଣୁ ଏଭଳି କଳାତ୍ମକ ସାମଞ୍ଜସ୍ୟ ଥିବାରୁ ଦୁଇଗୋଟି ସମ୍ଭାବନା ସମ୍ମୁଖରେ ଉଙ୍କି ମାରୁଛି । ପ୍ରଥମଟି ହେଉଛି ଓଡ଼ିଶାର ପଶ୍ଚିମାଞ୍ଚଳର ଏହି କଳା କୌଶଳଟି ପରେ କୋଣାର୍କରେ ଅନୁରୂପ ଭଙ୍ଗୀରେ ଉପସ୍ଥାପିତ ହୋଇଛି ଅଥବା ଏହା ଯୌନାସ୍ତରରେ ସର୍ବଜନ ବିଦିତ ଏକ ମୁଦ୍ରା ହୋଇଥବାରୁ ଏହାକୁ ଭିନ୍ନ ଭିନ୍ନ ସ୍ଥାନରେ ଶିଳ୍ପୀମାନେ କେହି କାହାକୁ ଅନୁସରଣ ନକରି ହୁଏତ ଗଠନ କରି ଥାଇପାରନ୍ତି । କୋଣାର୍କ ବା ଖଜୁରାହୋର ମୈଥୁନ ମୂର୍ତ୍ତି ଗୁଡ଼ିକୁ ଯେପରି ଜୀବନ୍ତ ତଥା ଶୃଙ୍ଗାର ଭାବ ବ୍ୟଞ୍ଜକ ଭଙ୍ଗୀରେ ଉପସ୍ଥାପିତ କରାଯାଇଛି କଳାହାଣ୍ଡିର ମୈଥୁନ ମୂର୍ତ୍ତିରେ ସେଭଳି କଳାନୈପୁଣ୍ୟ ପରିଲକ୍ଷିତ ହୁଏ ନାହିଁ । ମୁଖରେ ଉପଯୁକ୍ତ ଭଙ୍ଗୀମା ପ୍ରସ୍ଫୁଟନରେ ଏଠାକାର ଶିଳ୍ପୀ ବିଶେଷ ସଫଳୀକୃତ ହୋଇଥିବାର ମନେହୁଏ ନାହିଁ । ଯଦିଓ ସମସ୍ତ ଭଙ୍ଗୀ ବା ଆସନକୁ ଯଥା ଯଥ ଭାବେ ଉପସ୍ଥାପିତ କରାଯାଇଛି କିନ୍ତୁ ମୁଖ ମଣ୍ଡଳରେ ଉପଯୁକ୍ତ ଭାବର ଅଭାବ ମୂର୍ତ୍ତି ଗୁଡ଼ିକୁ ଉନ୍ନତ ମାନର କଳା ସାମଗ୍ରୀ ରୂପେ ଗ୍ରହଣ କରିବା କ୍ଷେତ୍ରରେ ଅନ୍ତରାୟ ସୃଷ୍ଟି କରୁଛି । ବୋଧହୁଏ ଏ ଅଞ୍ଚଳରେ ମୂର୍ତ୍ତି ଗଠନ ନିମିତ୍ତ ଉପଲବ୍ଧ ହେଉଥିବା ନିମ୍ନମାନର ହାଲୁକା ପ୍ରସ୍ତର ଯୋଗୁଁ ମୂର୍ତ୍ତିରେ ସୁକ୍ଷ୍ମଭାବ ପରିସ୍ଫୁଟନ ନିମନ୍ତେ ଶିଳ୍ପୀଙ୍କୁ ଯଥେଷ୍ଟ ସୁଯୋଗ ପ୍ରଦାନ କରି ନାହିଁ ।

କଳାହାଣ୍ଡିରୁ ଅନେକ ସତୀ ପ୍ରସ୍ତର ମିଳୁଅଛି । ସତୀ ସ୍ମାରକୀ ମାନଙ୍କରେ ସାଧାରଣତଃ ନାରୀହସ୍ତ, ସୂର୍ଯ୍ୟ ଓ ଚନ୍ଦ୍ର ରହିଥାନ୍ତି । ସତୀ ସ୍ମାରକୀ ପ୍ରସ୍ତର ଗୁଡ଼ିକ ମୁଖ୍ୟତଃ ନଦୀ ଅଥବା ପୁଷ୍କରଣୀ ଘାଟ ନିକଟରେ ଥିବାର ଦେଖାଯାଏ । କଳାହାଣ୍ଡିର ଖଡ଼ିଆଳ, ଜୁନାଗଡ, ଡୁମେର ବାହାଲ ଆଦି ସ୍ଥାନରୁ ବହୁ ସତୀ ପ୍ରସ୍ତର ମିଳିଅଛି । ୧୧୪୫ ଖ୍ରୀଷ୍ଟାବ୍ଦରୁ ୧୧୭୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଗଙ୍ଗ ଓ କଳାଚୁରୀ ରାଜାମାନଙ୍କ ମଧ୍ୟରେ କ୍ଷମତା ଦଖଲ ପାଇଁ ତେଲ ନଦୀର ଅବବାହିକାରେ ପ୍ରବଳ ଯୁଦ୍ଧ ସଂଘଟିତ ହୋଇଥିଲା । ଏହି ଯୁଦ୍ଧରେ ବହୁ ଯୋଦ୍ଧା ପ୍ରାଣ ପାତ କରିଥିଲେ । ସେମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ବହୁ ସଂଖ୍ୟକ ସତୀ ପ୍ରସ୍ତର ନିର୍ମାଣ କରାଯାଇଥିଲା । ସ୍ୱାମୀଙ୍କ ମୃତ୍ୟୁରେ ନାରୀ ସତୀ ହେବା ତତ୍‌କାଳୀନ ସମାଜର ଉପର ଶ୍ରେଣୀର ଏକ ଅନ୍ଧ ବିଶ୍ୱାସ ଥିଲା । ଏହି ସତୀ ପ୍ରସ୍ତରମାନଙ୍କ ମଧ୍ୟରୁ ଜୁନାଗଡରୁ ମିଳିଥିବା ଏକ ସତୀ ପ୍ରସ୍ତରରେ ନାରୀ ସତୀ ହେବା ପୂର୍ବରୁ କରାଯାଉଥିବା ବୈଦିକ ଉପଚାର ମାନଙ୍କୁ ଚିତ୍ରାୟିତ କରାଯାଇଛି । (୨୩) ଏଥିରେ ବ୍ରାହ୍ମଣ କୁଶଗୁଚ୍ଛ ଧରି ନାରୀକୁ ଆଶୀର୍ବାଦ କରୁଛନ୍ତି । କଳାହାଣ୍ଡିର ସତୀ ପ୍ରସ୍ତର ମାନଙ୍କରେ ନାରୀକୁ କୋମଳଭାବାପନ୍ନ କରା ନଯାଇ ବରଂ ତାହାଙ୍କ ମୁଖ ମଣ୍ଡଳ ରୁକ୍ଷ ଭାବାପନ୍ନ କରି ଗଠନ କରାଯାଇଛି ।

Digitized by srujanika@gmail.com

କେବଳ ଦେବଦେବୀ ବା ମନ୍ଦିର କାନ୍ଥର ମୂର୍ତ୍ତି ଗଠନରେ ସେକାଳର ଶିଳ୍ପୀ ନୀରବ ହୋଇ ରହିନାହିଁ ବରଂ ଇତିହାସର କେତେକ ଗୁରୁତ୍ୱପୂର୍ଣ୍ଣ ଘଟଣାକୁ ମୂର୍ତ୍ତି ମାଧ୍ୟମରେ ଚିତ୍ରାୟିତ କରି ଯାଇଛନ୍ତି । ମୌର୍ଯ୍ୟକାଳର ଅବନତି ସଙ୍ଗେ ସଙ୍ଗେ ଭାରତ ବର୍ଷରେ ଆଞ୍ଚଳିକତା ତଥା ନିଜ ନିଜର ବୈଶିଷ୍ଟ୍ୟ ପ୍ରତିପାଦନ ନିମନ୍ତେ ଅନେକ ପ୍ରକାରର କଳା-କୌଶଳ ମୁଣ୍ଡ ଟେକିଲା । ସୁଙ୍ଗ ମାନଙ୍କ ସମୟରେ ପ୍ରଥମ କରି ଲୋକ ବିଶ୍ୱାସକୁ ଚିତ୍ର ଆକାରରେ ଗଠନ କରିବାର ଉଦ୍ୟମ ହେଲା । ଭାରତ ବର୍ଷରେ ଐତିହାସିକ ଘଟଣାକୁ ଆଧାରକରି ଗଢି ଉଠିଥିବା ପ୍ରଥମ ଚିତ୍ର ହେଉଛି ଅଜାତଶତ୍ରୁ ଓ ପ୍ରସେନ୍‌ଜିତ୍‌ଙ୍କର ଗନ୍ଧକୁଟୀ ପଟୁଆର ଚିତ୍ର । (୨୪) କାଳକ୍ରମେ ବହୁ ଐତିହାସିକ ଘଟଣା ଭାରତର ବିଭିନ୍ନ ପ୍ରାନ୍ତରେ ମୂର୍ତ୍ତି ଆକାରରେ ପ୍ରକାଶ କରଗଲା । କଳାହାଣ୍ଡିରୁ ମଧ୍ୟ ଏହିଭଳି କେତୋଟି ଇତିହାସ ଭିତ୍ତିକ ମୂର୍ତ୍ତିର ସନ୍ଧାନ ମିଳିଛି । ପ୍ରଥମଟି ହେଉଛି ନେହେନାରୁ ପ୍ରାପ୍ତ ଏକ କ୍ଷୁଦ୍ର ପଥର ଖଣ୍ଡ ଉପରେ ଅଙ୍କିତ ରାଣୀଙ୍କର ଚିତ୍ର । ଚିତ୍ରଟିକୁ ଶରଭପୁରିଆ ରାଜା-ପ୍ରସନ୍ନ ମାତ୍ରଙ୍କର ରାଣୀ ରୂପେ ଚିହ୍ନଟ କରଯାଇଛି । (୨୫) ଅନ୍ୟଏକ ମୂର୍ତ୍ତି ଜୁନାଗଡ଼ ଠାରୁ ସଂଗ୍ରହ କରଯାଇ ସମ୍ବଲପୁର ବିଶ୍ୱବିଦ୍ୟାଳୟ ସଂଗ୍ରହାଳୟରେ ରଖା ଯାଇଛି । ଏହି ମୂର୍ତ୍ତିରେ ଜଣେ ଯୋଦ୍ଧା ବାମ ହାତରେ ଏକ ନାରୀକୁ ନେଇ ଯାଉଥିବାର ଚିତ୍ର ରହିଛି । ମୂର୍ତ୍ତିଟିକୁ ଅଧ୍ୟୟନ କରି ଶ୍ରୀ ଦେବାଙ୍ଗନ ଶ୍ରେଣୀଦାର ଉକ୍ତ ଯୋଦ୍ଧାକୁ ଜଣେ ସୋମବଂଶୀ ଯୋଦ୍ଧା ଓ ନାରୀଟିକୁ ଏକ କାଳାଚୁରୀ ରମଣୀ ବୋଲି ମନେ କରିଛନ୍ତି । (୨୬) କିନ୍ତୁ ଉକ୍ତ ଯୋଦ୍ଧା ମସ୍ତକରେ ଏକ ଝାଲର ଯୁକ୍ତଶିର ଆଭୂଷଣ ରହିଥିବାରୁ ଶ୍ରୀ ସିଂହ ଦେଓ ଯୋଦ୍ଧାଟିକୁ କାଲଚୁରୀ ଯୋଦ୍ଧା ବୋଲି ମନେ କରନ୍ତି । ଖଡ଼ିଆଳ ସଂଗ୍ରହାଳୟରେ ଥିବା ଅନ୍ୟଏକ ମୂର୍ତ୍ତିରେ ଜଣେ ଯୋଦ୍ଧା ଅସ୍ତ୍ର ଉପରକୁ ଟେକି ବୀରତ୍ୱ ବ୍ୟଞ୍ଜକ ଠାଣିରେ ଉଭା ହୋଇଛନ୍ତି ତାଙ୍କର ବାମ ପାର୍ଶ୍ୱରେ ଜଣେ ସଂଭ୍ରାନ୍ତ ମହିଳା ଦକ୍ଷିଣ ହସ୍ତ ଉପରକୁ ପ୍ରସାରଣ କରି ଦଣ୍ଡାୟମାନ ଓ ମଧ୍ୟ ଦେଶରେ ଏକ ଖର୍ବକାୟ ବାମନାକୃତିର ଦାସୀ ଦଣ୍ଡାୟମାନ ଅଛନ୍ତି । ମୂର୍ତ୍ତିଟିର ଗଠନ ରୀତିରୁ ଏହା ୧୧ଶ/୧୨ଶ ଶତାବ୍ଦୀର ବୋଲି ମନେହୁଏ । ମୂର୍ତ୍ତି ଗୁଡ଼ିକରୁ ଏହା ଅନୁମାନ କରଯାଏ କି କୌଣସି ଯୋଦ୍ଧାଙ୍କର ବୀରତ୍ୱରେ ମୁଗ୍ଧ ହୋଇ ବିଜିତ ରାଜ୍ୟର ରାଜକନ୍ୟା ନିଜର ଦାସୀ ସହ ଯୋଦ୍ଧାଙ୍କ ନିକଟରେ ନିଜକୁ ସମର୍ପଣ କରିଛନ୍ତି । ଏହା ବ୍ୟତୀତ ଉତ୍କଳ ଆକୃତିର ଖଡ଼ି ପଥର ଖଣ୍ଡ ଉପରେ ଜଣେ ପୁରୁଷ ଓ ଜଣେ ନାରୀ ଉପବେଶନ କରିଥିବା ଅନ୍ୟଏକ ମୂର୍ତ୍ତି ଖଡ଼ିଆଳ ସଂଗ୍ରହାଳୟରେ ରହିଅଛି । ଉଭୟ ବ୍ୟକ୍ତି ଉତ୍ତମ ପୋଷାକ ପରିଧାନ କରିଛନ୍ତି ଓ ଦୁହେଁ ହସ୍ତଯୋଡ଼ି ଉପବେଶନ କରିଛନ୍ତି । କାଳାଚୁରୀ ରାଜ ଅମାତ୍ୟ ବା ରାଜନ୍ୟ ବର୍ଗ ହସ୍ତଯୋଡ଼ି ଉପବେଶନ କରିଥିବାର ମୂର୍ତ୍ତି ଅନ୍ୟସ୍ଥାନ ମାନଙ୍କରୁ ମିଳିଅଛି । ସୁତରାଂ ଏହି

ମୂର୍ତ୍ତିଟି କାଳାଚରୀ ରାଜାଙ୍କର କୌଣସି ପଦସ୍ଥ କର୍ମଚାରୀ ଓ ତାଙ୍କର ପତ୍ନୀ ବୋଲି ମନେ ହୁଅଛି ।

ସାଧାରଣତଃ ଏକ ସାଂସ୍କୃତିକ ଭୂମିରେ ଅବସ୍ଥାନ କରୁଥିଲେ ଓ ଏକ ଶାସନାଧୀନ ଥିଲେ ଗୋଟିଏ ଅଞ୍ଚଳର କଳା କୌଶଳ ଅନ୍ୟଏକ ଅଞ୍ଚଳକୁ ପ୍ରଭାବିତ କରିଥାଏ । ମନ୍ଦିରଗୁଡ଼ିକୁ ଅଧିକ ମନୋରମ କରିବା ଅଭିପ୍ରାୟରେ କେତେକ ନିର୍ଦ୍ଦିଷ୍ଟ ଢାଞ୍ଚାର ମୂର୍ତ୍ତି ଗଠନ କରି ତାହାକୁ ମନ୍ଦିରଗାତ୍ର ବା ତୋରଣ ଆଦିରେ ବିନିଯୋଗ କରଯାଉଥାଏ । ସେହିଭଳି ଏକ ମୂର୍ତ୍ତି ହେଉଛି ବାମ କାଖରେ ଶିଶୁ ଧାରଣ କରି ବୃକ୍ଷମୂଳରେ ଠିଆ ହୋଇଥିବା ନାରୀମୂର୍ତ୍ତି । ଏହିଭଳି ଏକ ମୂର୍ତ୍ତି ମାରଗୁଡ଼ା ଉପତ୍ୟକାରୁ ସଂଗ୍ରହ କରଯାଇ ଓଡ଼ିଶା ସଂଗ୍ରହାଳୟରେ ରଖାଯାଇଛି । ଏହିଭଳି ମୂର୍ତ୍ତିମାନ ଚନ୍ଦେଲ୍ଲ ରାଜବଂଶ ଓ ପୂର୍ବଗଙ୍ଗମାନଙ୍କ ଦ୍ୱାରା ନିର୍ମାଣ କରଯାଇଥିଲା । ୨୬) ଶିବପୁରର ଲକ୍ଷ୍ମଣ ମନ୍ଦିରରେ ଏହିଭଳି ଏକ ମୂର୍ତ୍ତି ରହିଛି । ତାବ୍ୟତୀତ ମହ୍ଲାରରୁ ମିଳିଥିବା ଅନୁରୂପ ଏକ ମୂର୍ତ୍ତିକୁ ସନ୍ଧ ମାତାରୂପେ ଚିହ୍ନଟ କରଯାଇଛି । ବାସ୍ତବରେ ଉକ୍ତ ମୂର୍ତ୍ତି କୌଣସି ଉପାସ୍ୟଦେବୀ ବୋଲି ମନେହୁଅନ୍ତି ନାହିଁ ବରଂ ଏହା ସଜ୍ଜିକରଣ ନିମିତ୍ତ ଏକ ସାଧାରଣ ମୂର୍ତ୍ତି । (Common Motiff) । ଏତଦ୍‌ଭିନ୍ନ ଗୋଟିଏ ଅଞ୍ଚଳର ଉତ୍କୃଷ୍ଟ କଳା ଅନ୍ୟ ଅଞ୍ଚଳକୁ ପ୍ରଭାବିତ କରିବା ମଧ୍ୟ ସ୍ୱାଭାବିକ । ମଦନପୁର ରାମପୁର କଲେଜ ପରିସର ମଧ୍ୟରେ ଏକ କମନୀୟ ଅଳସକନ୍ୟା ମୂର୍ତ୍ତି ରହିଛି । ଏହା ସାଙ୍କୁଶ ଗଡ଼ ପରିସରରୁ ଅଣା ଯାଇଛି । ମୂର୍ତ୍ତିଟି ବାମ ଗୋଡ ପଛକୁ କରି ସାମାନ୍ୟ ପଛକୁ ଛନ୍ଦାୟୀତ ଭଙ୍ଗୀରେ ବଙ୍କି ରହିଛି । ମୁଖମଣ୍ଡଳରେ ଲାସ୍ୟଛଟା ରହିଛି । ଅଳସକନ୍ୟା ମୂର୍ତ୍ତିଟିକୁ ଏକ ଧର୍ମନିରପେକ୍ଷ କଳାକୃତି ଭାବରେ ଗ୍ରହଣ କରଯାଇଛି । ମୂର୍ତ୍ତିଟିର କଳାନୈପୁଣ୍ୟ ଉନ୍ନତମାନର । ଏହିଭଳି ଏକ ମୂର୍ତ୍ତି ପ୍ରସିଦ୍ଧ ସାଞ୍ଚି ସ୍ତୁପର ପୂର୍ବ ଦରଜାରେ ରହିଅଛି । ମଦନପୁର ରାମପୁରର ମୂର୍ତ୍ତିଟିର ଗଠନ ରିତୀରୁ ଏହା ଗଙ୍ଗ କାଳୀନ ପ୍ରତିମୂର୍ତ୍ତି ବୋଲି ମନେହୁଏ । ଅଳତା ଓ ଏଲୋରା କଳାରେ ମିଶରୀୟ ପ୍ରଭାବ ଥିବାର ପ୍ରମାଣ ମିଳିସାରିଛି । ଓଡ଼ିଆଳ ସଂଗ୍ରହାଳୟରେ ଥିବା ଦୁଇଟି କ୍ଷୁଦ୍ରମୂର୍ତ୍ତି ଅଛି ଯାହା SPhinx ଅନୁରୂପରେ ଗଠିତ ହୋଇଥିବାର ମନେହୁଏ । ଏତଦ୍‌ଭିନ୍ନ କଳାହାଣ୍ଡି ଜିଲ୍ଲାରେ ଇସ୍‌ଲାମିକ କଳାର ନିଦର୍ଶନ ସ୍ୱରୂପ ଏକ ପଥର ମୂର୍ତ୍ତି ମିଳିଅଛି । ମୂର୍ତ୍ତିଟିକୁ ଡୁମେରବୋରା ଗ୍ରାମରୁ ସଂଗ୍ରହ କରଯାଇଛି । ମୂର୍ତ୍ତିଟିର କେବଳ ମସ୍ତକ ଅଂଶଟି କେବଳ ରହିଅଛି । ମଥା ଉପରେ ଅର୍ଦ୍ଧଚନ୍ଦ୍ର ଉପରେ ତାରକା ଚିହ୍ନ ରହିଅଛି ଓ ମସ୍ତକରେ ଆରବୀୟ ଢ଼ାଞ୍ଚାରେ ଏକ ଟୋପି ପରିଧାନ କରିଛନ୍ତି । ଏହି ମୂର୍ତ୍ତିଟିର ଆବିଷ୍କାର ଫଳରେ ଉକ୍ତ ଅଞ୍ଚଳରେ କୌଣସି ମୁସଲମାନ ଶାସକଙ୍କର ରାଜତ୍ୱଥିବାର ପ୍ରମାଣ ମିଳୁଅଛି । ଏହା ବ୍ୟତୀତ ଏହି ଅଞ୍ଚଳରୁ ମଧ୍ୟ ଦୁଇଟେ ଦି

Digitized by srujanika@gmail.com

ତୋଗଲକ ମୁଦ୍ରା ଆବିଷ୍କାର କରଯାଇଛି । ତେଣୁ ଫିରୋଜ ଶାହା ତୋଗଲକଙ୍କ ପ୍ରତ୍ୟାବର୍ତ୍ତନ ପରେ ସମ୍ଭବତଃ ଏହି ଅଞ୍ଚଳ ଶାସନ କରିବା ପାଇଁ କୌଣସି ସ୍ଥାନୀୟ ନବାବଙ୍କ ଉପରେ ଭାର ଅର୍ପଣ କରଯାଇଥିଲା ପରେ ଚୌହାନମାନଙ୍କ ଆଗମନ ପରେ ସେ ସ୍ୱତଃ ଅପସରି ଯାଇଛନ୍ତି ।

ଏକାଦଶ ଶତାବ୍ଦି ବେଳକୁ ହିନ୍ଦୁ ଧର୍ମର ବିଭିନ୍ନ ଶାଖା ମଧ୍ୟରେ ବୁଝାମଣା ଆରମ୍ଭ ହୋଇଯାଇଥିଲା ଓ ତତ୍ତ୍ୱର ପ୍ରସାର ଘଟିଥିବାରୁ ଦୁଇ ପ୍ରମୁଖ ଧାରାକୁ ଏକତ୍ର କରାଇ ଏକ ଦେବ ବା ଦେବୀ କରିବାର ଦେଖାଗଲା ଏବଂ ଦେବଙ୍କ ସହ ତାହାଙ୍କର ପତ୍ନୀ ରୂପେ ପରିଚିତା ଦେବୀଙ୍କର ଚିତ୍ର ମଧ୍ୟ ଏକତ୍ର ରହିଲା । କଳାହାଣ୍ଡିରୁ ଏହିଭଳି ସମନ୍ୱୟର ପତାକା ସ୍ୱରୂପ କେତୋଟି ମୂର୍ତ୍ତି ମିଳିଛି । ଯଥା ଜୁନାଗଡ ତଥା ଡୁମେରବାହାଲର ହରିହର ମୂର୍ତ୍ତି । ଜୁନାଗଡର ହରିହର ମୂର୍ତ୍ତିକୁ ଏକ ମୁଖ୍ୟ ତତ୍ତ୍ୱ ଦେବ ଭାବରେ ଉପସ୍ଥାପିତ କରଯାଇଥିବା ବେଳେ ଡୁମେରବାହାଲର ମୂର୍ତ୍ତିଟିରେ ଶିଳ୍ପ ସ୍ଥାପତ୍ୟ ସେଭଳି ଉନ୍ନତ ମାନର ହୋଇପାରି ନାହିଁ । କିନ୍ତୁ ଏଥିରେ ମୂର୍ତ୍ତି ତତ୍ତ୍ୱର ନିୟମ ଯଥାଯଥ ରୀତୀରେ ଉପସ୍ଥାପିତ କରଯାଇଛି । ଯଥା ବାମ ଅର୍ଦ୍ଧେକ ହରି ଓ ଦକ୍ଷିଣ ଅର୍ଦ୍ଧେକ ହର ଅଟନ୍ତି । ଠିକ୍ ସେହିପରି ଆମଚୂଆ ଗ୍ରାମରୁ ଏକ ଉମା ମହେଶ୍ୱର ମୂର୍ତ୍ତି ମିଳିଛି । ଏହି ଆମଚୂଆ ଗ୍ରାମଟି ପୂର୍ବେ ରାଜ୍ୟ ଗ୍ରାମ ରୂପେ ପରିଚିତ ଥିବାର ଏକ ଦାନ ପତ୍ରରୁ ପ୍ରମାଣ ମିଳିଛି । (୨୮) ଓ ସେଠାରେ ଏବେ ମଧ୍ୟ ଏକ ପ୍ରାଚୀନ ପୀଠ ଭୂଗର୍ଭରେ ରହିଅଛି ତା ବ୍ୟତୀତ ସେ ଗ୍ରାମରେ ଉପାସିତ ଏକ ଦେବୀଙ୍କୁ ରାଜ ମାଉଲି କୁହାଯାଉଛି । ଉମାମହେଶ୍ୱର ମୂର୍ତ୍ତିମାନ ଗୁର୍ଜର ପ୍ରତିହାର ମାନଙ୍କ ଦ୍ୱାରା ପ୍ରଥମେ ଆରମ୍ଭ କରଯାଇଥିଲା ବୋଲି କୁହାଯାଏ । ଏହା ବ୍ୟତୀତ ଦେହେଲିର ଲକ୍ଷ୍ମୀ ନାରାୟଣ ମୂର୍ତ୍ତି ଆଦି ସମନ୍ୱୟ ଧର୍ମୀ ମୂର୍ତ୍ତି ଅଟନ୍ତି ।

## କଳାହାଣ୍ଡିର ଭାସ୍କର୍ଯ୍ୟ କଳାର ସ୍ୱାତନ୍ତ୍ର୍ୟ :

କଳାହାଣ୍ଡି ଜିଲ୍ଲାଟି ପୂର୍ବେ ଦକ୍ଷିଣ କୋଶଳର ଅଂଶ ବିଶେଷ ଥିଲା ସାଧାରଣତଃ କଳା, ଓ ସଂସ୍କୃତି ଗୋଟିଏ ସାଂସ୍କୃତିକ ଭୂମିର ପ୍ରତ୍ୟେକ ଅଞ୍ଚଳରେ ପ୍ରାୟତଃ ସମ ଭାବରେ ବିକଶିତ ହୋଇଥାଏ । ତେଣୁ ଏକକଭାବେ କଳାହାଣ୍ଡି ଜିଲ୍ଲାର କଳା ଓ ଭାସ୍କର୍ଯ୍ୟର ସ୍ୱାତନ୍ତ୍ର୍ୟ ନିରୂପଣ କରିବା ଅବଶ୍ୟ ଏକ ଦୁରୂହ ବ୍ୟାପାର । ଏକଥା ସତ୍ୟ ଯେ କଳାର ବିକାଶରେ ସାମାନ୍ୟଭାବେ ଆଞ୍ଚଳିକତାର ଛାପ ରହିପାରେ କିନ୍ତୁ ମୂଳତଃ ତାହା ଏକ ସାଂସ୍କୃତିକ ଭୂଖଣ୍ଡର ସମସ୍ତ ଅଞ୍ଚଳର କଳା କୌଶଳ ସହ ସାମ୍ୟ ରକ୍ଷା କରିଥାଏ । ସେହି ବିରାଟ ସାଂସ୍କୃତିକ ଭୂଖଣ୍ଡଟି ହେଉଛି ପ୍ରାଚୀନ ଦକ୍ଷିଣ କୋଶଳ ରାଜ୍ୟ ଏ କଳାହାଣ୍ଡି

Digitized by srujanika@gmail.com

ତାହାର ଏକ ଅଂଶ ବିଶେଷ । ତେଣୁ କଳାହାଣ୍ଡିର ଉପର୍ଯ୍ୟକଗାରେ ଆମ୍ଭେ ସେଉଁ ସେଉଁ ଲକ୍ଷଣମାନ ସନ୍ଦର୍ଶନ କରିବା ଓଡ଼ିଶାର ପଶ୍ଚିମାଞ୍ଚଳରେ ମୂର୍ତ୍ତି କଳା ଓ ମଧ୍ୟପ୍ରଦେଶର ବସ୍ତର ରାୟପୁର ଆଦି ଜିଲ୍ଲାର ମୂର୍ତ୍ତିରେ ମଧ୍ୟ ଅନୁରୂପ ସଙ୍କେତ ପାଇପାରିବା । କଳା-ହାଣ୍ଡିରୁ ମିଳିଥିବା ଅଧିକାଂଶ ମୂର୍ତ୍ତି ବାଲୁକା ପ୍ରସ୍ତର ଅଥବା ଲାଲ ନରମ ପ୍ରସ୍ତରେ ନିର୍ମିତ । କ୍ୱଚିତ ଗୋଟିଏ ଗୋଟିଏ ମୂର୍ତ୍ତି ମୁଗୁନି ପଥରରେ ନିର୍ମାଣ କରାଯାଇଛି । ମୁଗୁନିପଥରେ ଅପ୍ରତୁଳତା ବୋଧହୁଏ ଏହାର ମୁଖ୍ୟ କାରଣ । ପ୍ରାୟତଃ ସମସ୍ତ ମୂର୍ତ୍ତି ଅତ୍ୟନ୍ତ ଓଜନିଆ ଓ ଖୁବ୍ ବଡ଼ ଓ ଆଗକୁ ଢ଼ଳି ପଡ଼ିଥିବା ଭଳି ଦିଶନ୍ତି । କେବଳ ସମ୍ମୁଖ ଭାଗରେହିଁ କାରୁ-କାର୍ଯ୍ୟ କରାଯାଇଛି । ପୃଷ୍ଠ ଦେଶ କାରୁକାର୍ଯ୍ୟଥିବା ମୂର୍ତ୍ତି ଏ ଯାବତ ମିଳିନାହିଁ । ମୂର୍ତ୍ତିମାନ ଓଡ଼ିଶାର ପୂର୍ବ ଅଞ୍ଚଳରେ ଥିବା ମୂର୍ତ୍ତିପରି ବିଶେଷ ଅଳଙ୍କାର ଯୁକ୍ତ ନୁହନ୍ତି । ପୂର୍ବ ଅଞ୍ଚଳର ଅଧିକାଂଶ ମୂର୍ତ୍ତିରେ ଯେପରି କଟି ମେଖଳ ଥାଏ, ଏଠାକାର ମୂର୍ତ୍ତି ମାନଙ୍କରେ ସେପରି ପରିଦୃଷ୍ଟ ହୁଏନାହିଁ । କିନ୍ତୁ କଟିମେଖଳା ପରିବର୍ତ୍ତେ ପାଦ ଦେଶର ଠିକ୍ ଉପରକୁ ଗୋଡ଼ ଉପର ଦେଇ ଏକ ଲମ୍ବା ଆଭୂଷଣାର ଚିହ୍ନ ପ୍ରାୟତଃ ଅଧିକାଂଶ ମୂର୍ତ୍ତିରେ ରହିଅଛି । ଉଭୟ ପୁରୁଷ ଓ ନାରୀ ଲମ୍ବାକେଶ ରଖୁଥିଲେ ଓ ଉଭୟ ପୁରୁଷ ଓ ନାରୀ କର୍ଣ୍ଣରେ କର୍ଣ୍ଣଫୁଲ, କର୍ଣ୍ଣକୁଣ୍ଡଳ ବାହୁରେ ବାଜୁବନ୍ଧ ଗଳାରେ ହାର ଓ ପାଦରେ ଘୁଙ୍ଗୁର ବା ପାଉଁଜ ପରିଧାନ କରୁଥିଲେ । ପୁରୁଷମାନେ ଅଶ୍ୱଖୁରାକୃତି ଆକାରର (ଇଂରେଜୀ U) ଏକ ଅଳଙ୍କାର ଗଳାରେ ପରିଧାନ କରୁଥିଲେ । ଗଜପୁରୁଷଙ୍କ ଭିନ୍ନ ଅନ୍ୟାନ୍ୟ ସାଧାରଣ ମୂର୍ତ୍ତିର ଶିର ଦେଶରେ ଶିର ତ୍ରାଣ ପଗଡ଼ି ବା ହୁଇଗ୍ (Wig ଡାଞ୍ଚାର ଶିର ଆଭୂ-ଷଣ ରହିଛି । କେତେକ କଳା ଐତିହାସିକ ଖ୍ରୀଷ୍ଟୀୟ ୬୫୦ ଖ୍ରୀ-ଅ ପରବର୍ତ୍ତୀ ମୂର୍ତ୍ତିରେ ହୁଇଗ୍ ରହେନାହିଁ ବୋଲି ଉଲ୍ଲେଖ କରିଛନ୍ତି । କିନ୍ତୁ କଳାହାଣ୍ଡିର ମଧ୍ୟଯୁଗର କେତେକ ମୂର୍ତ୍ତିରେ ମଧ୍ୟ ଏପରି ସଙ୍କେତ ରହିଅଛି । ଖଡ଼ିଆଳ ସଂଗ୍ରହାଳୟରେ ଥିବା କେତୋଟି ମୂର୍ତ୍ତି ଏହାର ଉତ୍କୃଷ୍ଟ ଦୃଷ୍ଟାନ୍ତ ଅଟେ । କିନ୍ତୁ ଅଙ୍ଗୁଷ୍ଠିରେ ଅଙ୍ଗୁରୀୟ ପରିଧାନ କରିଥିବା ସେଭଳି କୌଣସି ମୂର୍ତ୍ତି ଏ ଯାବତ୍ ଏହି ଜିଲ୍ଲାରୁ ମିଳିନାହିଁ । ଏହା ବ୍ୟତୀତ ଏହି ଜିଲ୍ଲାର ମଧ୍ୟଯୁଗୀୟ କେତୋଟି ଯୋଦ୍ଧା ମୂର୍ତ୍ତିରେ ଏକ ପ୍ରକାର ସୁନ୍ଦର ଯୋତା ପରି-ଧାନ କରିଥିବାର ଦେଖାଯାଏ । ଯୋତା ଗୁଡ଼ିକର ଗଠନରିତୀ ଅତ୍ୟନ୍ତ ଆକର୍ଷଣୀୟ । ଏହାର ଗୋଇଠି ପାଖରେ ଠିକ୍ ଓଲଟା ଭିକାର (/\) ଭଙ୍ଗୀରେ ଏକ କାରୁକାର୍ଯ୍ୟ ହୋଇଛି । ଏକ ପ୍ରକାର କାରୁକାର୍ଯ୍ୟ ରହିଥିବାରୁ ଏ ସମସ୍ତ ମୂର୍ତ୍ତିକୁ ଗୋଟିଏ ରାଜବଂଶର ବୋଲି ମନେ କରାଯାଏ । କେତେକ ଯୋଦ୍ଧା ଅଶ୍ୱ ଉପରେ ଉପବେଶନ କରିଛନ୍ତି । ଅଶ୍ୱ ଗୁଡ଼ିକୁ ଯେଭଳି ଦୃପ୍ତ ଭଙ୍ଗୀରେ ଅଙ୍କନ କରାଯାଇଛି ତାହା ଅତ୍ୟନ୍ତ ଜୀବନ୍ତ ବୋଧହୁଏ । ଉଦ୍ୟାନବନ୍ଧ ଠାରୁ ପ୍ରାୟ ୩ କି-ମି ଦୂରରେ ଅବସ୍ଥିତ ପଣ୍ଡାପଥର ଗ୍ରାମର ଏକ ଛିନ୍ନ ଗଡ଼ଡ଼ଙ୍କ ଏ ୧୧ଶ/୧୨ଶ ଶତାବ୍ଦୀର କେତେକ ମୂର୍ତ୍ତି ପଡ଼ିରହିଛି । ସେଥି ମଧ୍ୟରୁ ପ୍ରାୟ

Digitized by srujanika@gmail.com

୧ଫୁଟ ଉଚ୍ଚର ଏକ କମନୀୟ ଅଶ୍ୱମୂର୍ତ୍ତି ଅଛି । ମୂର୍ତ୍ତିଟି ମୁଗୁନି ପଥରରେ ନିର୍ମିତ ଓ ଏହାର କଳା କୌଶଳ ଅତ୍ୟନ୍ତ ଉନ୍ନତ ମାନର । ଅଶ୍ୱଟିର ମସ୍ତକ ଓ ଗଳାରେ ଥିବା ଅଳଙ୍କାରର ଗଠନରିତୀ ଅତ୍ୟନ୍ତ ହୃଦ୍ୟ । ଦ୍ରୁତ ଭଙ୍ଗୀରେ ଧାବମାନ ଅବସ୍ଥାରେ ଥିବା ଏହି ଅଶ୍ୱଟି ଉପରେ ଅଶ୍ୱାରୋହୀ ଉପବେଶନ କରିଛନ୍ତି । ଅଶ୍ୱାରୋହୀଙ୍କର କେବଳ ଗୋଡ ଦିଶୁଛି ଓ ତାହାଙ୍କର ଢ଼ାଲ ଅଶ୍ୱର ବାମ ପାର୍ଶ୍ୱରେ ଝୁଲୁଛି । ଏହି ଅଶ୍ୱର ଗଠନ ରିତୀକୁ ତନ୍ନ ତନ୍ନ କରି ଅନୁଧ୍ୟାନ କଲେ ବିଶ୍ୱ ପ୍ରସିଦ୍ଧ କୋଣାର୍କ ମନ୍ଦିରରେ ଥିବା ଅଶ୍ୱର ଗଠନ ରିତୀ ଏହାକୁ ଅନୁସରଣ କରି ଗଢ଼ି ଉଠି ଥିବାର ପ୍ରତୀତ ହୁଏ । ଏହି ପ୍ରସଙ୍ଗରେ ତତ୍‌କାଳୀନ ଇତିହାସ ସଂପର୍କରେ ଚର୍ଚ୍ଚା କରଯାଉ । ଦୀର୍ଘ ତିନିଶହ ବର୍ଷଧରି ଗଙ୍ଗ ଓ କାଳାଚୁରୀ ମାନଙ୍କ ମଧ୍ୟରେ ଯୁଦ୍ଧ ଲାଗି ରହିଥିଲା । ଗଙ୍ଗ-ରାଜା ଭୀମସେନ ଅନଙ୍ଗଭୀମ ଦେବ ବା ଅନଙ୍ଗଭୀମ ଦେବ ୩ୟ ତମନ୍ମାର କାଳାଚୁରୀ ଶକ୍ତିକୁ ପରାସ୍ତକରି ତାଙ୍କର ରାଜ୍ୟର ସୀମା ସୋନପୁର-ସମ୍ବଲପୁର ଅଞ୍ଚଳ ପର୍ଯ୍ୟନ୍ତ ପରି-ବ୍ୟାପ୍ତ କରିଥିଲେ । ତାଙ୍କର ପୁତ୍ର ହେଉଛନ୍ତି ଲାଙ୍ଗୁଡ଼ା ନରସିଂହ ଦେବ ଯିଏକି କୋଣାର୍କ ମନ୍ଦିରର ନିର୍ମାତା । ପୂର୍ବେ କାଳାଚୁରୀମାନେ ଅଶ୍ୱାରୋହୀ ମୂର୍ତ୍ତି ତଥା ଉତ୍ତମ ଅଶ୍ୱ-ନିର୍ମାଣରେ ପ୍ରସିଦ୍ଧି ଲାଭକରିଥିଲେ । ପରେ କାଳାଚୁରୀ ମାନଙ୍କୁ ଗଙ୍ଗଶକ୍ତି ପରାସ୍ତ କରିଥିବାରୁ ନିଜର ବୀରତ୍ୱ ପ୍ରଖ୍ୟାପନ ଉଦ୍ଦେଶ୍ୟରେ ପରେ କୋଣାର୍କ ଠାରେ ଏକ ବୃହଦାକାର ଅଶ୍ୱ ଓ ଅଶ୍ୱାରୋହୀର ମୂର୍ତ୍ତି ଲାଙ୍ଗୁଡ଼ା ନରସିଂହଦେବ ତିଆରି କରାଇଛନ୍ତି ବୋଲି ମନେହୁଏ । ଏହାବ୍ୟତୀତ କଳାହାଣ୍ଡି ଜିଲ୍ଲାରୁ କେତୋଟି ଚେପ୍‌ଟା ଉପର୍ଯ୍ୟର ପ୍ରତିମୂର୍ତ୍ତି ମିଳିଛି । ଚେପ୍‌ଟା ପଥର ଫଳକ ଉପରେ ମୂର୍ତ୍ତି ଖୋଦେଇ କରିବା ବା ତହିଁ ଉପରେ ମୂର୍ତ୍ତି ଅଙ୍କନ କରିବା ଏ ଜିଲ୍ଲାରେ ଏକ ପ୍ରଚଳିତ ଧାରାଥିଲା । ଶ୍ରୀ ଜିତାମିତ୍ର ପ୍ରସାଦ ସିଂହଦେବଙ୍କ ବ୍ୟକ୍ତିଗତ ସଂଗ୍ରହାଳୟରେ ଚେପ୍‌ଟା ଉପର୍ଯ୍ୟର ଏକ ପଞ୍ଚ ଫେଣା ବିସ୍ତାର କରିଥିବା ସର୍ପ ମୂର୍ତ୍ତି ରହିଛି ଯାହାର ମଧ୍ୟମ ଫେଣା ଉପରେ ଶିବଲିଙ୍ଗର ଚିତ୍ର ରହିଛି । ଏହାବ୍ୟତୀତ ଖଡ଼ିଆଳ ସଂଗ୍ରହାଳୟରେ ଥିବା ନୃସିଂହ ମୂର୍ତ୍ତି ଓ ରଜାରାଣୀ ମୂର୍ତ୍ତି ଏହି ଶ୍ରେଣୀର । ଏହାବ୍ୟତୀତ କଳାହାଣ୍ଡିର ବିଭିନ୍ନ ମୂର୍ତ୍ତିରୁ ଏହା ବୁଝାପଡୁଛି ଯେ ମଧ୍ୟଯୁଗରେ ଉକ୍ତ ଅଞ୍ଚଳରେ ବାଦ୍ୟ, ସଙ୍ଗୀତ ଓ ନୃତ୍ୟ ଦି କଳାର ମଧ୍ୟ ଆଦର ଥିଲା । ଖଡ଼ିଆଳ ନିକଟ-ବର୍ତ୍ତୀ ଭୁଲିଆ ସିକୁଆଁ ଠାରେ ମୃଦଙ୍ଗମ ବଜାଉଥିବାର ଏକ ସୁନ୍ଦର ପୁରୁଷ ମୂର୍ତ୍ତି ମିଳିଛି । ଖଡ଼ିଆଳ ବଜାର ମଧ୍ୟରେ ଏକ ନାରୀ ମୃଦଙ୍ଗମ୍ ବଜାଉଥିବାର ମୂର୍ତ୍ତି ରହିଛି । ସୁତରାଂ ନାରୀମାନେ ନୃତ୍ୟ କରିବା ଭିନ୍ନ ବାଦ୍ୟ ଯନ୍ତ୍ର ବଜାଇବାରେ ପ୍ରବୀଣା ଥିବାର ବୁଝା-ପଡୁଛି । ଏହାବ୍ୟତୀତ ଜଣେ ନର୍ତ୍ତକୀ ତରବରରେ ପାଦରେ ଘୁଙ୍ଗୁର ବାନ୍ଧୁଛନ୍ତି ତାଙ୍କ ପାଖରେ ମହୁରୀ ବାଦକ ଓ ଡ୍ରମ ବାଦକ ପ୍ରସ୍ତୁତ ହୋଇ ରହିଛନ୍ତି । ହୀରପୁରର ଯୋଟିଏ ଯୋଗୀନି ତାଙ୍କ ପାଦର ନୂପୁର ବାନ୍ଧିବାର ଚିତ୍ର ରହିଛି । (୨୯) ଅବଶ୍ୟ ଏଭଳି ଚିତ୍ର

Digitized by srujanika@gmail.com

ସମଗ୍ର ଭାରତ ବର୍ଷରେ ପ୍ରଚଳିତ ଥିଲା । କଳାହାଣ୍ଡି ଭୂମିରେ ସୁରବଂଶୀ, ନଳରାଜା, ପର୍ବତଦ୍ୱାରକା, ଶରଭପୁରିଆ, ପାଣ୍ଡୁବଂଶୀ, ସୋମବଂଶୀ, କାଳଚୁରୀ, ତେଲୁଗୁଚୋଡ଼, ନାଗବଂଶୀ ଓ ଚୌହାନ ଆଦି ରାଜବଂଶଗଣ ଶାସନ କରିଛନ୍ତି । ବିଶେଷତଃ ପର୍ବତ-ଦ୍ୱାରକା ଓ ଶରଭପୁରିଆ ଚୌହାନ ଓ ନାଗବଂଶୀ ରାଜାମାନେ ଏହି ମାଟିରେ ସେମାନଙ୍କ ରାଜଧାନୀ ନିର୍ମାଣ କରିଛନ୍ତି । ପର୍ବତଦ୍ୱାରକା ରାଜାମାନେ ସ୍ତମ୍ଭାକାର ପ୍ରସ୍ତର ଖଣ୍ଡ ଉପରେ ସେମାନଙ୍କ ଇଷ୍ଟଦେବୀ ସ୍ତମ୍ଭେଶ୍ୱରୀଙ୍କ ମୂର୍ତ୍ତି ନିର୍ମାଣ କରିଥିଲେ । ନଳରାଜା ବଂଶୀୟ କିର୍ତ୍ତିମାନଙ୍କ ମଧ୍ୟରେ ମାରାଗୁଡ଼ାର ଶାକ୍ତ ବିହାରର ନାମ ଉଲ୍ଲେଖ ଯୋଗ୍ୟ । ଏହି ଶାକ୍ତ ବିହାରର ଉପର ସ୍ତରରେ ଥିବା ବିହାର ଓ ମୂର୍ତ୍ତିର ପାଦ ଦେଶରେ ଥିବା ଲିପିଟି ନଳବଂଶୀ କାଳୀନ । ଏଠାରେ ଥିବା ମହିଷାମର୍ଦ୍ଦିନୀ ମୂର୍ତ୍ତିଟିର କଳାତ୍ମକ ବୈଶିଷ୍ଟ୍ୟ ହେଉଛି ଏକ ବୃହଦାକାର ଯୋନି କୁଣ୍ଡର ମଧ୍ୟସ୍ଥଳରେ ଯେଉଁଠି ଶିବଲିଙ୍ଗ ସ୍ଥାପନ କରାଯିବା କଥା ସେହି ସ୍ଥାନରେ ଦେବୀଙ୍କ ମୂର୍ତ୍ତି ସଂସ୍ଥାପନ କରାଯାଇଛି । ସୁତରାଂ ଏହା କରିବା ଫଳରେ ଶିଳ୍ପୀ ଯୋନି କୁଣ୍ଡ ମଧ୍ୟରୁ ଦେବୀ ଆସ୍ତେ ଉପରକୁ ଉଠି ଆସୁଥିବା ଭଳି ଶୋଭା ପାଉଛନ୍ତି । ଏହାଦ୍ୱାରା ଯୋନିକୁଣ୍ଡ ଓ ସ୍ୱୟଂ ଦେବୀ ଏକ ମାତ୍ର ସ୍ୱରୂପିଣୀ ବା ଅଭିନ୍ନ ବୋଲି ସୂଚିତ ହେଉଛି । ପ୍ରାଚୀନ କାଳର ଏହି ଉନ୍ନତମାନର କଳାର୍ଟ ନିଷ୍ପିତ-ରୂପ ବିଶ୍ୱ କଳା ଦରବାରରେ କଳାହାଣ୍ଡିର ଗୌରବ ପ୍ରଖ୍ୟାପନ କରୁଛି । ଏହି ପ୍ରସଙ୍ଗରେ ବିଶିଷ୍ଟ କଳା ଐତିହାସିକ ଚାର୍ଲସଲୁଇ ଫ ବ୍ରାଙ୍କ ମତାମତ ବିଚାର କରଯାଉ । ଖ୍ରୀଷ୍ଟୀୟ ୭ମ ଶତାବ୍ଦୀ ପୂର୍ବରୁ ହିନ୍ଦୁଧର୍ମର କୌଣସି ଉନ୍ନତ କଳାକୃତାନ୍ତ ନାହିଁ ବୋଲି ସେ ସ୍ପଷ୍ଟ ଘୋଷଣା କରିଛନ୍ତି । (୩୦) କିନ୍ତୁ ମାରାଗୁଡ଼ାର ଏହି ମୂର୍ତ୍ତି ଓ ଏହାକୁ ଯୋନି-କୁଣ୍ଡ ସହ ସମ୍ପର୍କୀକୃତ କରଯାଇ ଯେଉଁଭଳି ଉନ୍ନତ ଶିଳ୍ପୀ ନୈପୁଣ୍ୟର ପରିଚୟ ଦିଆଯାଇଛି ତାହା ତାଙ୍କର ମତାମତକୁ ଖଣ୍ଡନ କରୁଛି । ସେ ହୁଏତ ଏହି ମୂର୍ତ୍ତିଟିର ସନ୍ଦର୍ଶନ କରି-ଥିଲେ ତାଙ୍କର ମତ ପରିବର୍ତ୍ତନ କରିଥାନ୍ତେ । ଶରଭପୁରୀୟ ରାଜବଂଶର ସ୍ୱର୍ଣ୍ଣ ମୁଦ୍ରାରୁ ଶଙ୍ଖ, ଚକ୍ର, ଗଜଲକ୍ଷ୍ମୀ ଓ ଗରୁଡ ଆଦିର ଚିତ୍ର ରହିଛି ଏହାବ୍ୟତୀତ ନେହେନାରୁ ଉକ୍ତ ରାଜବଂଶ କାଳୀନ ଏକ ମୂର୍ତ୍ତି ଆବିଷ୍କୃତ ହୋଇ ଏବେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ସଂଗ୍ରହାଳୟରେ ରକ୍ଷିତ ଅଛି । ସୋମବଂଶୀ ରାଜତ୍ୱ କାଳରେ କଳା ଓ ଭାସ୍କର୍ଯ୍ୟ କ୍ଷେତ୍ରରେ ଉଲ୍ଲେଖନୀୟ ଅଗ୍ରଗତି ସାଧିତ ହୋଇଥିଲା । ମୂର୍ତ୍ତି ଗୁଡ଼ିକୁ ଅଧିକ ଆକର୍ଷଣୀୟ ତଥା ଜୀବନ୍ତ କରିବାର ପ୍ରୟାସ ହେଲା । ଏହି ସମୟରେ ମନ୍ଦିର କାନ୍ଥରେ ନବଗ୍ରହ ଓ ଗଜଲକ୍ଷ୍ମୀ ଆଦିଙ୍କର ଚିତ୍ର ଖୋଦିତ କରଗଲା । କଳାହାଣ୍ଡିର ବୁଢ଼ୀକୋମନା ଠାରେ ଥିବା ପାତାଳେଶ୍ୱର ଶିବ ମନ୍ଦିରରେ ଆମ୍ଭେ ଅନୁରୂପ ସଙ୍କେତ ପାଇଥାଉ । କାଳଚୁରୀ ମାନେ ସେମାନଙ୍କର ବିଭିନ୍ନ ଯୋଦ୍ଧା ମୂର୍ତ୍ତିରେ ଶିର ଦେଶରେ ଏକ ପ୍ରକାର ବିଶେଷ ଶିରଭୂଷଣ ସନ୍ନିବେଶିତ କଲେ । ସେମାନେ କୌଣସି ମନ୍ଦିର ନିର୍ମାଣ କରିବା ଅନ୍ୟ କୌଣସି

Digitized by srujanika@gmail.com

କିର୍ତ୍ତୀ ନିର୍ମାଣ କଲେ ଯିଏ ଉକ୍ତ ମନ୍ଦିର ନିର୍ମାଣ କରୁଥିଲେ ଉକ୍ତ ମନ୍ଦିର ପାର୍ଶ୍ୱରେ ତାହାଙ୍କର ଏକ ପ୍ରତିମୂର୍ତ୍ତି ରଖୁଥିଲେ ଓ ଅଧିକାଂଶ ମୂର୍ତ୍ତି ହସ୍ତଯୋଡ଼ି ଉପବେଶନ ମୁଦ୍ରାରେ ରହୁଥିଲେ । ନାଗମାନେ ନିଜର ରାଜକୀୟ ସଙ୍କେତ ରୂପେ ପ୍ରଥମେ ବ୍ୟାଘ୍ର ଓ ପରେ ନାଗ ଯୁଗଳକୁ ଗ୍ରହଣ କରି ନିଜର ସୃଷ୍ଟ କଳାକୃତି ତଥା ମୋହର ଆଦିରେ ତହିଁର ଉପଯୋଗ କଲେ । ଠିକ୍ ସେହିପରି ଚୌହାନମାନେ ଚୌହାନ ଚତୁର୍ଭୁଜ ବେଲି ପରିଚିତ କରାଇ ଏକ ଯୁକ୍ତ ସଙ୍କେତର ଖରି ମୁଣ୍ଡରେ ଅର୍ଦ୍ଧ ଚନ୍ଦ୍ରାକାର କରି ତାହାକୁ ଏକ ଗୋଲକ ମଧ୍ୟରେ ରଖି ଉକ୍ତ ଚିହ୍ନକୁ ରାଜକୀୟ ସନ୍ତକ ରୂପେ ଗ୍ରହଣ କଲେ । କିନ୍ତୁ କଳାହାଣ୍ଡିରେ ଶାସନ କରିଥିବା ନାଗରାଜା ଓ ଚୌହାନ ରାଜାମାନଙ୍କ ଦ୍ୱାରା ବିଶେଷ ମୂର୍ତ୍ତି ଇତ୍ୟାଦି ଗଠନ ହୋଇଥିବାର ମନେହୁଏ ନାହିଁ । ଅବଶ୍ୟ ଏମାନେ ମନ୍ଦିରମାନ ନିର୍ମାଣ କରିଛନ୍ତି, କିନ୍ତୁ ମଧ୍ୟ ଯୁଗରେ ମନ୍ଦିର କାନ୍ଥରେ ଯେପରି ଭାବରେ ବହୁଳ ଭାବେ ମୂର୍ତ୍ତି ଖଞ୍ଜା ଯାଇଥିଲା ଏମାନଙ୍କ ଦ୍ୱାରା ନିର୍ମିତ ମନ୍ଦିର ମାନଙ୍କରେ ସେପରି ପରିଦୃଷ୍ଟ ହୁଏ ନାହିଁ । ସୁତରାଂ ଏକ ନିରପେକ୍ଷ ଅବଲୋକନରୁ ଏହା ସୂଚିତ ହୁଏ ଯେ ଏହି ଦୁଇ ରାଜବଂଶ ଶାସନ କାଳରୁ ମୂର୍ତ୍ତିକଳା କ୍ଷେତ୍ରରେ ଅନୁରୂପ ପ୍ରଗତି ସମ୍ଭବ ହେଲା ନାହିଁ । ବିଭିନ୍ନ ରାଜବଂଶ ଯେପରି ନିଜର ମୁଦ୍ରା ପ୍ରଚଳନ କରାଉଥିଲେ ପୂର୍ବରୁ ଏ କ୍ଷେତ୍ରରେ ତାହା ହେଲା ନାହିଁ । ଫଳତଃ ସମାଜ ପୁନଶ୍ଚ ବିନିମୟ ପଦ୍ଧତି ଉପରେ ଆସ୍ଥା ସ୍ଥାପନ କଲା । ବୋଧହୁଏ ମୋଗଲ ରାଜତ୍ୱ କାଳରେ ଦିଲ୍ଲୀ ପ୍ରଶାସନ ବିଭିନ୍ନ ପ୍ରାନ୍ତରେ ଥିବା ରାଜାମାନଙ୍କୁ ନିଜର ମୁଦ୍ରା ପ୍ରଚଳନ କରାଇବାରେ ବାଧା ସୃଷ୍ଟି କରିଥିଲେ ଯାହାର ଫଳସ୍ୱରୂପ ମୁଦ୍ରାକଳାର ପ୍ରଗତି କ୍ଷେତ୍ରରେ ଅନ୍ତରାୟ ସୃଷ୍ଟି ହେଲା । ହେ ପ୍ରାଚୀନ କାଳରୁ କଳାହାଣ୍ଡି ଭୂମିର ଅଧିବାସୀଗଣ ବିଭିନ୍ନ ମୂଲ୍ୟବାନ ମାଳିକୁ ଅଳଙ୍କାର ରୂପେ ଗ୍ରହଣ କରୁଥିଲେ । କୌଟିଲ୍ୟଙ୍କ ଅର୍ଥ ଶାସ୍ତ୍ରର ଏକ ବର୍ଣ୍ଣନାନୁସାରେ କଳାହାଣ୍ଡି ଭୂମି ପ୍ରାଚୀନ କାଳରେ ମୂଲ୍ୟବାନ ପ୍ରସ୍ତର ପାଇଁ ଖ୍ୟାତି ଲାଭ କରିଥିଲା । (୩.୧) ପୂର୍ବେ ବିଭିନ୍ନ ପ୍ରକାର ପ୍ରସ୍ତରରୁ ଲୋକେ ସୁନ୍ଦର ସୁନ୍ଦର ମାଳି ନିର୍ମାଣ କରି ପରିଧାନ କରୁଥିଲେ । ମାଳି ଗୁଡ଼ିକୁ ଚାହିଦାନୁରୂପ ଆକୃତି ପ୍ରଦାନ ପାଇଁ ପ୍ରସ୍ତର ଉପରେ ଘଷା ଯାଉଥିଲା । ଖଡ଼ିଆଳ ନିକଟବର୍ତ୍ତୀ ନେହେନା ଗ୍ରାମର ନରେସ୍ ପାହାଡ ଉପରେ ଏକ ମାଳି ତିଆରି କାରଖାନା ଥିବାର ନିଦର୍ଶନ ରହିଅଛି । ନେହେନାରୁ ବିଭିନ୍ନ ଆକୃତିର ଅନେକ ମାଳି ମିଳିଛି । ସେଥି ମଧ୍ୟରୁ ନୀଳ ପ୍ରସ୍ତରର ପାନପତ୍ର ଆକୃତି ବିଶିଷ୍ଟ ଗୋଟିଏ ମାଳି ଓ ଧଳା ପ୍ରସ୍ତରର ଠିକିରି ଆକୃତି ବିଶିଷ୍ଟ ଦୁଇଟି ଓ ଲାଲ ପ୍ରସ୍ତରରେ ଡ୍ରମ ଆକାରର କେତୋଟି ମାଳି ଅନ୍ତର୍ଭୁକ୍ତ । ମାଳି ଗୁଡ଼ିକ ନିର୍ଦ୍ଦିଷ୍ଟ ଆକାର ପ୍ରଦାନ ପରେ ପରିଧାନ ଉପଯୋଗୀ କରିବାକୁ ତହିଁରେ ଅତ୍ୟନ୍ତ ସତର୍କତାର ସହ ଗର୍ତ୍ତ କରା ଯାଉଥିଲା । ଏପରିକି କେତୋଟି ଗର୍ତ୍ତ ହୋଇ ନଥିବା ମାଳି ସେହି ନେହେନା ପୀଠରୁ ମିଳିଅଛି । ଏକ କଠିନ

Digitized by srujanika@gmail.com

ମାଟି ଉପରେ ଗର୍ତ୍ତ କରିବା ବିଧି ଏକ ଉନ୍ନତ ଶିଳ୍ପ କୌଶଳର ପରିଚାୟକ ଅସୁରଗଡ଼ଠାରୁ ଅନେକ ପ୍ରକାରର ସୁନ୍ଦର ମାଳି ମିଳୁଅଛି । ଶ୍ରୀଯୁକ୍ତ ସାହୁ ତାହାଙ୍କର ଏକ ପ୍ରବନ୍ଧରେ ଏଠାରୁ ପାଇଥିବା ୮୯ ପ୍ରକାରଟି ମାଳିକୁ ୬ଟି ବୃହତ ବିଭାଗରେ ବିଭକ୍ତ କରିଛନ୍ତି (୩୨) କିନ୍ତୁ ବାସ୍ତବରେ ଉକ୍ତ ସ୍ଥାନରୁ ବିଭିନ୍ନ ଆକୃତିର ଅନେକ ମାଳି ମିଳୁଅଛି । ଶ୍ରୀଯୁକ୍ତ ଉମାଶଙ୍କର କରଙ୍କ ପାଖରେ ଥିବା ସାତଗୋଟି ମାଳି ମଧ୍ୟରୁ ଗୋଟିଏ ମାଳି ନିଶ୍ଚିତ ରୂପେ ଚମକପ୍ରଦ । ଡ୍ରମ ଆକାରର ଏହି ମାଳି ଉପରେ ଧଳା ରଙ୍ଗରେ ଉତ୍ତମ ଚିତ୍ର ଅଙ୍କନ କରାଯାଇଛି । ଏହି ରଙ୍ଗଟି ଏତେ ଉଜ୍ଜ୍ୱଳ ଓ ଏତେ ଦୀର୍ଘସ୍ଥାୟୀ ଯେ କାଳ କାଳ ଧରି ଏହାର ଉଜ୍ଜ୍ୱଳତା ଏ ଯାବତ୍ ଅମଳିନ ରହିଅଛି । ଏତଦ୍‌ଭିନ୍ନ ସେ କଳାହାଣ୍ଡିର ଅନ୍ୟାନ୍ୟ ସ୍ଥାନରୁ ପାଇଥିବା ଏକ ସୁନ୍ଦର କାରୁକାର୍ଯ୍ୟ ପୂର୍ଣ୍ଣ ଚୂଡ଼ିର ଭଗ୍ନାବଶେଷ ନିଜ ପାଖରେ ରଖିଛନ୍ତି । ଏହି ଚୂଡ଼ିଟି କେତେ ଗୁଡ଼ିଏ ଧାତବ ପଦାର୍ଥର ମିଶ୍ରଣରେ ଗଠନ କରାଯାଇଛି । ବାହ୍ୟତଃ ଏହା ଇଷ୍ଟ ବା ପୁଷ୍ଟିକ ଭଳି ଦେଖା ଯାଉଥିଲେ ହେଁ, ଏହା ଭିନ୍ନ ଏକ ଉପାଦାନରେ ଗଠିତ । ଚୂଡ଼ି ଉପରେ କରା ଯାଇଥିବା ମନୋରମ ଚିତ୍ର (ସୌନ୍ଦର୍ଯ୍ୟ ଅଭିବୃଦ୍ଧି ନିମନ୍ତେ)ରେ ବ୍ୟବହୃତ ରଙ୍ଗ ମଧ୍ୟ ଅତ୍ୟନ୍ତ ଉଜ୍ଜ୍ୱଳ ଓ ଏହା ଦୀର୍ଘସ୍ଥାୟୀ । ଉପରୋକ୍ତ ମାଳି ଓ ଚୂଡ଼ିରେ ବ୍ୟବହାର କରା ଯାଇଥିବା ରଙ୍ଗ ସମ୍ପର୍କରେ ଅଧିକ ଗବେଷଣା କରାଗଲେ, ସାମ୍ପ୍ରତିକ କାଳ ପାଇଁ ତାହା ଏକ ଚମକପ୍ରଦ ଆବିଷ୍କାର ହୋଇ ପାରନ୍ତା ଓ ଏହାକୁ ଏ ସମୟରେ ମଧ୍ୟ ବ୍ୟବହାର କରାଯାଇ ପାରନ୍ତା । ପ୍ରାକ୍ ମଧ୍ୟ ଯୁଗରେ ଏହି ସବୁ ଅଞ୍ଚଳମାନଙ୍କରୁ ଉନ୍ନତ ମାଳିମାନ ଉଜ୍ଜୟିନୀ ବାଟ ଦେଇ ଗ୍ରୀସ୍ ରୋମକୁ ରପ୍ତାନୀ ହେଉଥିଲା । ନିକଟରେ ନେହେନାରୁ ଏକ ତାମ୍ର ମୁଦ୍ରିକା ମିଳିଅଛି । ଯାହାର ମଧ୍ୟ ଦେଶରେ ଏକ ଦଣ୍ଡାୟମାନ ବୃଷଭର ଚିତ୍ର ଅଙ୍କନ କରାଯାଇଛି । ମୁଦ୍ରିକାଟି ଦକ୍ଷିଣ କୋଶଳରେ ଶୈବଧର୍ମର ବ୍ୟାପକ ପ୍ରସାର କାଳରେ ବିଶେଷତଃ ସୋମବଂଶୀ ରାଜା ମହାଶିବ ଗୁପ୍ତ ବାଳାର୍ଜ୍ଜୁନ ସମୟରେ ନିର୍ମିତ ହୋଇଥିବ ବୋଲି ମନେହୁଏ ।

କଳାହାଣ୍ଡି ଜିଲ୍ଲାରୁ ଅନେକ ପ୍ରାଚୀନ ମୃଣ୍ମୟ ପାତ୍ର ଓ ମୃଣ୍ମୟ ମୂର୍ତ୍ତି ସଂଗ୍ରହ କରାଯାଇଛି । ନୂତନ ପ୍ରସ୍ତର ଯୁଗରୁ ଆରମ୍ଭ କରି ମନୁଷ୍ୟ ମାଟି ପାତ୍ର ନିର୍ମାଣ କରିବା କୌଶଳ ଶିଖିଲା । ନେହେନାରୁ ମିଳିଥିବା କେତୋଟି ଭଗ୍ନ ମାଟି ପାତ୍ର ଭିତରେ ଅଂଶ ଚିକ୍‌ଣକଳା ସତେ ଅବା କୌଣସି ତେଲିଆ ପଦାର୍ଥ ଲେପନ କରାଗଲା ଭଳି ଦିଶୁଛି । ଅନ୍ୟ ଏକ ଅନୁରୂପ ମାଟିପାତ୍ର ଖଣ୍ଡରେ ସରୁ ସରୁ ଗାର ଟଣା ଯାଇଛି । ଏହି ପାତ୍ରଟିର ଭିତର ପାଖ ଗାଢ଼ କଳାଥିଲା ବେଳେ ଉପର ପାଖ ଲାଲ ରଂଗ ଧାରଣ କରିଛି । ଯେଉଁ ଢିଭୀରଟାରୁ ଏହି ପାତ୍ର ଖଣ୍ଡିକ ଆବିଷ୍କୃତ ହେଲା ମୌର୍ଯ୍ୟ ଯୁଗୀୟ ବୋଲି ଅନୁମାନ କରାଯାଇଛି । କିନ୍ତୁ ଏହି

Digitized by srujanika@gmail.com

ଭଳି ଉପର ଅଂଶ ଲାଲ ଥାଇ ଭିତର କଳାଥିବା ମାଟି ପାତ୍ର ରାମାୟଣ ଯୁଗରେ ମଧ୍ୟ ବ୍ୟବହୃତ ହେଉଥିବାର ଐତିହାସିକ ଗଣମତ ବ୍ୟକ୍ତ କରିଛନ୍ତି । ଖଡ଼ିଆଳ ସଂଗ୍ରହାଳୟରେ ୨ଇଞ୍ଚ ଉଚ୍ଚର ଏକ କ୍ଷୁଦ୍ର ନାରୀ ମୂର୍ତ୍ତି ଅଛି । ମୂର୍ତ୍ତିଟିର ଡାହାଣ ଗୋଡ ଭାଙ୍ଗି ଯାଇଛି । ପାଟି ଓ ନାସା ତଥା ହନୁ ହାଡ଼ ଆଗକୁ ଝୁଙ୍କି ଆସିଛି । ନାରୀର ସ୍ତନ ପାଇଁ ବକ୍ଷରେ ଅଖଣ୍ଡ କ୍ଷୁଦ୍ର କ୍ଷୁଦ୍ର ଦୁଇଟି ବିନ୍ଦୁ ସଂସ୍ଥାପନ କରଯାଇଛି । ହସ୍ତରେ ଅଙ୍ଗୁଳି ନାହିଁ । ବେକରେ ଓ ହସ୍ତରେ ଅଳଙ୍କାର ରହିଛି । ଅନ୍ୟ ଗୋଟିଏ ମାଟିର ପୁରୁଷ ମୁଣ୍ଡ ମଧ୍ୟ ରହିଛି । ଯେଉଁଥିରେ ହନୁହାଡ଼ଟି ବାହାରି ଆସିଛି । ମହାରଙ୍କୁ ଅନୁରୂପ ଏକ ମାଟିର ମୁଣ୍ଡ ଆବିଷ୍କୃତ ହୋଇଛି । ଏହି ମୃଣ୍ମୟ ମୂର୍ତ୍ତି ମାନଙ୍କର ଗଠନ ରିତୀ ସିନ୍ଧୁ ସଭ୍ୟତାର ମୂର୍ତ୍ତିକା ମୂର୍ତ୍ତି ସହ ଅନେକାଂଶରେ ମେଳ ହେଉଛି । ଏହାବ୍ୟତୀତ ସିନ୍ଧୁ ଉପତ୍ୟକାର ପ୍ରସିଦ୍ଧ ପୁରୋହିତ ମୂର୍ତ୍ତି ଅନୁରୂପ ଏକ ମୂର୍ତ୍ତି ମଧ୍ୟ ଖଡ଼ିଆଳ ଅଞ୍ଚଳରୁ ମିଳିଛି । ତାହା ବର୍ତ୍ତମାନ ଜିତାମିତ୍ର ସିଂହଦେବଙ୍କ ବ୍ୟକ୍ତିଗତ ସଂଗ୍ରହାଳୟରେ ସଞ୍ଚିତ ଅଛି । ଏହାବ୍ୟତୀତ ଶ୍ରୀ ଉମା ଶଙ୍କର କରଙ୍କ ନିକଟରେ ଅସୁରଗଡ ପରିସରରୁ ମିଳିଥିବା କଳାରଙ୍ଗର ଚିକ୍କଣ ଉଜ୍ଜ୍ୱଳ (glaze pottery) ମାଟି ପାତ୍ର ଖଣ୍ଡ, ଭିତର ପାଖ ଉଜ୍ଜ୍ୱଳ କଳା ରଙ୍ଗ ଥାଇ ବାହାର ପାଖ ଲାଲ ରଙ୍ଗର ଅନ୍ୟ ଏକ ମାଟିପାତ୍ର ଖଣ୍ଡ ରହିଛି । ତାହାବ୍ୟତୀତ ଅସୁର-ଗଡରେ ପୂର୍ବେ ଏକ ମୁଦ୍ରାଶାଳାଥିବା କଥା ଐତିହାସିକମାନେ ବିଶ୍ୱାସ କରିଥାନ୍ତି । ଏହି ସ୍ଥାନରୁ ମୁଦ୍ରା ତିଆରି କରିବାର ଏକ ମୃତ୍ତିକା ଛାଞ୍ଚ ? ମଧ୍ୟ ମିଳିଅଛି ଓ ଧାତୁକୁ ତରଳାଇବାର ଏକ ପାତ୍ର ମଧ୍ୟ ମିଳିଅଛି । ଏ ସମସ୍ତ ଶ୍ରୀଯୁକ୍ତ କରଙ୍କ ନିକଟରେ ସଞ୍ଚିତ ଅଛି । ଏକ ସୁନ୍ଦର ମୃତ୍ତିକା ଗଡୁର ଉପର ଅଂଶ ମଧ୍ୟ ସେ ପ୍ରାପ୍ତ କରିଛନ୍ତି । ପ୍ରତ୍ନତାତ୍ତ୍ୱିକ ପାଠ ଅସୁରଗଡ ଠାରେ ଯେ ଏକଦା ଏକ ଉନ୍ନତମାନର ସଭ୍ୟତା ଥିଲା ଏ ସମ୍ପର୍କରେ ସମସ୍ତ ଐତିହାସିକ ପ୍ରାୟ ଏକମତ ହୋଇଥାନ୍ତି । ଏଠାରୁ ଏକ ଭିନ୍ନ ଆକୃତିର କେତେକ ଇଟା ମିଳୁଛି । ଏହି ଇଟାକୁ ଗୋଟିକ ପରେ ଗୋଟିଏ ଯୋଡ଼ି ଦେଲେ ତାହା-ସ୍ୱତଃ ଏକ ତୋରଣାକାର ଧାରଣ କରିବ । ସୁତରାଂ ତୋରଣ ବା ମାଟି ଭିତରେ ନାଳ ତିଆରି ପାଇଁ ଏଭଳି ଏକ ଉନ୍ନତ ମାନର କାରୀଗରୀ କୌଶଳ ସେ ସମୟରେ ଉପ-ଯୋଗ କରା ଯାଉଥିଲା ।

କେବଳ ପଥର ଅଥବା ମାଟିର ମୂର୍ତ୍ତି ନିର୍ମାଣ କରିବା ଭିନ୍ନ କାଷ୍ଠରେ ନିର୍ମିତ ହୋଇଥିବା କେତେକ ମୂର୍ତ୍ତି ମଧ୍ୟ କଳାହାଣ୍ଡିରେ ରହିଅଛି । ବିଶେଷତଃ ଏହି ଜିଲ୍ଲାରୁ ଅନେକ ଉଚ୍ଚ ମାନର କାଷ୍ଠ ସହଜରେ ମିଳୁଥିବାରୁ ପରବର୍ତ୍ତୀ ସମୟରେ କେତେକ କାଷ୍ଠ ମୂର୍ତ୍ତି ନିର୍ମାଣ କରାଯାଇ ମନ୍ଦିର କାନ୍ଥରେ ଯନ୍ତ୍ର ସହ ତାହାକୁ ଖଞ୍ଜା ଯାଇଛି । ସିନାପାଲି ନିକଟସ୍ଥ ବ୍ରାହ୍ମଣପଡା ଠାରେ ଥିବା ଜଗନ୍ନାଥ ମନ୍ଦିରରେ ଏହି ଭଳି କେତେକ କାଷ୍ଠ ମୂର୍ତ୍ତି ଦୃଷ୍ଟି

Digitized by srujanika@gmail.com

ଗୋଚର ହୁଏ । ମୂର୍ତ୍ତି ଗୁଡ଼ିକ ଅନ୍ୟାନ୍ୟ ମନ୍ଦିର ବେଢ଼ାରେ ଥିବା ମୂର୍ତ୍ତି ଅନୁରୂପ ନଗ୍ନ ରୂପ ପ୍ରଦାନ କରଯାଇଛି । ବ୍ରାହ୍ମଣପଡ଼ାର ଏହି ପ୍ରାଚୀନ କାଷ୍ଠ ମୂର୍ତ୍ତି ମାନଙ୍କୁ ଓଡ଼ିଶାର କଳାପରମ୍ପରାର ଉଜ୍ଜ୍ୱଳ ସ୍ମାରକୀ ରୂପେ ଗ୍ରହଣ କରଯାଇ ପାରେ ।

କେବଳ ମୂର୍ତ୍ତି ଗଠନରେ ନୁହେଁ ବରଂ ବିଭିନ୍ନ ପ୍ରକାରର କାରୁକାର୍ଯ୍ୟମୟ ସ୍ତମ୍ଭ, କମନୀୟ ଛତ୍ରୀ ତୋରଣ ତଥା ଅନ୍ୟାନ୍ୟ କଳାବ୍ୟଞ୍ଜକ ଉପକରଣାଦି ନିର୍ମାଣ କ୍ଷେତ୍ରରେ କଳାହାଣ୍ଡି ମାଟିର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଅଛି । ଏହି ଜିଲ୍ଲାରୁ ତିନିଗୋଟି ପ୍ରାଚୀନ ମୋହରର ଆବିଷ୍କାର ଫଳରେ ପ୍ରାଚୀନ ଦକ୍ଷିଣ କୋଶଳର ସମୁନ୍ନତ ଶାସନ ବ୍ୟବସ୍ଥାର ସୂଚନା ମିଳି ପାରୁଛି । ପ୍ରଥମ ମୋହରଟି ମାରଗୁଡ଼ା ଉପତ୍ୟକାରୁ ମିଳିଥିଲା । ମାଟିରେ ନିର୍ମିତ ଏହି ମୋହରଟି ପାଣ୍ଡୁବଂଶୀ ରାଜା ନନ୍ନ ଦେବଙ୍କର ମୋହର ଅଟେ । ବର୍ତ୍ତମାନ ଏହା ସମ୍ବଲପୁର ବିଶ୍ୱବିଦ୍ୟାଳୟ ସଂଗ୍ରହାଳୟରେ ରଖାଯାଇଛି । ଦ୍ୱିତୀୟ ମୋହରଟି ମଦନପୁର ରାମପୁର ନିକଟସ୍ଥ ବୁଢ଼ୀଗଡ ଠାରୁ ମିଳିଅଛି । ବର୍ତ୍ତମାନ ଏହା ମଦନପୁର ରାମପୁର ରାଜ ପ୍ରାସାଦରେ ସଂରକ୍ଷିତ ହୋଇଛି । ଏହି ମୋହରଟି ନରମ ଲାଲ ପଥରରେ ନିର୍ମିତ ଓ ଏହାର ଉଚ୍ଚ ୩ ସେ:ମି: । ମୋହରଟିର ଆକାର ଅଶୋକ ସ୍ତମ୍ଭ ବୃତ ଓ ଏହାର ପୃଷ୍ଠ ଦେଶରେ ଏକ ପ୍ରକାର ଚିତ୍ରଲିପି ରହିଛି । ମୋହରଟି ୭ମ/୮ମ ଶତାବ୍ଦୀର ବୋଲି ମନେହୁଏ । ମୋହରଟିକୁ ବ୍ୟବହାର କରୁଥିବା ପଦସ୍ଥ ବ୍ୟକ୍ତି ସଦାସର୍ବଦା ନିଜ ପାଖରେ ରଖିବା ପାଇଁ ଏହାର ଉପର ମୁଣ୍ଡରେ ଗର୍ତ୍ତ କରଇ ତାହାକୁ କୌଣସି ପଇତା ଅଥବା ଡୋରୀ ଦ୍ୱାରା ନିଜ ଶରୀର ସହ ସଂଯୁକ୍ତ କରଉ ଥିଲେ ଓ ଆବଶ୍ୟକ ବେଳେ ନିଜେ ଏହି ମୋହର ଦେଉଥିଲେ । ସମ୍ଭବତଃ ଏହି ମୋହରଟି କୌଣସି ଗୁରୁତ୍ୱପୂର୍ଣ୍ଣ ଆଦେଶ ବହନ କରୁଥିଲା । ତୃତୀୟ ମୋହରଟି ମାଟିରେ ତିଆରି ଓ ଏହାର ପ୍ରାପ୍ତି ସ୍ଥାନ ନେହେନା । ଗୋଟିଏ ଗୋଲାକାର ମାଟି ବଲକୁ ଠିକ୍ ଦୁଇ ସମାନ ଭାଗରେ କାଟି ଦେଲେ ଗୋଟିଏ ଫାଳ ଯେପରି ଦିଶେ ମୋହରଟି ଅବିକଳ ସେହିପରି ହୋଇଛି । ଏଥିରେ ଯୁକ୍ତ ଚିହ୍ନ ଭଳି ଦୁଇଟି ସରଳରେଖା ପରସ୍ପରକୁ ଛେଦ କରିଛନ୍ତି । ଚତୁର୍ଦ୍ଦିଗରେ ଗୋଲାକାର ଚକ୍ରି ଦିଆଯାଇଛି । ଏହି ଭଳି ଏକ ସଙ୍କେତ ଉଦୟଗେପର ପ୍ରାଗୈତିହାସିକ ଗୁମ୍ଫାଚିତ୍ର ମାନଙ୍କରେ ମଧ୍ୟ ଦେଖିବାକୁ ମିଳିଥାଏ । ଏହାକୁ ସେ କାଳରେ ସୂର୍ଯ୍ୟଙ୍କର ପ୍ରତୀକ ସ୍ୱରୂପ ଗ୍ରହଣ କରା ଯାଉଥିଲା । (୩୩) ନେହେନାଟି ପଞ୍ଚମ ଶତାବ୍ଦୀରେ ଏକ ସମୃଦ୍ଧ ଗ୍ରାମ ଥିଲା ଓ ଏହାର ନାମ ନବନ୍ନାକ ଥିଲା । ବୋଧହୁଏ ମୋହରଟି ସେହି ଗ୍ରାମର ମୁଖିଆଙ୍କ ଦ୍ୱାରା ବ୍ୟବହୃତ ହେଉଥିଲା ।

Digitized by srujanika@gmail.com

## କଳାହାଣ୍ଡିର କେତୋଟି ଉଲ୍ଲେଖନୀୟ ମୂର୍ତ୍ତି :—

କଳାହାଣ୍ଡି ଜିଲ୍ଲାରୁ କେତେ ଗୋଟି ବିରଳ ମୂର୍ତ୍ତି ଆବିଷ୍କାର କରଯାଇଛି । ଏହି ମୂର୍ତ୍ତିକୁ ବିରଳ କହିବାର ଉଦ୍ଦେଶ୍ୟ ହେଉଛି ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରୁ ଉକ୍ତ ମୂର୍ତ୍ତି ଅନୁରୂପ ମୂର୍ତ୍ତିମାନ ମିଳିନାହିଁ ଏତଦ୍‌ଭିନ୍ନ ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ଏହି ମୂର୍ତ୍ତି ଗୁଡ଼ିକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଖଡ଼ିଆଳର ତିରବିନ୍ଧ ଶିବ ମନ୍ଦିର ବେଢ଼ାରେ ଏକ କାର୍ତ୍ତିକେୟ ମୂର୍ତ୍ତି ରହିଛି । ମୂର୍ତ୍ତିର ଏହାହିଁ ବିଶେଷତ୍ୱ ଯେ ଏଥିରେ କାର୍ତ୍ତିକଙ୍କର ଷଡ଼ମସ୍ତକ ଓ ଦ୍ୱାଦଶଭୂଜ ପରିଷ୍କାର ଭାବରେ ଅଙ୍କନ କରଯାଇଛି । ୨୨ଇଞ୍ଚ ଲମ୍ବ ଓ ୨୦ଇଞ୍ଚ ପ୍ରସ୍ଥ ବିଶିଷ୍ଟ ପଥର ଖଣ୍ଡ ଉପରେ ମୂର୍ତ୍ତିଟି ଖୋଦନ କରଯାଇଛି ଓ କାର୍ତ୍ତିକେୟ ନିଜର ବାହନ ମୟୁର ଉପରେ ଉପବେଶନ କରିଛନ୍ତି । ମୟୁରର ଦୁଇ ପାଖରେ ତାହାଙ୍କର ଗୋଡ ଦୁଇଟି ଝୁଲି ରହିଛି । ବିଷ୍ଣୁ ଧର୍ମୋତ୍ତର ସୂତ୍ର ଓ ଅପରାଜିତ ପୃଚ୍ଛା ଆଦି ଗ୍ରନ୍ଥରେ କାର୍ତ୍ତିକ ଏକ ମୁଖ ଠାରୁ ଆରମ୍ଭ କରି ଷଣ୍ମୁଖ ଓ ଦୁଇହସ୍ତ ଠାରୁ ଆରମ୍ଭ କରି ଦ୍ୱାଦଶ ହସ୍ତ ବିଶିଷ୍ଟ ହେବେ ବୋଲି ବର୍ଣ୍ଣନା ଅଛି । କିନ୍ତୁ ସମରାଙ୍ଗଣ ସୂତଧାରରେ ଉଲ୍ଲେଖ ଅଛି ଯେ ଦ୍ୱାଦଶଭୂଜ ବିଶିଷ୍ଟ କାର୍ତ୍ତିକେୟ କେତେ ନଗର ମାନଙ୍କରେ ପୂଜିତ ହେବେ । (୩୪) ଏବଂ ଏହା ଧ୍ୟାନ ନିମିତ୍ତ ଉପଯୋଗୀ ଏକ ମୂର୍ତ୍ତିରେ କାର୍ତ୍ତିକେୟ ଧାରଣ କରିଥିବା ଆୟୁଧମାନ କ୍ରମେ ଅସ୍ପଷ୍ଟ ହୋଇ ଗଲଣି ହେଲେ ହେଁ ଦକ୍ଷିଣ ହସ୍ତରେ ଶକ୍ତି, ତୀର, ଖଣ୍ଡା ଆଦି ଥିବାର ଓ ବାମ ହସ୍ତରେ ଧନୁ, ବିଜୟ ବୈଜୟନ୍ତୀ ଓ ପାଶ ଆଦି ଥିବାର ଜଣା ପଡ଼ୁଛି । କଳା ଇତିହାସରେ ଯଦିଓ ସ୍କନ୍ଦ ବା କାର୍ତ୍ତିକେୟଙ୍କ ଉପାସନା ଖ୍ରୀଷ୍ଟୀୟ ୫ମ ଶତାବ୍ଦୀର ରାଜା କୁମାର ଗୁପ୍ତଙ୍କ ଠାରୁ ମିଳୁଅଛି ତଥାପି କାର୍ତ୍ତିକେୟ ମୂର୍ତ୍ତିମାନ ୮ମ ଶତାବ୍ଦୀରୁ ୧୧ଶ ଶତାବ୍ଦୀ ମଧ୍ୟରେ ଗଢି ଉଠିଥିବା କଥା ମୂର୍ତ୍ତିତତ୍ତ୍ୱବିତ୍‌ଗଣ ମତ ପ୍ରକାଶ କରିଛନ୍ତି । ତେଣୁ ଖଡ଼ିଆଳର ଏହି ମୂର୍ତ୍ତିଟି ୧୧ଶ ଶତାବ୍ଦୀରେ ନିର୍ମିତ ହୋଇଥିବାର ମନେହୁଏ । ଓଡ଼ିଶାର ଅନ୍ୟ କୌଣସି ସ୍ଥାନରୁ ଏ ପର୍ଯ୍ୟନ୍ତ ଷଡ଼ମୁଖ କାର୍ତ୍ତିକେୟ ମୂର୍ତ୍ତି ମିଳିନାହିଁ ।

ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ମୂର୍ତ୍ତି ହେଉଛି ଖଡ଼ିଆଳ ସଂଗ୍ରହାଳୟରେ ଥିବା କମନୀୟ ଯୋଗୀ ସୁନ୍ଦର ମୂର୍ତ୍ତି । ମୂର୍ତ୍ତିଟିକୁ ମାରଗୁଡା ଉପତ୍ୟକାରୁ ଅଣା ଯାଇଛି । ମୂର୍ତ୍ତିଟିର ଲମ୍ବ ୩ଫୁଟ ୨ଇଞ୍ଚ ଓ ପ୍ରସ୍ଥ ୧ଫୁଟ ୨ଇଞ୍ଚ । କଳା ମୁଗୁନି ପଥରରେ ନିର୍ମିତ ଏହି ମୂର୍ତ୍ତିଟି ଏକ ଉନ୍ନତମାନର କଳାର ପରିଚୟ ପ୍ରଦାନ କରୁଛି । ମୂର୍ତ୍ତିଟିର କର୍ଣ୍ଣରେ କୁଣ୍ଡଳ, ବାହୁରେ କଙ୍କଣ ଓ ସ୍କନ୍ଧରେ ସ୍ୱର୍ଣ୍ଣୋପବୀତ ଧାରଣ କରିଛନ୍ତି । କର୍ଣ୍ଣକୁଣ୍ଡଳ ସ୍କନ୍ଧକୁ ସ୍ପର୍ଶ କରୁଛି । ଗଳାରେ ସ୍ୱର୍ଣ୍ଣହାର ଓ ଦ୍ୱିଭୂଜ ବିଶିଷ୍ଟ ଏହି ଦେବପୁରୁଷଙ୍କର ବାମହସ୍ତଟି ବାମ ଜାନୁ ଉପରେ ରହିଅଛି ଓ ଦକ୍ଷିଣ ହସ୍ତଟିରେ ଏକ ଗୋଲାକାର ଫଳ ବା ମଣି ଧାରଣ କରି ଅଛନ୍ତି । ମସ୍ତକର ଜଟା ଗୋଲାକାରରେ ଗଣ୍ଠି କରଯାଇଛି ସ୍ଫୀତ ବକ୍ଷ ଓ ଅତ୍ୟନ୍ତ ଦୃପ୍ତ

Digitized by srujanika@gmail.com

ଭଙ୍ଗୀରେ ଏକ ସର୍ପର କୁଣ୍ଡଳୀ ଉପରେ ଦକ୍ଷିଣ ଗୋଡକୁ ତଳକୁ ଝୁଲାଇ ଉପବେଶନ କରିଛନ୍ତି । ଏହି ଦେବପୁରୁଷଙ୍କ ମସ୍ତକ ଉପରେ ଏକ ସର୍ପ ପଞ୍ଚଫେଣୀ ବିସ୍ତାର କରି ଛତ୍ରାକାରରେ ରହିଅଛି । ଏହି ଭଳି ଏକ ମୂର୍ତ୍ତି ଖିଭିପୁରର ଲକ୍ଷ୍ମଣେଶ୍ୱର ମନ୍ଦିର ମଧ୍ୟରେ ରହିଅଛି । ସେଠାରେ ମୂର୍ତ୍ତିଟି ଠିଆ ହୋଇଛନ୍ତି । ଉକ୍ତ ମୂର୍ତ୍ତି ଉପରେ ଉଭୟ ବୌଦ୍ଧ ଓ ଶୈବ ଧର୍ମର ଛାପ ସୁସ୍ପଷ୍ଟ । ଏହାର ଗଠନ ରୀତିରୁ ଏହି ଭାସ୍କର୍ଯ୍ୟଟିକୁ ୮ମ/୯ମ ଶତାବ୍ଦୀର ବୋଲି ମନେ କରଯାଉଛି ।

ତୃତୀୟ ଗୁରୁତ୍ୱପୂର୍ଣ୍ଣ ମୂର୍ତ୍ତିଟି ହେଉଛି ଲଜ୍ଜାଙ୍ଗସ୍ତୁତିର ତାନ୍ତ୍ରୀକ ଦେଶ । କୋଟି ପଦର ଗ୍ରାମରୁ ମିଳିଥିବା ଏହି ମୂର୍ତ୍ତିଟିର ମସ୍ତକ ପରିବର୍ତ୍ତେ ଶୀର୍ଷ ଦେଶରେ ଶତଦଳ ପଦ୍ମ ରହିଅଛି । ଏଭଳି ମୂର୍ତ୍ତି ଓଡ଼ିଶାର ଅନ୍ୟ କୌଣସି ସ୍ଥାନରୁ ମିଳି ନାହିଁ । ତନ୍ତ୍ରର ପ୍ରସାର କାଳରେ ଏହି ତାନ୍ତ୍ରୀକ ମୂର୍ତ୍ତିମାନଙ୍କ ସମକ୍ଷରେ ଅତ୍ୟନ୍ତ ଗୁହ୍ୟ ଭାବେ ତନ୍ତ୍ର ସାଧନା କରା ଯାଉଥିଲା ଓ ମୂର୍ତ୍ତିମାନଙ୍କୁ ଯଥା ସମ୍ଭବ କ୍ଷୁଦ୍ରାତିକ୍ଷୁଦ୍ର ରୂପ ପ୍ରଦାନ କରା ଯାଉଥିଲା । ଖଡ଼ିଆଳ ଠାରୁ ୨ଇଞ୍ଚ ଲମ୍ବର ଏକ କ୍ଷୁଦ୍ର ଶୈବ ମୂର୍ତ୍ତି ମଧ୍ୟ ମିଳିଅଛି । ଏହା ବର୍ତ୍ତମାନ ଜିତାମିତ୍ର ସିଂହଦେବଙ୍କ ବ୍ୟକ୍ତିଗତ ସଂଗ୍ରହାଳୟରେ ଅଛି ।

କଳାହାଣ୍ଡିର ଜୁନାଗଡ଼ ବ୍ଲକ ଅଫିସ୍ ପଛ ପାଖରେ କେତୋଟି ପ୍ରାଚୀନ ମୂର୍ତ୍ତି ରହିଅଛି । ତନ୍ମଧ୍ୟରୁ ଦୁଇଗୋଟି ମୂର୍ତ୍ତି ବିଶେଷ ଆକର୍ଷଣୀୟ । ପ୍ରଥମଟି ହେଉଛି ତ୍ରିମୁଣ୍ଡ ବିଶିଷ୍ଟ ମୂର୍ତ୍ତି । ମୂର୍ତ୍ତିଟି ସୃଷ୍ଟି, ସ୍ଥିତି ଓ ପ୍ରଳୟର ପ୍ରତୀକ ତିନିଦେବ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ସମ୍ମିଶ୍ରିତରୂପ । ମୂର୍ତ୍ତିଟି ଚତୁର୍ହସ୍ତ ବିଶିଷ୍ଟ । ବାମ ଉପର ହସ୍ତରେ ପଦ୍ମ ଓ ଦକ୍ଷିଣ ଉପର ହସ୍ତରେ ପାଶ ଶୋଭା ପାଉଛି । ଶବ୍ଦତତ୍ତ୍ୱ ଚିନ୍ତାମଣିରେ ତ୍ରିମୂର୍ତ୍ତି ଭିନ୍ନ ଭିନ୍ନ ରୂପଧାରଣ କରିଥିଲେ ହେଁ ଏହା ଏକ ସ୍ୱରୂପର ପ୍ରତୀକ ଓ ବିଶ୍ୱର ସମସ୍ତ ସୃଷ୍ଟି, ସ୍ଥିତି ଓ ପ୍ରଳୟର ନିୟନ୍ତକ । (୩୫) ତ୍ରିମୂର୍ତ୍ତି ଚିନ୍ତାଧାରଟି କେବଳ ପୁରାଣମାନଙ୍କୁ ଉଦ୍ଭବ ହୋଇନାହିଁ ବରଂ ଏହି ଚିନ୍ତାଧାରଟି ବେଦଭଳି ପ୍ରାଚୀନ । ବିଷ୍ଣୁଧର୍ମୋତ୍ତର ଓ ପୂର୍ବ କର୍ଣ୍ଣାଗମ ଆଦି ଗ୍ରନ୍ଥରେ ତ୍ରିମୂର୍ତ୍ତିଙ୍କୁ ବିଦ୍ୟେଶ୍ୱରଙ୍କର ଅଷ୍ଟ ମୂର୍ତ୍ତି ମଧ୍ୟରୁ ଅନ୍ୟତମ ରୂପେ ବର୍ଣ୍ଣନା କରା ଯାଇଛି । କିନ୍ତୁ ଯେତେ ଗ୍ରନ୍ଥରେ ତ୍ରିମୂର୍ତ୍ତି ସମ୍ପର୍କରେ ବର୍ଣ୍ଣନା ଅଛି ସବୁଥିରେ ଗୋଟିଏ କଥା କୁହାଯାଇଛି ଯେ ଏହି ତିନି ମୂର୍ତ୍ତିଙ୍କ ମଧ୍ୟରୁ ଶିବ ମଝିରେ ରହିବେ ଓ ବ୍ରହ୍ମା ଦକ୍ଷିଣରେ ଓ ବିଷ୍ଣୁ ବାମ ପାର୍ଶ୍ୱରେ ରହିବେ । (୩୬) ସମଗ୍ର ଭାରତ ବର୍ଷରେ ଏଯାବତ୍ ମାତ୍ର ଅଳ୍ପ କେତୋଟି "ତ୍ରିମୂର୍ତ୍ତି" ମୂର୍ତ୍ତି ମିଳିଅଛି । ତେଣୁ କଳାହାଣ୍ଡିରୁ ଏଭଳି ଏକ ମୂର୍ତ୍ତି ପ୍ରାପ୍ତି ସମଗ୍ର ଭାରତର ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଜୁନାଗଡରେ ଥିବା ଅନ୍ୟଏକ କୌତୂହଳୋଦ୍ଦୀପକ ମୂର୍ତ୍ତି ହେଉଛି ପାଞ୍ଚଫୁଟ ଉଚ୍ଚତା ବିଶିଷ୍ଟ "ହରି ଭୈରବ ମୂର୍ତ୍ତି" । ଏହି ମୂର୍ତ୍ତିଟି ସର୍ବ ଭାରତୀୟ ସ୍ତରରେ ଏକ ବିରଳ ମୂର୍ତ୍ତି କହିଲେ ଅତ୍ୟୁକ୍ତି

Digitized by srujanika@gmail.com

ହେବ ନାହିଁ । ଭାରତୀୟ ମୂର୍ତ୍ତିଗଠନ ପଦ୍ଧତିରେ ଦ୍ୱିମୂର୍ତ୍ତିମାନ ଅଧିକ ଲୋକପ୍ରୀୟ । ସେଥିମଧ୍ୟରୁ ହରି ହର ମୂର୍ତ୍ତି ଅନ୍ୟାନ୍ୟ ମର୍ତ୍ତିଠାରୁ ବେଶ୍ ଜନପ୍ରୀୟ । ଉତ୍ତର କର୍ଣ୍ଣାଗମ ତଥା ସୁପ୍ରଭେଦାଗମ ଆଦି ଶାସ୍ତ୍ରରେ ହରି ସଦାସର୍ବଦା ବାମପାର୍ଶ୍ୱରେ ଓ ହର ସର୍ବଦା ଦକ୍ଷିଣ ପାର୍ଶ୍ୱରେ ରହିବାକୁ ପରାମର୍ଶ ଦିଆ ଯାଇଛି । ଜୁନାଗଡ଼ରୁ ମିଳିଥିବା ଏହି ମୂର୍ତ୍ତିର ବାମ ଉପର ହସ୍ତରେ ଚକ୍ର ଓ ଦକ୍ଷିଣ ଉପର ହସ୍ତରେ ଡମ୍ବରୁ ରହିଛି । ମୂର୍ତ୍ତି ଚତୁର୍ହସ୍ତ ବିଶିଷ୍ଟ । ସାଧାରଣତଃ ଶାସ୍ତ୍ରର ବର୍ଣ୍ଣନାନୁସାରେ ଦକ୍ଷିଣ ଅର୍ଦ୍ଧେକ ବାମ ହେବା ସଦା-ସର୍ବଦା ହରିଙ୍କ ସହ ସମତାଳ ରକ୍ଷାକରି ସୌମ୍ୟ ମୁଦ୍ରାରେ ଓ ଅର୍ଦ୍ଧନାରୀଶ୍ୱର ଚିତ୍ରରେ ଶିବଙ୍କର ଅର୍ଦ୍ଧେକ ଯେଉଁ ଭଳି ଚିତ୍ର ରହିବା କଥା ଏ କ୍ଷେତ୍ରରେ ସେହିଭଳି ରହିବ । (୩୭ କିନ୍ତୁ ଏଠାରେ ଉଲ୍ଲେଖନୀୟ ଦିଗଟି ହେଉଛି ଶିବ ଊର୍ଦ୍ଧ୍ୱଲିଙ୍ଗ ମୁଦ୍ରାରେ ଦଣ୍ଡାୟମାନ ହୋଇଛନ୍ତି । ଶିବଙ୍କର ଏହି ଊର୍ଦ୍ଧ୍ୱଲିଙ୍ଗ ମୂର୍ତ୍ତି ତାଙ୍କର ଭୈରବ ରୂପର ପ୍ରଖ୍ୟାପକ । ଅବଶ୍ୟ ଭାରତବର୍ଷରୁ ଦୁଇଗୋଟି ମାର୍ତ୍ତଣ୍ଡ ଭୈରବ ମୂର୍ତ୍ତି ପୂର୍ବରୁ ମିଳିଅଛି । ତେଣୁ ତାନ୍ତ୍ରିକ ଉପାସକରେ ଏହି ଦ୍ୱିମୂର୍ତ୍ତିକୁ ପୂଜା କରିବା ପାଇଁ ହରଙ୍କର ଭୈରବ ରୂପ ପ୍ରଦାନ କରାଯାଇଛି । ତେଣୁ ଏହି ହରି ଭୈରବ ମୂର୍ତ୍ତି ମୂର୍ତ୍ତିକଳା ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନଦାବୀ କରିଥାଏ ।

ଦାଦପୁରର ନୀଳକଣ୍ଠେଶ୍ୱର ମନ୍ଦିରର ଇଷ୍ଟଦେବ ନୀଳକଣ୍ଠେଶ୍ୱର ଏକ ପଞ୍ଚମୁଖା ଶିବଲିଙ୍ଗ । ଶିଳ୍ପଶାସ୍ତ୍ରର ନିୟମ ଅନୁଯାୟୀ ମନୁଷ୍ୟକୃତ ଶିବଲିଙ୍ଗମାନଙ୍କ ମଧ୍ୟରୁ ମୁଖଲିଙ୍ଗ ଅନ୍ୟତମ । କାରଣ ଶିବଲିଙ୍ଗ ଉପରେ ମନୁଷ୍ୟ ମୁଖର ଚିତ୍ର କରା ଯାଇଥାଏ । ଏହି ମୁଖଲିଙ୍ଗ ଗୁଡ଼ିକରେ ଗୋଟିଏ ମୁହଁଠାରୁ ଆରମ୍ଭ କରି ପଞ୍ଚ ମୁଖ ପର୍ଯ୍ୟନ୍ତ ରହିଅଛି । ମୁଖଲିଙ୍ଗ ଗୁଡ଼ିକ ଅଧିକ ଫଳପ୍ରଦକାରୀ ବୋଲି ବିଶ୍ୱାସ କରାଯାଇଥାଏ । ସେଥିପାଇଁ କାରଣା-ଗମରେ କୁହା ଯାଇଛି

> ମୁଖଲିଙ୍ଗମ୍ ତତୋ ବକ୍ଷେ ସର୍ବ କାମାର୍ଥ ସାଧନମ୍
> ପୂଜାଭାଗଂ ସମସ୍ତଂତୁ ଦ୍ୱିଷଷ୍ଟଯନ୍ଦଂ ଭବେତ୍ କ୍ରମାତ୍" (୩୮)

ଭାରତ ବର୍ଷରେ ଅଦ୍ୟାବଧି ମିଳିଥିବା ମୁଖଲିଙ୍ଗ ମାନଙ୍କରେ ସଂଖ୍ୟା ସେତେ ବହୁଳ ନୁହେଁ ତନ୍ମଧ୍ୟରୁ ପଞ୍ଚମୁଖା ଶିବଲିଙ୍ଗ ଅତ୍ୟନ୍ତ ବିରଳ । ଶିବଙ୍କୁ ପଞ୍ଚାନନ ବୋଲି କୁହା ଯାଇ-ଥାଏ । ଶିବଙ୍କର ଯେଉଁ ପାଞ୍ଚମୁଖ ଶିବଲିଙ୍ଗ ସହ ସଂଯୋଗ କରାଯାଇଥାଏ ତାହା ଶିବଙ୍କର ପାଞ୍ଚଗୋଟି ସ୍ୱରୂପ ପ୍ରକଟନ କରିଥାଏ । ସେହି ସମସ୍ତ ମୁଖ ଗୁଡ଼ିକ ହେଉଛି (୧) ସଦ୍ୟୋଜାତ (୨) ବାମଦେବ (୩) ଅଘୋର (୪) ତତ୍ପୁରୁଷ ଓ (୫ ଈଶାନ । ଶିବଲିଙ୍ଗର ଠିକ୍ ଶୀର୍ଷରେ ଥିବା ମୁଖଟିର ନାମ ଈଶାନ ଅଟେ । ଅନ୍ୟ ଚାରିଟି ମୁଖ

Digitized by srujanika@gmail.com

ଚାରି ଦିଗକୁ ମୁହଁ କରି ରହିଥାନ୍ତି । ଏହି ପାଞ୍ଚଗୋଟି ମୁଖ ପାଞ୍ଚଗୋଟି ସଦାଶିବତତ୍ତ୍ୱ ଯଥାକ୍ରମେ ଶିବ ସଦାଖ୍ୟ, ଅମୂର୍ତ୍ତସଦାଖ୍ୟ, ମୂର୍ତ୍ତ ସଦାଖ୍ୟ, କର୍ତ୍ତାର ସଦାଖ୍ୟ ଓ କର୍ମ ସଦାଖ୍ୟର ପ୍ରତିନିଧିତ୍ୱ କରିଥାଏ । (୩୯) ତେଣୁ କଳାହାଣ୍ଡିରେ ଏଭଳି ଏକ ଶିବଲିଙ୍ଗ ରହିଥିବାରୁ ଶୈବଧର୍ମ ଓ ଶିବ ଉପାସନା ଏହି ଭୂମିରେ କେତେ ବ୍ୟାପକ ଥିଲା ତାହା ସହଜରେ ଅନୁମିତ ହୋଇଥାଏ । ସେହି ଦାଦପୁର ଠାରେ ଗୋଟିଏ କମନୀୟ ବିଷ୍ଣୁ ମୂର୍ତ୍ତି ରହିଛି । ମୂର୍ତ୍ତିଟିର ଚତୁର୍ଦ୍ଦିଗରେ ଦଶାବତାର ମଧ୍ୟରୁ କେତୋଟି ଅବତାର ଖୋଦନ କରାଯାଇଛି । ଏଥିରେ ବୁଦ୍ଧଦେବଙ୍କୁ ଅନ୍ୟତମ ଅବତାର ରୂପେ ଗ୍ରହଣ କରା-ଯାଇଛି । କଦା ଐତିହାସିକଗଣଙ୍କ ମତରେ ଗୋଟିଏ ସମୟରେ ବୌଦ୍ଧ ଓ ହିନ୍ଦୁକଳା ମଧ୍ୟରୁ ସାମଞ୍ଜସ୍ୟ ପରିଲକ୍ଷିତ ହେଲା ଓ ଉଭୟ ମଧ୍ୟରେ ବିଶେଷ ପାର୍ଥକ୍ୟ ରହିଲା ନାହିଁ । ବୁଦ୍ଧଦେବଙ୍କୁ ବିଷ୍ଣୁଙ୍କର ଏକ ଅବତାର ରୂପେ ଗ୍ରହଣ କରି ନେବା ଫଳରେ ବୌଦ୍ଧଧର୍ମ ଭାରତ ବର୍ଷରେ ନିଜର ଲୋକପ୍ରୀୟତା ହରାଇ ଥିବା କଥା ଐତିହାସିକଗଣ ବିଶ୍ୱାସ କରିଥାନ୍ତି । ଏହି ମୂର୍ତ୍ତିଟିର ଗଠନରୀତି ଏକ ଉନ୍ନତ କଳାର ପରିଚୟ ପ୍ରଦାନ କରିଥାଏ । ଏହାବ୍ୟତୀତ ଜୁନାଗଡ଼ଠାରେ ଏକ ଦ୍ୱିଭୁଜା ଛିନ୍ନ ମସ୍ତା ମୂର୍ତ୍ତି ରହିଅଛି । ମୂର୍ତ୍ତିଟିର ଦକ୍ଷିଣ ହସ୍ତରେ ତ୍ରିଶୂଳ ଓ ବାମହସ୍ତରେ ଏକ ନରମୁଣ୍ଡ ରହିଛି ।

ଖଡିଆଳ ସଂଗ୍ରହାଳୟରେ ଥିବା ଭଗ୍ନ ବିଷ୍ଣୁମୂର୍ତ୍ତିଟି ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ମୂର୍ତ୍ତି । ଉକ୍ତ ମୂର୍ତ୍ତିଟିର ବକ୍ଷଠାରୁ ଉପର ଅର୍ଦ୍ଧାଂଶ ମାତ୍ର ରହିଅଛି । ବିଷ୍ଣୁ କିରୀଟ ମୁକୁଟ ଧାରଣ କରିଛନ୍ତି ଓ କର୍ଣ୍ଣରେ କୁଣ୍ଡଳ ଅଛି । ମୂର୍ତ୍ତିଟି ଚତୁର୍ଭୁଜ ବିଶିଷ୍ଟ । ଉପର ଦୁଇଟି ହସ୍ତରେ ଶଙ୍ଖ ଓ ଚକ୍ର ରହିଛି କିନ୍ତୁ ତଳ ହସ୍ତ ଦୁଇଟି ଭାଙ୍ଗି ଯାଇଛି । ମୂର୍ତ୍ତିଟିର ମୁକୁଟ ଉପରେ ସିଂହମୁଖ ଅଙ୍କନ କରାଯାଇଛି । ବିଷ୍ଣୁ ମୂର୍ତ୍ତିର ମସ୍ତକ ଉପରେ ସିଂହର ମୁଖ ରହିଥିବା ନିଶ୍ଚିତ ରୂପେ କୌତୂହଳୋଦ୍ଦୀପକ । ଦଶାବତାର ମଧ୍ୟରେ ନୃସିଂହଙ୍କୁ ଏକ ଅବତାର ରୂପେ ଗ୍ରହଣ କରାଯାଏ ଓ ଏହା ନର ଓ ସିଂହ ଏକ ମିଳିତ ରୂପ । ମୂର୍ତ୍ତିକଳାରେ ବିଷ୍ଣୁଙ୍କୁ ନୃସିଂହ ରୂପେ ଗଠନ କରିବା ପୂର୍ବରୁ ପ୍ରାରମ୍ଭିକ ଭାବେ ଏହି ମୂର୍ତ୍ତିଟିରେ କେବଳ ସିଂହ ମସ୍ତକକୁ ସଂଲଗ୍ନ କରାଯାଇଛି । ତେଣୁ ନୃସିଂହ ମୂର୍ତ୍ତି ଗଠନ ହେବା ପୂର୍ବରୁ ବିଷ୍ଣୁଙ୍କ ସହ ପ୍ରାଥମିକ ଭାବେ ଏହି ଭଳି ସିଂହକୁ ସାମିଲ କରାଯାଇଛି ଓ କାଳକ୍ରମେ ନର ଓ ସିଂହର ଏକ ମିଶ୍ରିତ ରୂପର ପରିକଳ୍ପନା କରାଯାଇଛି ନରସିଂହ ମୂର୍ତ୍ତିରେ ସିଂହର ମୁଖ ଓ ମନୁଷ୍ୟର ଦେହ ରହିଥାଏ । ତେଣୁ ମୂର୍ତ୍ତିର ଶିରୋଦେଶରେ ସିଂହର ମୁଖ ରହିଥିବାରୁ ଭାରତୀୟ ଧର୍ମୀୟ ପରମ୍ପରାରେ ଏହି ମୂର୍ତ୍ତିଟି ସ୍ୱତନ୍ତ୍ର ମର୍ଯ୍ୟାଦାର ସ୍ଥାନ ରଖେ ।

Digitized by srujanika@gmail.com

## କଳାହାଣ୍ଡିର ମନ୍ଦିର :–

କଳାହାଣ୍ଡିରେ ଥିବା ମନ୍ଦିର ମାନଙ୍କର ଗଠନରିତୀ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା ଏହି ପ୍ରବନ୍ଧରେ କଳେବର ଦୃଷ୍ଟିରୁ ସମ୍ଭବ ହେଉନାହିଁ । ଏଠାରେ ମାତ୍ର କେତୋଟି ମୁଖ୍ୟ ଧାରା ସମ୍ପର୍କରେ ମାତ୍ର ସୂଚନା ଦିଆଯାଇଛି । ଫର୍ଗୁସ ଲୁଇ ଫାବ୍ରୀ ୬ଷ୍ଠ/୭ମ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ହିନ୍ଦୁ ମନ୍ଦିର ଗଠନ ହୋଇ ନଥିବାର ମତବ୍ୟକ୍ତ କରିଛନ୍ତି ।(୪୦) କିନ୍ତୁ ଏଭଳି ମତାମତ ଗ୍ରହଣ ଯୋଗ୍ୟ ନୁହେଁ । ଅବଶ୍ୟ ସେ ଉପକୂଳବର୍ତ୍ତୀ ଓଡ଼ିଶାକୁ ହିଁ ବୁଝିଛନ୍ତି ମାଘଗୁଡ଼ା ଉପତ୍ୟକାରେ ପଞ୍ଚମ ଶତାବ୍ଦୀର ଏକ ଶାକ୍ତ ମନ୍ଦିର ଥିବାର ପ୍ରମାଣ ମିଳିଛି । ଏହି ମନ୍ଦିରଟିର ମୂଳଦୁଆର ପ୍ଲାନ ଅତ୍ୟନ୍ତ ସରଳ । ଅର୍ଥାତ୍ ଏହା ଆୟତାକାରର । ସୋମବଂଶୀ ଶାସକମାନଙ୍କ ଅମଳରେ ଗଜପତି କାଳରେ ତ୍ରିରଥ ଓ ପଞ୍ଚରଥ ମନ୍ଦିର ନିର୍ମାଣ କରାଗଲା ଏବଂ ସେହି ସମୟରେ ଦକ୍ଷିଣ କୋଶଳରେ ଏକ ସ୍ୱତନ୍ତ୍ର ମନ୍ଦିର ନିର୍ମାଣ ଶୈଳୀ ଗଢ଼ି ଉଠିଥିଲା ତାହା କୋଶଳ ପଦ୍ଧତିର ଦେଉଳ ନାମରେ ପରିଚିତ । ବୁଢ଼ୀକୋମନାର ଶିବ ମନ୍ଦିରଟିକୁ ଏହି ଶ୍ରେଣୀର ମନ୍ଦିର ବୋଲି ଶ୍ରୀ ସିଂହଦେବ ମତବ୍ୟକ୍ତ କରିଛନ୍ତି । (୪୧) କଳାଚରମାନେ ଉଭୟ କଳା କ୍ଷେତ୍ରରେ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିବା ଉଦ୍ଦେଶ୍ୟରେ ମନ୍ଦିରର ଗଣ୍ଡିରେ ସର୍ପ ଫଣାର ଚିତ୍ର ଗଢ଼ିଲେ ଓ ଗହଳପରି ବେକୀକୁ ଅତିକ୍ରମ କରି ତ୍ରିଧାର ବିଶିଷ୍ଟ ଅମଳକ ଶିଳାକୁ ସ୍ପର୍ଶକଲା । ଖଡ଼ିଆଳ ବିଶିବନ୍ଧ ଶିବ ମନ୍ଦିରର ଗଠନରିତୀ ଏହିପରି । ନାଗମାନେ ମନ୍ଦିର ନିର୍ମାଣ କ୍ଷେତ୍ରରେ କଳିଙ୍ଗ ଶୈଳୀକୁ ଅନୁସରଣ କଲେ ଓ ଚୌହାନମାନେ ମଧ୍ୟଯୁଗରେ ନିର୍ମିତ ହୋଇଥିବା ଆକର୍ଷଣୀୟ ମନ୍ଦିର ଶୈଳୀକୁ ଅନୁସରଣ ନକରି ନିଜର ମନ୍ଦିର ଗୁଡ଼ିକ ଯଥା ସମ୍ଭବ ସରଳ ଓ ନିରାଭରଣ କରିବା ଉଦ୍ୟମ କଲେ ।

## କଳାହାଣ୍ଡିର ଲୋକ କଳା :—

କଳାର ଏଭଳି ଶାସ୍ତ୍ରୀୟ ଧାରା ଭିନ୍ନ ସମାଜରେ ସମତାଳରେ ଲୋକ ଜୀବନକୁ ଆଧାର କରି ଅନ୍ୟଏକ ଅଲିଖିତ କଳା ପ୍ରଭାବ ବିସ୍ତାର କରିଥିବାର ଦେଖାଯାଏ । ତାହା ଲୋକ କଳା ନାମରେ ପରିଚିତ । କଳାହାଣ୍ଡିର କଳା ସମ୍ବନ୍ଧରେ ଆଲୋଚନା କଲାବେଳେ ଲୋକ କଳା ସମ୍ପର୍କରେ ସାମାନ୍ୟ ସୂଚନା ନଦେଲେ ପ୍ରବନ୍ଧଟିର ଉଦ୍ଦେଶ୍ୟ ଅସମ୍ପୂର୍ଣ୍ଣ ରହିଯିବ । ମଧ୍ୟପ୍ରଦେଶର ଛତିଶଗଡ ଅଞ୍ଚଳରେ ଓ ଓଡ଼ିଶାର ପଶ୍ଚିମାଞ୍ଚଳରେ ହରିଆଲୀ ଉତ୍ସବ ପାଳନ କରାଯାଏ । ଏହି ଅବସରରେ ଚିତାରେ ହସ୍ତର ଏକ ଚିହ୍ନ ଦିଆଯାଏ । ତାହା "ହାତ ଛେନା" ନାମରେ ପରିଚିତ । ସମ୍ପୂର୍ଣ୍ଣ ହସ୍ତ ପାପୁଲିର ଚିହ୍ନ ବା ତିନୋଟି ଆଙ୍ଗୁଠିର ଚିହ୍ନ କାଳକ୍ରମେ ଧର୍ମୀୟ ବ୍ୟାପର ସହ ସାମିଲ ହୋଇଯାଇଛି । ଏବେ ମଧ୍ୟ

Digitized by srujanika@gmail.com

ଗୋବର ଉପରେ ତିନି ଆଙ୍ଗୁଳି ଚିହ୍ନ ଦେବାର ଦେଖାଯାଉଛି । ପ୍ରାଗ ଐତିହାସିକ ଯୁଗରେ ଭାରତର ଗୁମ୍ଫା ଚିତ୍ରମାନଙ୍କରେ ଏହି ଚିହ୍ନ ଦିଆଯାଉଥିଲା । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଆମେରିକାର ଏରିଜୋନା ଠାରେ ଥିବା ଗୁମ୍ଫାଚିତ୍ରରେ ମଧ୍ୟ ଏଭଳି ଚିହ୍ନଅଛି । (୪୨) ଭାରତରେ ଉକ୍ତ ଚିହ୍ନକୁ ଦେବୀ ମଙ୍ଗଳାଙ୍କର ହସ୍ତ ବୋଲି ବିଶ୍ୱାସ କରଯାଏ ଓ ଏହି ହସ୍ତ ସୁରକ୍ଷା ଓ ସାହାଯ୍ୟର ପ୍ରସାରିତ ହସ୍ତ ବୋଲି ଗଣନା କରଯାଏ । ଏହି ଭଳି ଚିହ୍ନ ଗୋବର ଉପରେ ଏବେ ମଧ୍ୟ କରଯାଇଛି ଓ ଏହା ଲୋକ ବିଶ୍ୱାସରେ ନିଜର ଆସ୍ଥାନ ଦୃଢ଼ କରି ରଖିଛି । କିନ୍ତୁ ଆଶ୍ଚର୍ଯ୍ୟର କଥା ନେହେନା ପାଠରୁ ପଥର ଉପରେ ତିନି ଆଙ୍ଗୁଳି ଚିହ୍ନ ଥିବା ଏକ କ୍ଷୁଦ୍ର ପଥର ଖଣ୍ଡ ମିଳିଛି । ସୁତରାଂ ପ୍ରାଚୀନ କଳାହାଣ୍ଡି ଭୂଖଣ୍ଡର ଲୋକ କଳାରେ ଏହି ଚିହ୍ନ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି ।

ମୃତ୍ତିକା ଚିତା ପକାଇବାକୁ ଅନ୍ୟତମ ଲୋକ କଳା ଭାବରେ ଗ୍ରହଣ କରଯାଏ । ମାର୍ଗଶୀର ମାସରେ ଲକ୍ଷ୍ମୀ ପୂଜା ଅବସରରେ ଅଥବା କାର୍ତ୍ତିକ ମାସରେ ବିଭିନ୍ନ ପ୍ରକାରର ଚିତା ମୃତ୍ତିକାରେ ଦାଣ୍ଡ ଘର ବା ତୁଳସୀ ଚଉରା ମୂଳକୁ ସଜା ଯାଇଥାଏ । କଳାହାଣ୍ଡିରେ ଚିତା ପାଇଁ ଆବଶ୍ୟକୀୟ ରଙ୍ଗ ନିଜ ପରିବେଶ ଉପଲବ୍ଧ ଉପାଦାନ ମାନଙ୍କରୁ ସଂଗ୍ରହ କରଯାଇଅଛି । ଯଥା :— ଧଳାରଙ୍ଗ ପାଇଁ ଗୁଣ୍ଡଳ ବା ଅଟା ଚୂନା ଅଥବା ଛୁହିମାଟିକୁ, ଲାଲରଙ୍ଗ ପାଇଁ ଗୁଣ୍ଡଳ ଓ ଅଳତାର ମିଶ୍ରଣ, କଳା ରଙ୍ଗ ପାଇଁ ନଡ଼ିଆ ଖୁଡ଼ପିର ଅଙ୍ଗାର, ହଳଦୀରଙ୍ଗ ପାଇଁ ଗୁଣ୍ଡଳଚୂନା ଓ ହଳଦୀ ଗୁଣ୍ଡର ମିଶ୍ରଣ, ସବୁଜରଙ୍ଗ ପାଇଁ ଅଗସ୍ତି ପତ୍ରର ଗୁଣ୍ଡ ଆଦିକୁ ଉପଯୋଗ କରଯାଉଛି । ଏହାବ୍ୟତୀତ କଳାହାଣ୍ଡିର ଅଧିକାଂଶ ମାଟି ଘର ଥିବା ଘରକୁ ଲାଲ ଓ ଧଳାର ଏକ ବିଚିତ୍ର ରଙ୍ଗ ପ୍ରଦାନ କରଯାଇ ଆକର୍ଷଣୀୟ କରଯାଉଛି । ଲାଲମାଟି ମିଳୁଥିବାରୁ କାନ୍ଥର ଉପର ଅଂଶକୁ ଲାଲ ରଖାଯାଉଛି ଓ ଠିକ୍ ତଳେ ଏକ ସରୁ ଧାରର କଳାରଙ୍ଗ କରଯାଉଛି । ଏହି କଳାରଙ୍ଗଟି ଗୋବର ଓ ପାଳ ଅଙ୍ଗାର ମିଶ୍ରଣରୁ ପ୍ରସ୍ତୁତ ଏକ ଦ୍ରବଣ । ତତ୍ ସଙ୍ଗେ ସଙ୍ଗେ କାନ୍ଥସାରା ଓଡ଼ିଶାର ପୂର୍ବାଞ୍ଚଳର କାନ୍ଥପରି ଚିତା ଲେଖା ନଯାଇ ଏଠାରେ କାନ୍ଥ କରାଥିବା ବେଳେ ଉପରୁ ତଳକୁ ଶିର ଶିର କରି ଏକ ବୃକ୍ଷର ଆକୃତି ପ୍ରଦାନ କରଯାଉଛି ।

ଆର୍ଯ୍ୟେତର ସମ୍ପ୍ରଦାୟରେ ମହିଳାମାନେ ଦେହରେ ବିଭିନ୍ନ ଆକୃତିର ଚିତାମାନ କୁଟେଇ-ଥାନ୍ତି । ମୃତ୍ୟୁବେଳକୁ ସଙ୍ଗରେ କେବଳ ଏହି ଚିତାତକ ନେଇ ହେବ ବୋଲି ଲୋକ ବିଶ୍ୱାସ ଅଛି ।

କଳାହାଣ୍ଡିରେ ଭଦ୍ରବ ଅମାବାସ୍ୟାରେ ଛୋଟ ପିଲମାନଙ୍କ ଦ୍ୱାରା ଅନୁଷ୍ଠିତ ହେଉଥିବା ପୁରଖେଳରେ ବ୍ୟବହୃତ ମାଟିର ଖେଳନା ସାମଗ୍ରୀ ଏ ଜିଲ୍ଲାର ଲୋକ କଳାର ଏକ

Digitized by srujanika@gmail.com

ଉତ୍କୃଷ୍ଟତମ ଦକ୍ଷିଣ । ଏହି ଦିନ ମାଟିର ହାତୀ ଘୋଡ଼ା, ବଳଦ ଓ ଛୋଟ ଛୋଟ ଖେଳନା ହାଣ୍ଡି କରେଇ ଚୁଲି ଆଦି ଦ୍ୱାରା ଶିଶୁମାନେ ଖେଳିଥାନ୍ତି । ମାଟିର ଏହି ମୂର୍ତ୍ତି ଗୁଡ଼ିକର ଗଠନରେ ଏବେ ମଧ୍ୟ ପ୍ରାଚୀନତାର ଛାପ ସୁସ୍ପଷ୍ଟ । ପୂର୍ବରୁ କୁହାଯାଇଛି ଯେ ନୂତନ ପ୍ରସ୍ତର ଯୁଗରୁ ମାନବ ମାଟି ପାତ୍ର ନିର୍ମାଣ କରିବା ଶିଖିଲା ଓ କାଳକ୍ରମେ କୁମ୍ଭ-କାର ଏକ ଦକ୍ଷ ଜାତିରୂପେ ଆତ୍ମ ପ୍ରକାଶ କଲା । କଳାହାଣ୍ଡିର ପୂଷ ଉତ୍ସବ ଦିନେ ସେ କାଳର ପରମ୍ପରାକୁ ବଜାୟ ରଖିବା ପାଇଁ ପଶ୍ଚିମବଙ୍ଗର ବାଙ୍କୁଡ଼ା ଜିଲ୍ଲାର କୁମ୍ଭାରିମାନେ ବର୍ଷର ଏକ ପର୍ବ ଦିନରେ ମାଟିରେ ବିଭିନ୍ନ ଆକାରର କଣ୍ଢେଇମାନ ନିର୍ମାଣ କରୁଛନ୍ତି । (୪୩) ବଙ୍ଗଳାର କୁମ୍ଭକାର ମହିଳାମାନେ ଏବେ ମଧ୍ୟ ମାଟିରେ ପଶୁ ପକ୍ଷୀ ବିଭିନ୍ନ ପ୍ରକାର କଣ୍ଢେଇ ଆଦି ଗଠନ କରୁଛନ୍ତି । ତେଣୁ କଳାହାଣ୍ଡିର ଧର୍ମୀୟ ପରମ୍ପରା ସହ ସାମିଲ ହୋଇ ପ୍ରାଚୀନ କାଳରୁ ଏ ଲୋକକଳାଟି ଯେ ଅବିକୃତ ଭାବେ ଏ ଯାବତ୍ ରହି ଆସୁଛି ତାହାହିଁ ପର୍ଯ୍ୟବେକ୍ଷଣର ବିଷୟ ।

ଲୌକିକ ଆବଶ୍ୟକତା ପରିପୂରଣ ନିମିତ୍ତ ଲୋକବିଜ୍ଞାନ ଦ୍ୱାରା ପ୍ରସ୍ତୁତ ହେଉଥିବା ଅନେକ ଉପକରଣରେ ମଧ୍ୟ ଲୌକିକ କଳାର ଆତ୍ମପ୍ରକାଶ ଘଟିଥାଏ । ଉଦାହରଣ ସ୍ୱରୂପ କଳାହାଣ୍ଡିର ଗ୍ରାମୀଣ ମହିଳାମାନଙ୍କ ଦ୍ୱାରା ନିର୍ମାଣ କରଯାଉଥିବା ବିଭିନ୍ନ ଟୋକେଇ, ହାତ ପଙ୍ଖା, ମସିଣା ତାଳପତ୍ରର ଛତା ଆଦିରେ ସ୍ଥାୟୀ ଆଞ୍ଚଳିକ କଳା ବୈଶିଷ୍ଟ୍ୟ ଅନୁ-ଭୂତ ହୁଏ । ଏହା ବ୍ୟତୀତ କଳାହାଣ୍ଡିର ଯୋଗିଆ ନାମକ ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟ ଦ୍ୱାରା ଧାନକୁ ଗୁନ୍ଥି ଗୁନ୍ଥି ଏକ ସୁନ୍ଦର ଲକ୍ଷ୍ମୀ ମନ୍ଦିର ନିର୍ମାଣ କରଯାଉଛି । ଏଥିରେ ଏକ ଉନ୍ନତ ମାନର କାରୀଗରୀ କୌଶଳର ଉପଯୋଗ କରଯାଏ । ଉକ୍ତ ଲୋକକଳାଟିକୁ ଯଦି ପ୍ରୋତ୍ସାହିତ କରଯାଇ ପାରନ୍ତା ଓ ଏହାର ବିକାଶ ପାଇଁ ସୁବିଧା କରଯାଇ ପାରନ୍ତା ତେବେ ଏହି ନିଜର ବୃତ୍ତିଭାବେ କେତୋଟି ପରିବାର ଗ୍ରହଣ କରିପାରନ୍ତେ ।

କଳାହାଣ୍ଡି ଜନତା ପୂର୍ବେ ବାଉଁଶ ଉପରେ ଲେଖୁଥିଲେ ଓ ବିଭିନ୍ନ ଚିତ୍ର ଅଙ୍କନ କରୁ-ଥିଲେ । ବାଉଁଶକୁ ଲେଖାର ଏକ ମାଧ୍ୟମରୂପେ ପୂର୍ବ ଭାରତରେ ଗ୍ରହଣ କରଯାଉଥିଲା । ନିକଟରେ ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାରୁ ଗୋଟିଏ ଏହିପରି ଲେଖା ଯାଇଥିବା ବାଉଁଶ ଠେଙ୍ଗାକୁ ସଂଗ୍ରହ କରଯାଇଛି । କଳାହାଣ୍ଡିରେ ମଧ୍ୟ ସେହିପରି ବାଉଁଶ ଠେଙ୍ଗା-ମାନ ରହିଅଛି । ଘୁନେଲ୍ ଗ୍ରାମରେ ଥିବା ଏହିପରି ଏକ ଠେଙ୍ଗାକୁ ସଂଗ୍ରହ କରି ଖଡ଼ିଆଳ ସଂଗ୍ରହାଳୟକୁ ଆଣିବା ପାଇଁ ଉଦ୍ୟମ କରଯାଉଛି । ଏଭଳି କଳାଟି ରୈଖିକ କଳା (graphic art) ଭାବରେ ପରିଚିତ ।

ସୁତରାଂ କଳାହାଣ୍ଡିର ଲୋକକଳା ତାର ସ୍ୱକୀୟ ମହତ୍ତ୍ୱ ବହନ କରି ବିବିଧ ଧାରାରେ ଏବେ ମଧ୍ୟ ଜନ ଜୀବନକୁ ପ୍ରଭାବିତ କରିବାରେ ଲାଗିଛି ।

Digitized by srujanika@gmail.com

କଳାହାଣ୍ଡିର କଳା ଓ ସ୍ଥାପତ୍ୟ ସମ୍ବନ୍ଧରେ ଅଦ୍ୟାବଧି ବିଧିବଦ୍ଧ ଗବେଷଣା ହୋଇନାହିଁ । ଏ ପ୍ରବନ୍ଧଟିରେ ସାମଗ୍ରୀକ ଭାବେ ସାମାନ୍ୟ ସୂଚନା ପ୍ରଦାନ କରିବାର ପ୍ରୟାସ କରାଯାଇଛି ମାତ୍ର । ଏବେ ମଧ୍ୟ କଳାହାଣ୍ଡିରେ ଅନ୍ୟୁନ ଏକଶହରୁ ଊର୍ଦ୍ଧ୍ୱ ପ୍ରତ୍ନ ତାତ୍ତ୍ୱିକ ପୀଠ ରହିଅଛି, ଯେଉଁଠାରୁ ପ୍ରାଚୀନ ଇଟା, ମୂର୍ତ୍ତି ତଥା ଅନ୍ୟାନ୍ୟ ପ୍ରତ୍ନ ସଂପଦମାନ ମିଳୁଅଛି । କଳାହାଣ୍ଡିରେ ଥିବା ସମସ୍ତ ପ୍ରତ୍ନ ତାତ୍ତ୍ୱିକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ଗୁଡ଼ିକୁ ବୈଜ୍ଞାନିକ ପଦ୍ଧତିରେ ସର୍ଭେ କରାଗଲେ ଇତିହାସର ବହୁ ଲୁକ୍କାୟିତ ତଥ୍ୟ ଲୋକ ଲୋଚନକୁ ଆସି ପାରିବ । ତେଣୁ ଏହି ପରିପ୍ରେକ୍ଷୀରେ ଆଗ୍ରହୀ ଗବେଷକ ମାନଙ୍କୁ ଏ କ୍ଷେତ୍ରରେ ଧ୍ୟାନ ଦେବାପାଇଁ ଆହ୍ୱାନ କରାଯାଉଛି ।

ଜିଲ୍ଲା ସଂସ୍କୃତି ଅଧିକାରୀ, କଳାହାଣ୍ଡି
ଭବାନୀପାଟଣା

## ସହାୟକ ସୂଚୀ

1- S N Rajguru, Journal of K H R J- Jan 950 Page 243.

2- Kalahandi district Gazetter - 1980 - Page 36

3- S. Pradhan' Prehistoric Rock art in Orissa"- New arpeets of History of Orissa. Ed- P. K. Mishra Sambalpur University 1988 Page- 5.

4- (a) Kalahandi district Gazetters. 1980- Page-36.
   (b) ରବିନାରାୟଣ ଦାଶ ଓଡ଼ିଶାର ପ୍ରାଗୈତିହାସିକ ଚିତ୍ରକଳା- (ରଙ୍ଗରେଖା) ଓଡ଼ିଶା ଲଳିତ କଳା ଏକାଡେମୀ ମୁଖପତ୍ର– ୧୯୮୫ ପୃ– ୫/୬

5- J. P. Singdeo ; Cultural prefiles of South koral-1987 Gyan Publishing Home, NewDelhi Page- 20/21.

6- Art and crafts of west Bengal- Binay Ghose Calcutta 1981 Page- 3.

7- Kalahandi District Gazetters Page- 38.

8- (a) J. P. Singdeo, Cultural Profiles of South koral Page- 324.
   (b) Singhdeo J. P. "Systematic Archaeological exploration and Excavation requirad in wastern Orissa" O H R J. Vol XXXII No- 3-4 Pages- 8–9.

Digitized by srujanika@gmail.com

9- Vastu Sastra- Vol II (Hindu Canous of Econography and Paintings)- D. N. Sukla Punjab University Page- 30.

10- Sacred Book of the Buddhists Vol V Page- 137.

11- Banarjea· J. N. ',The worship of Images" The Hist and culture of the Indian people- Vol II, The Age of Impesial Unity, Bombay 1968 Page- 452.

12- Hindu Canons of Econography and Paintings- D. N. Sukla. Page 32.

13- Sculptule in India Its History & Art. L. N. Mathur NewDelhi– 1976 Page- 7.

14- J. P Singhdeo, Cultural Profite of South Kosal Page- 325.

15- Kalahandi District Gazetters Page- 165

16- J. P. Singhdeo, "Cultural Profiles of South Koral Page- 325.

17- J. P Singhdeo- Archaeological remains of Junagarh ( Unpublished )

18- ଖଡ଼ିଆଳ ସାହିତ୍ୟ ସମିତି ଷଢବାର୍ଷୀକ ସ୍ମରଣିକା– ୧୯୮୩

19- P. K. Mishra "The Durga Icons" New aspects of Hist of Orissa- Vol II, Sambalpur University- 1978 Pages- 2-3.

20- ଦେବୀ ଲଙ୍କେଶ୍ୱରୀ –ପ୍ରଫୁଲ୍ଲ କୁମାର ସାମନ୍ତରାୟ ଏଷଣା– ୪ମ ଖଣ୍ଡ

21- Thomas E Donaldson, "Studi as in Hindu temple art of Orissa" Vol 1. E J Brill- Leideu, The Netherlands 1985 (Belkhandi)

22- ସତୀ ପ୍ରଥା ଓ ସତୀ ସ୍ମାରକୀ ପ୍ରବର ପ୍ରଫୁଲ୍ଲ କୁମାର ସାମନ୍ତରାୟ– ଆସନ୍ତାକାଲି– ଜାନୁୟାରୀ– ୧୯୮୮

23- Sculpture in India- Its History P Ast- L. N. Mathur NewDelhi 1976 Page- 11.


Digitized by srujanika@gmail.com

24- Sahu, W. K. "University museum, Its bearing on History of Orissa," New arpects of History of Orissa Vol II. Sambalpur University, 1978 Page- 67.

25- D. A Chopdar. Asculpture in the University museum depicting abduction Scene. New aspects of History of Orissa Vol II Ed- N. K. Sahu S V- 1978 Page 53–55.

26- Sculpture in India- Its History and Art- L. N- Mathur- Page 17.

27- Amgura Copperplate af gayraj:- vide : Indian museum bulletion ; Vol XI No- 1 Jan 1976 Calcutta. Page- 57.

28- History of the Art of Orissa Charlen Louis Fabri- 1974 Plate LXIX.

29- ତତ୍ରୈବ ପୃ-୨୯

30- Schwartz berg, J. E (ed) A Historical Atlas of South Asia, chicago University U. S A. 1978 Page 16 Plate III, B-2).

31- Sahu. K. C. ' A report on the Precious and Senci Precious stones (beads) recoved from Asur gash excavation. New aspects of History of Orissa- Vol- II 1978- S. V- Pages 23-25.

32- Inter national Seminar on changing tribal Culture 1989 Cuttack.

33- Hindu Canons of Econagraphy & Paintings D N- Sukla. Page- 296.

34- ତତ୍ରୈବ – ପୃ- ୧୭୩

35- ,, – ପୃ- ୧୭୪

36- ,, – ପୃ- ୧୭୬

37- ,, – ପ୍ରତିମା ବିଜ୍ଞାନ- ପୃ- ୧୩୨

Digitized by srujanika@gmail.com

38- ତତ୍ରୈବ – ପୃ– ୨୫୩

39- History of the Art of Orissa- Charles louis Fabri- Page- 30.

40- Singhdeo, J P., "Cultural Profiles of south kosal," 1987- Pages 329- 332

41- Kosal Kaumudi- Pt L. P. Pandey Sarma Birth Ceut-nary volume- Ed- Vishu Gopal Thakur and Others.

Rani Sankar University Raipur 1988- Page- 269

42- Traditional Art and Crafts of west Bengal Binoy Ghose. 1981 Page- 17.

Digitized by srujanika@gmail.com

# ॥ କଳାହାଣ୍ଡିର କେତେକ ପ୍ରତ୍ନତାତ୍ତ୍ୱିକ ପୀଠ : ଏକ ବିହଙ୍ଗାବଲୋକନ ॥

ଉମା ଶଙ୍କର କର



କଳାହାଣ୍ଡି ଜିଲ୍ଲାର ବିଭିନ୍ନ ଐତିହାସିକ ଅବଶେଷ ଓ ସ୍ଥାନ ସମ୍ପର୍କରେ କାଁ ଭାଁ କେତୋଟି ପ୍ରବନ୍ଧ ଲେଖାଯିବା ବ୍ୟତୀତ, ଏଯାଏ ବିଧିବଦ୍ଧ ଭାବେ କୌଣସି ଗବେଷଣା ବା ସଂରକ୍ଷଣ କାର୍ଯ୍ୟ ହୋଇ ପାରିନାହିଁ । ଏ ମଧ୍ୟରୁ କେତେକ ଉଲ୍ଲେଖ ଯୋଗ୍ୟ ପ୍ରତ୍ନତାତ୍ତ୍ୱିକ ପୀଠ ହେଉଛି, ନର୍ଲାର ଅସୁରଗଡ, ଟୋପିଗାଁର ଅଷ୍ଟଶମ୍ଭୁ ମନ୍ଦିର, ବେଲଖଣ୍ଡିର ସପ୍ତମାତୃକା ଓ ଚଣ୍ଡମନ୍ଦିର, ବଜ୍ରଗଡ଼, ମାଟଗୁଡ଼ା, ଯୁନାବେଡ଼ା ଉଚ୍ଚଭୂମି, ସାଙ୍କୁଶଗଡ, ମଦନପୁର ଗଡ, ଜୁନାଗଡ ଆଦିର ଐତିହାସିକ ଅବଶେଷ ଇତ୍ୟାଦି । ଏ ସମସ୍ତ ଐତିହାସିକ ପୀଠମାନଙ୍କର ଉପଯୁକ୍ତ ସଂରକ୍ଷଣ ଅଭାବରୁ ଓ ଗୁପ୍ତଧନ ଆଶାୟୀ ବ୍ୟକ୍ତିଙ୍କର ଆକ୍ରମଣରୁ ନଷ୍ଟ ପ୍ରାୟ । ପୁନଶ୍ଚ ଗବେଷଣାର ଅଭାବରୁ ଦକ୍ଷିଣ କୋଶଳର ଏସବୁ ଅଜ୍ଞାତ ପରିଚ୍ଛେଦମାନ ସବୁଦିନ ପାଇଁ ଧ୍ୱଂସ ହେବାକୁ ବସିଛି । ରାଜ୍ୟ ସରକାର ବିଭିନ୍ନ ଐତିହାସିକ ସାମଗ୍ରୀ ସଂରକ୍ଷଣ ପାଇଁ ଖଡ଼ିଆଳ ଓ ବେଲଖଣ୍ଡି ଠାରେ ଦୁଇଟି ଶାଖା ସଂଗ୍ରହାଳୟ ସ୍ଥାପନ କରିଛନ୍ତି । କିନ୍ତୁ ବେଲଖଣ୍ଡି ସଂଗ୍ରହାଳୟଟି ନାମକୁମାତ୍ର ରହି ଖୋଲା ଆକାଶ ତଳେ ଦାୟିତ୍ୱହୀନ ଭାବରେ ବହୁ ମୂଲ୍ୟବାନ ମୂର୍ତ୍ତି ପକାଇ ରଖାଯାଇଛି ।

ଏକଥା ସ୍ୱୀକାର୍ଯ୍ୟ ଯେ କଳାହାଣ୍ଡିର ଅସୁରଗଡ, ବେଲଖଣ୍ଡି ତଥା ବଜ୍ରଗଡ ଆଦି ପ୍ରତ୍ନତାତ୍ତ୍ୱିକ ପୀଠ ମାନଙ୍କ ସମ୍ପର୍କରେ ଏଥି ପୂର୍ବରୁ କେତେକ ଗବେଷକ କିଞ୍ଚିତ୍ ଆଲୋକପାତ କରିଛନ୍ତି । କିନ୍ତୁ ବୈଜ୍ଞାନିକ ପଦ୍ଧତିରେ ଉକ୍ତ ପୀଠମାନଙ୍କ ସମ୍ବନ୍ଧରେ ପୂର୍ଣ୍ଣାଙ୍ଗ ଭାବେ ଏ ଯାବତ୍ କୌଣସି ଗବେଷଣା ହୋଇନାହିଁ । ସୁତରାଂ ଏହି ପୀଠ ମାନଙ୍କର କେତେକ ଅନାଲୋଚିତ ଦିଗ ସମ୍ପର୍କରେ ସୂଚନା ଦେବା ଏହି ପ୍ରବନ୍ଧର ଲକ୍ଷ୍ୟ ।

## ଅସୁରଗଡ଼ :–

ଦକ୍ଷିଣ ପୂର୍ବ ରେଳପଥର ରୂପାରୋଡ଼ ରେଳଷ୍ଟେସନ ଓ ନର୍ଲା ସହର ମଝିରେ ନର୍ଲା ଅସୁରଗଡର ଅବସ୍ଥିତି ।

Digitized by srujanika@gmail.com

ଆଜି ପର୍ଯ୍ୟନ୍ତ ଏହି ଅସୁରଗଡର ପ୍ରତ୍ନତାତ୍ତ୍ୱିକ ଅବଶେଷ ସମ୍ପର୍କରେ ଅନୁସନ୍ଧାନ ପାଇଁ ହୋଇଥିବା ପ୍ରୟାସଟି ଅସମ୍ପୂର୍ଣ୍ଣ ମନେହୁଏ । କାରଣ ଉକ୍ତ ଗଡ ଉପରେ ଆଲୋକପାତ କରିଥିବା ଗବେଷକ ବୃନ୍ଦ କେବଳ କେନ୍ଦ୍ରସ୍ଥଳର ୬୦ ଏକର ପରିମିତ ଭୂମି ଓ ତାହାକୁ ଘେରି ରହିଥିବା ଆୟତାକାର ବିଶିଷ୍ଟ ବିଗଟ ପ୍ରାଚୀରକୁହିଁ ଅସୁରଗଡ ପୂର୍ଣ୍ଣାଙ୍ଗ ପ୍ରତ୍ନତାତ୍ତ୍ୱିକ ପୀଠ ରୂପେ ଗ୍ରହଣ କରି ନେଇଛନ୍ତି । କିନ୍ତୁ ଏହି କେନ୍ଦ୍ରୀୟ ଅବଶେଷ ଭିନ୍ନ ଏହାର ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ଥିବା ପ୍ରତ୍ନତାତ୍ତ୍ୱିକ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କୁ ଅନୁସନ୍ଧାନ ପରିସର ଅନ୍ତର୍ଭୁକ୍ତ କରାଯାଇନଥିବା ଅତ୍ୟନ୍ତ ପରିତାପର ବିଷୟ । ଏହା ଫଳରେ ଉକ୍ତ ଅଞ୍ଚଳ ମାନଙ୍କରୁ ମିଳୁଥିବା ଅବଶେଷକୁ କେନ୍ଦ୍ରୀୟ ପୀଠ ସହ ସମ୍ପର୍କୀକୃତ କରାଯାଇ ନାହିଁ । ସୁତରାଂ ଏହି ଅଞ୍ଚଳର ନିରପେକ୍ଷ ଐତିହାସିକତା ନିରୂପଣରେ ବାଧା ସୃଷ୍ଟି ହେଉଛି ।

ଏବେ ଅସୁରଗଡ ନାମରେ ପରିଚିତ ହେଉଥିବା କେନ୍ଦ୍ରୀୟ ପୀଠଟି ଆୟତାକାର ବିଶିଷ୍ଟ । ଏହାର ପଶ୍ଚିମରେ ସାନ୍ଦୁଲ ନଦୀ ଓ ପୂର୍ବ ଦିଗରେ ୨୦୦ ଏକର ବିଶିଷ୍ଟ ଅସୁର ସାଗର । ଗଡର ପୂର୍ବରୁ ପଶ୍ଚିମକୁ ଥିବା କାନ୍ଥ ଅଧିକ ଲମ୍ବ ବିଶିଷ୍ଟ । ଚାରି ଦିଗରେ ଚାରିଟି ଦ୍ୱାର ଓ ମୁଖ୍ୟ ଦ୍ୱାରଟି ପୂର୍ବ ଦିଗରେ । ଦ୍ୱାର ମାନଙ୍କର ଉଭୟ ପାର୍ଶ୍ୱରୁ ମିଳୁଥିବା ଇଟାମାନଙ୍କର ଗୋଟିଏ ପାଖ ଅଧିକ ଓସାର ଓ ଅନ୍ୟ ପାଖଟି ଅପେକ୍ଷାକୃତ କମ୍ । ଫଳତଃ ଏ ସବୁ ଇଟାମାନଙ୍କୁ ଯୋଡ଼ିଲେ ଆପେ ଆପେ ଅର୍ଦ୍ଧବୃତ୍ତାକାର ସୃଷ୍ଟି ହୋଇଥାଏ । ଏଣୁ ପ୍ରତ୍ୟେକ ଦ୍ୱାରରେ ଇଟାର ଅର୍ଦ୍ଧବୃତ୍ତ କାର ଖିଲାଣ ରହିଥିଲା । ଗଡର ପ୍ରାଚୀରମାନ କଟା ପଥର, ଇଟା, ଗୋଡ଼ି ମାଟିରେ ତିଆରି । ଏବେ ମଧ୍ୟ ଏହି ପ୍ରାଚୀରଟି ୨୦ ରୁ ୨୫ ଫୁଟ ଉଚ୍ଚ ଓ ଉପର ଅଂଶର ଓସାର ଅନ୍ୟୁନ ୧୫ ଫୁଟ ହେବ । ଗଡକୁ ଘେରି ରହିଥିବା ଗଡଖାଇ ଗଭୀର ଓ ପ୍ରସ୍ଥ ତିନିଶହ ଫୁଟ ପର୍ଯ୍ୟନ୍ତ ହେବ । ବର୍ତ୍ତମାନ ଗଡଖାଇ ଚାଷ ଜମି ଭାବେ ବ୍ୟବହୃତ ହେଉଛି । ସାନ୍ଦୁଲ ନଦୀ ଉପରେ ବଡ ବଡ ପଥର ରଖାଯାଇ ବନ୍ଧ ବନ୍ଧା ଯାଇଥିଲା । ଯାହାର ଅବଶେଷ ଏ ପର୍ଯ୍ୟନ୍ତ ମଧ୍ୟ ଦୃଷ୍ଟି ଗୋଚର ହୋଇଥାଏ । ଏହି ପଥର ବନ୍ଧ ସାହାଯ୍ୟରେ ଦରକାର ବେଳେ ନଦୀ ଜଳକୁ ଖାଇ ମଧ୍ୟକୁ ଛାଡ଼ି ଦିଆ ଯାଉଥିଲା । ଉକ୍ତ ପଥର ବନ୍ଧଟି ସମ୍ପର୍କରେ ଏଥି ପୂର୍ବରୁ କୌଣସି ପ୍ରବନ୍ଧ/ସନ୍ଦର୍ଭରେ ସ୍ଥାନ ପାଇନାହିଁ । ଗଡର ଗଠନ ଓ ଭୌଗୋଳିକ ପରିବେଶରୁ ଏହା ଉପଲବ୍ଧ ହୁଏ ଯେ ଗଡଟିର ସୁରକ୍ଷା ବ୍ୟବସ୍ଥା ଅତ୍ୟନ୍ତ ଉଚ୍ଚମାନର ଥିଲା । ଗଡର ପୂର୍ବରେ ଗଙ୍ଗାଦେବୀ, ପଶ୍ଚିମରେ ବୁଢ଼ାରଜା, ଉତ୍ତରରେ ବୈଷ୍ଣବୀ, ଦକ୍ଷିଣରେ କଳାପାହାଡ, କେନ୍ଦ୍ରରେ ଟୋକରୀ ବା ସୁମେଶ୍ୱରୀ ଦେବୀଙ୍କ ଆସ୍ଥାନ ରହିଛି । କେବଳ ବୁଢ଼ାରଜାଙ୍କ ପାଇଁ ଏକ ଛୋଟ ଦେଉଳ ତୋଳା ଯାଇ ଗତ ୨୦ ବର୍ଷଧରି ପୂଜା ହେଉଛନ୍ତି । ଅନ୍ୟସବୁ ଦେବ ଦେବୀ ଗଛ ମୂଳେ ପୂଜା ପାଉଛନ୍ତି । ୬୦ ଏକରର ଏହି ଗଡ଼ ମଝିରେ ବିଗତ କେଇ ବର୍ଷ ମଧ୍ୟରେ ୧୫ଟି ଘର ଆଉ ଏକ ପଡା ଗଢ଼ି ଉଠିଛି । ଗଡ ଭିତରେ ଚାଷ ହେଉଛି

Digitized by srujanika@gmail.com

ଓ ସେମାନେ ରଯତାନି ପାଉଛନ୍ତି । ଗଡ ମଧ୍ୟରୁ ବିଭିନ୍ନ ସମୟରେ ବହୁଳ ପରିମାଣରେ ରୌପ୍ୟ ଛିଦ୍ରିତ ମୁଦ୍ରା, ବିଭିନ୍ନ ପଥର ଗୁଟିକା, ତମ୍ବା ଓ ବ୍ରୋଞ୍ଜର ଛିଦ୍ରିତ ମୁଦ୍ରା, କୁଷାଣ ତମ୍ବା ମୁଦ୍ରା, ଲୌହଅସ୍ତ୍ର, ମାଟିପାତ୍ର ମାନଙ୍କ ଟୁକୁଡ଼ା, ଇଟା, ଟାଇଲ ପ୍ରଭୃତି ମିଳି ଆସୁଛି । ଏହି ଗଡରୁ ମିଳିଥିବା ଅନେକ ରୌପ୍ୟମୁଦ୍ରା ମାଣ ପାଞ୍ଚଟଙ୍କା ଦରରେ ସାଧାରଣ ଗ୍ରାମବାସୀ ତେନ୍ତୁଳି ମଞ୍ଜି ପଇସା କହି ବିକ୍ରି କରିଥିବାର ବହୁ ନଜିର ଅଛି । ୧୯୬୬ରେ ଏପରି ଏକ ଅଭିଯୋଗ ଓ ହୋ ହାଲ୍ଲା ପରେ ପୋଲିସ ଧରପଗଡରୁ ୫୬୬ଟି ରୌପ୍ୟ ମୁଦ୍ରା ଉଦ୍ଧାର କରଯାଇଥିଲା ।

ଅସୁରଗଡରୁ ପ୍ରାପ୍ତ ରୌପ୍ୟ ମୁଦ୍ରା ପରି ଓଡ଼ିଶାର ଶିଶୁପାଳ ଗଡ, ବାରିପଦା, ସୋନପୁର, ସାଲେପୁର ଇତ୍ୟାଦି ସ୍ଥାନରୁ କିଛି କିଛି ଉଦ୍ଧାର କରଯାଇଛି । ତେବେ ନର୍ଲା ନିକଟବର୍ତ୍ତୀ ଅସୁରଗଡରୁ ମିଳୁଥିବା ମୁଦ୍ରା ସଂଖ୍ୟା ଅନ୍ୟାନ୍ୟ ସ୍ଥାନଠାରୁ ଢେ଼ର ବେଶୀ । ଏ ଧରଣର ରୌପ୍ୟ ମୁଦ୍ରା, ତକ୍ଷଶିଳା, ହୋରହଘାଟ, କେଲଓ୍ବା, ବୋଧଗୟା, ଓ୍ବାରଙ୍ଗଲ, କରିମନଗର, ଅମରାବତୀ, ଉଜ୍ଜୟିନୀ, କୋହ୍ଲାପୁର, ତ୍ରିଚନାପଲ୍ଲୀ ପ୍ରଭୃତି ସ୍ଥାନରୁ ମଧ୍ୟ ପ୍ରାପ୍ତ ହୋଇଛି । ଅସୁରଗଡ଼ରୁ ପ୍ରାପ୍ତ ବିଭିନ୍ନ ମୁଦ୍ରା, ମଧ୍ୟରୁ କେତେକ ମୌର୍ଯ୍ୟ ପୂର୍ବବର୍ତ୍ତୀ କାଳୀନ, କେତେକ ମୌର୍ଯ୍ୟ କାଳୀନ ଓ କେତେକ ମୌର୍ଯ୍ୟ ପରବର୍ତ୍ତୀ ଯୁଗର ।

୧୯୭୫ ଫେବୃୟାରୀ ୧୪ ରୁ ମାର୍ଚ୍ଚ ୧୫ ଯାଏ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓ ରାଜ୍ୟ ସରକାରଙ୍କ ସଂସ୍କୃତ ବିଭାଗର ମିଳିତ ଉଦ୍ୟମରେ ଡକ୍ଟର ନବୀନ କୁମାର ସାହୁଙ୍କ ତତ୍ତ୍ୱାବଧାନରେ ଏକ ସ୍ୱଳ୍ପକାଳୀନ ପରୀକ୍ଷାମୂଳକ ଖନନ ହୋଇ ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀ ଠାରୁ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀ ମଧ୍ୟର ଅନେକ ମୂଲ୍ୟବାନ ଜିନିଷ ମିଳି ପାରିଛି । ଉକ୍ତ ଖନନ ଫଳରେ ପ୍ରାଚୀନ ଇଟା, ଗୃହମାନଙ୍କର ଅବଶେଷ, ଲୌହ ସାମଗ୍ରୀ, କବାଟର ଲୁହା କବଜା, କଡ଼ି, ରୁପାମୁଦ୍ରା, ତମ୍ବାମୁଦ୍ରା, ବିଭିନ୍ନ ଆକାରର ଅନେକ ପଥର ଗୁଟିକା, ଅସ୍ତ୍ର ଶସ୍ତ୍ର, ଏକ ୪୦ ଫୁଟ ବ୍ୟାସାର୍ଦ୍ଧ ବିଶିଷ୍ଟ ଗୋଲକାର ପ୍ରାଚୀନ ଦେବୀ ମନ୍ଦିରର ଅବଶେଷ ଆଦି ଉଦ୍ଧାର କରଯାଇଥିଲା । ଉକ୍ତ ମନ୍ଦିର ପାର୍ଶ୍ୱରୁ ମୃଣ୍ମୟ ମାତୃକା ମୂର୍ତ୍ତି, ଠାକୁରାଣୀଙ୍କ ଅଳଙ୍କାର, ରୌପ୍ୟ ଛତ୍ର, ମୁଦ୍ରା ନିର୍ମାଣ ପାଇଁ ଏକ ଛାଞ୍ଚ ଇତ୍ୟାଦି ମଧ୍ୟ ଡକ୍ଟର ସାହୁ ଉଦ୍ଧାର କରିଛନ୍ତି । ଏହାବ୍ୟତୀତ ଉନ୍ନତ ଧରଣର କଳା, ପାଟଳ ଓ ଲାଲ ବର୍ଣ୍ଣର ଲମ୍ବ ବେକ, ଚଉଡା କାନ୍ଧ ଓ ଛୋଟହେଣ୍ଡଲ୍ ଥିବା ମୃତ୍ତିକା ପାତ୍ର ମଧ୍ୟ ଉଦ୍ଧାର ହୋଇଛି ।

ଏହି ତଥାକଥିତ ୬୦ ଏକର ବିଶିଷ୍ଟ ଭୂମିଟି କେବଳ ଉକ୍ତ ଗଡର କେନ୍ଦ୍ରସ୍ଥଳୀ ଏହା ବିଧିବଦ୍ଧ ସର୍ବେକ୍ଷଣରୁ ଜଣାପଡ଼ିଛି । କିନ୍ତୁ କେନ୍ଦ୍ରୀୟ ପୀଠ ଭିନ୍ନ ଏହାର ବହିର୍ଭାଗରେ

Digitized by srujanika@gmail.com

ରହିଥିବା ସ୍ଥାନମାନ ମଧ୍ୟ ତଦନୁରୂପ ପ୍ରତ୍ନତାତ୍ତ୍ୱିକ ଗୁରୁତ୍ୱପୂର୍ଣ୍ଣ ଅଟେ । ଗଡଖାଇ ପରେ ପରେ ଦକ୍ଷିଣ ଦିଗରେ ଗୋଟିଏ କାନ୍ଥ ସିଧା ଲମ୍ବ ଭାବରେ ଦେଢ଼ କି:ମି: ଦୂର ସାନ୍ଦୁଲ ନଦୀ ପର୍ଯ୍ୟନ୍ତ ଲମ୍ବି ଯାଇଛି । ନଦୀ ଆରପଟେ ଏକ ଛୋଟ ଉଚ୍ଚାର ଭଗ୍ନ ସ୍ତୂପ ରହିଛି । ଯାହା ଜଣାଯାଏ ଦୁର୍ଗ ବାହାରେ ପ୍ରତିରକ୍ଷା ଦୃଷ୍ଟିରୁ ଏହା ଏକ ପର୍ଯ୍ୟବେକ୍ଷଣ ଶିବିର ।



ଏ ଧରଣର ଗ୍ରରି ଦିଗରେ ଗ୍ରଗ୍ରେଟି ଶିବିର ଏହି ବହି-ଦୁର୍ଗର ବାହାରେ ରହିଛି । ସେଠାରୁ ଲୌହ ଅସ୍ତ୍ର ଶସ୍ତ୍ର ପୁରୁଣା ଟୁକୁଡ଼ାମାନ ମିଳୁଅଛି । ଏହି କାନ୍ଥଟି ଅର୍ଦ୍ଧବୃତ୍ତା-କାରରେ ବିଘଟ, ଦହଲ ଓ ପୂଜା ପଦର ଗ୍ରାମସୀମା ଦେଇ ପୁଣି ଉତ୍ତର ମୁଖା ହୋଇ ମୁଖ୍ୟଗଡର ଗଡଖାଇ ଯାଏ ଆସିଛି । ସେହିପରି ଉତ୍ତର ଦିଗରେ ନଦୀ କୋଣରୁ ଗଡଖାଇ ପରେ ଆଉ ଏକ କାନ୍ଥ ବାହାରି ଠିକ୍ ସେହି-ପରି ଭାବରେ ଢ଼େକୁନ ପଡ଼ ଦେଇ ଅସୁରଗଡ଼ ଗ୍ରାମ ସୀମାରେ ଗଡଖାଇ ପାଖରେ ମିଶିଛି । ପ୍ରାୟଗ୍ରରି ବର୍ଗ କିଲୋମିଟର ବ୍ୟାପୀ ଏହି ବିଗଟ ଅଞ୍ଚଳରେ ବିଭିନ୍ନସ୍ଥାନରେ ବହୁଳ ଭାବେ ପ୍ରତ୍ନ ଅବଶେଷମାନ ପଡ଼ି ରହିଛି । ତନ୍ମଧ୍ୟରୁ ପଶ୍ଚିମ ଦିଗରେ ନଦୀ ଆରପଟେ ଲଖଗୁଡ଼ା, ଭୀମକେଲ ଉତ୍ତର ଦିଗରେ ଢ଼େକୁନ ପଡା, ଦକ୍ଷିଣରେ ବିଘଟ ଦହଲ, ଭୂଜି ପଦର, ମାଣ୍ଡେଲ ଆଦି ଗ୍ରାମସୀମାରେ ବିସ୍ତୀର୍ଣ୍ଣ ଅଞ୍ଚଳରେ ପଡ଼ିଥିବା ଅବଶେଷମାନ ଅନୁଧ୍ୟାନ ଯୋଗ୍ୟ । ମୁଖ୍ୟଗଡ ମଧ୍ୟରୁ ମିଳୁଥିବା ପଥର ଗୁଟିକା ଓ ମୁଦ୍ରାମାନଙ୍କ ଭଳି ଗଡ ବାହାରର ବ୍ୟାପକ ପାଞ୍ଚ କି.ମି. ଅଞ୍ଚଳରୁ ମଧ୍ୟ ଅନୁରୂପ ଧରଣର ଅବଶେଷ ମିଳୁଅଛି । ଏହି ଅଞ୍ଚଳରେ ବିଭିନ୍ନ ଆକୃତିର ୮ ପ୍ରକାରର ପଥର ଗୁଟିକା ମିଳିଅଛି । ଠିକ୍ ସେହିପରି ଏ ଯାଏ ଅସୁରଗଡର ମୁଦ୍ରା କହିଲେ ମୌର୍ଯ୍ୟ ପୂର୍ବବର୍ତ୍ତୀ କାଳୀନ ଓ ମୌର୍ଯ୍ୟ ପରବର୍ତ୍ତୀ କାଳୀନ ଛେଦିତ ରୌପ୍ୟ ମୁଦ୍ରା ଓ କୁଶାଣ ମୁଦ୍ରାକୁ ହିଁ ବୁଝାଉଥିଲା । କିନ୍ତୁ ଅନୁଧ୍ୟାନ ପରେ ଏହି ଅଞ୍ଚଳରୁ ବର୍ଗା-କାର ବିଶିଷ୍ଟ ବ୍ରୋଞ୍ଜ୍ ମୁଦ୍ରା ଏବଂ ମିଶ୍ରିତ ଧାତୁର ବର୍ଗାକାର ଆକୃତିର ମୁଦ୍ରାମାନ ମଧ୍ୟ ମିଳୁଥିବାର ଜଣାଯାଏ । ବ୍ରୋଞ୍ଜ୍ ମୁଦ୍ରାର ଗୋଟିଏ ପଟରେ ଏକ ବୃକ୍ଷ ତା ତଳେ ହରିଣ ଆକୃତିର ଏକ ଜୀବ ଓ ଯାହା ପଛରେ ଏକ ମନୁଷ୍ୟ ଠିଆ ହୋଇ ଥିବାର ଚିତ୍ର ଖୋଦିତ ହୋଇଛି । ମୁଦ୍ରାର ଅପର ପାର୍ଶ୍ୱରେ ଗୋଟିଏ ମନୁଷ୍ୟ ମୁଣ୍ଡର ଖପୁରୀ, ଗୋଟିଏ ସ୍ୱସ୍ତିକ ଚିହ୍ନ, ଏବଂ ଗମଛରେ ତିନୋଟି ଫୁଲ ଥିବା ଚିହ୍ନ ରହିଛି । ଅନ୍ୟ ଦୁଇଟି ମିଶ୍ରିତ ଧାତୁ ମୁଦ୍ରା ମଧ୍ୟରୁ ଗୋଟି ଉଭେ ଏକ ପ ଖରେ ହାତୀ ଚିହ୍ନ ଚିତ୍ରିତ ହୋଇଛି । ଅନ୍ୟ ପାର୍ଶ୍ୱରେ କିଛି ନାହିଁ । ୨ୟ ମୁଦ୍ରାଟି ଯେଉଁଟାକି ପ୍ରଥମଟି ଠାରୁ ଅପେକ୍ଷାକୃତ

Digitized by srujanika@gmail.com

ସାନ ବାହାର ଏକ ପାଖରେ ଏକ ଚକଦ ଚିହ୍ନ ରହିଛି ଓ ଅନ୍ୟ ପାଖରେ କିଛି ନାହିଁ ।
ମୁଖ୍ୟଗଡ ବାହାରେ ଲଖଗୁଡା ଭଟା, ବିଲଟ, ଦହଲ, ଢ଼େଙ୍କୁନପଡା ଗ୍ରାମସୀମାରେ
ବହୁଳ ପରିମାଣର ବିଭିନ୍ନ ପ୍ରକାରର ଅନେକ ଭଙ୍ଗା ମାଟିପାତ୍ର ମିଳୁଅଛି । ଏଥି ମଧ୍ୟରୁ
କେତେକର ବାହାର ପାଖ ଲାଲରଙ୍ଗ ଓ ଭିତର ପାଖ କଳାରଙ୍ଗ । ଅନ୍ୟ କେତେକର
ବାହାର ପାଖ କଳାରଙ୍ଗ ଓ ଭିତର ପାଖ ଲାଲରଙ୍ଗ । କେତେକ ପାତ୍ର ଚିକ୍‌ଣ କଳା ଓ
ଅନ୍ୟ କେତେକ ଚିକ୍‌ଣ ଲାଲରଙ୍ଗର ଅଟେ । ଏହି ଅଞ୍ଚଳରୁ ବ୍ୟାପକ ପରିମାଣର କୃଷ୍ଣ ଓ
ପାଟଳ ବର୍ଣ୍ଣର ମୃତ୍ତିକା ପାତ୍ର ମିଳୁଥିବାରୁ ଉପଯୁକ୍ତ ପରୀକ୍ଷା ପରେ ଏହାର ସମୟ
ସୀମା, ଆହୁରି ପୂର୍ବବର୍ତ୍ତୀ କାଳୀନ ହେବ ବୋଲି ଅନୁମାନ କରଯାଏ । ଅସୁରଗଡ
ନିକଟବର୍ତ୍ତୀ ପଳସା ପଡାରୁ ପ୍ରାପ୍ତ ନନ୍ଦରଜ ଦେବଙ୍କ ତାମ୍ର ଫଳକ ଅଭିଲେଖ ୫ମ
ଶତାବ୍ଦୀ କାଳୀନ ବୋଲି ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଓ ଡକ୍ଟର ଅର୍ଜୁନ ଯୋଷୀ
ମତ ପୋଷଣ କରିଛନ୍ତି । ତେଣୁ ଗଡର ମୁଖ୍ୟ ଅଂଶକୁ କେବଳ ଦୃଷ୍ଟି ଦିଆ ନଯାଇ
ତା ସଙ୍ଗେ ସଙ୍ଗେ ଗରି, ପାଞ୍ଚ ବର୍ଗ କି.ମି. ବିଶିଷ୍ଟ ଅଞ୍ଚଳ ଯଥା ପଳସା ପଡା, ଢ଼େଙ୍କୁନ
ପଡା, ଭୀମକେଲ, ଲଖଗୁଡା, ବିଲଟ, ଦହଲ, ଧୂଳିପଦର ପ୍ରଭୃତି ଅଞ୍ଚଳରେ ଅନୁସନ୍ଧାନ
କାର୍ଯ୍ୟ ହେବା ବିଧେୟ । ସମ୍ପ୍ରତି ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ପକ୍ଷରୁ ଅସୁର
ଗଡକୁ ଏକ ସଂରକ୍ଷିତ ସ୍ଥାନ ରୂପେ ଘୋଷଣା କରଯାଇ କଗୁଆଳୀ ମୁତୟନ କରଯାଇଛି ।
ବସ୍ତୁତଃ ଦାୟିତ୍ୱ ଏଯାଏ ଏତିକିରେ ହିଁ ସୀମିତ ହୋଇଛି । କେନ୍ଦ୍ର ସରକାର ବା ରାଜ୍ୟ
ସରକାର ଶୀଘ୍ର ଉକ୍ତ ଐତିହାସିକ ସ୍ଥଳୀ ସମ୍ପର୍କରେ ଏକ ବ୍ୟାପକ ସର୍ଭେ କାର୍ଯ୍ୟ ହାତକୁ
ନେବାକୁ ଆହ୍ୱାନ କରଯାଇଛି ।

**ବଜ୍ରଗଡ** (ଅମାଠଗଡ)

ବଲାଙ୍ଗିର ରାସ୍ତାର ତେଲ ନଦୀର ମହତାବ ବ୍ରୀଜ ପାଖକୁ ଲାଗି ପୂର୍ବରେ ବଜ୍ରଗଡ ପର୍ବତ ।
ଏହି ପର୍ବତ ତଳେ ଏକ ବିସ୍ତୀର୍ଣ୍ଣ ଅଞ୍ଚଳରେ ଇଟା ସ୍ତୁପମାନ ଇତଃସ୍ତତ ପଡ଼ିରହିଛି ।
କେତେକ ଇଟା ସ୍ତୁପ ଉପର ଦେଇ ପି. ଡବ୍ଲୁ. ଡ଼ି. ରାସ୍ତା ମଧ୍ୟ ଯାଇଛି । ଶାଗୁଆନ
ଜଙ୍ଗଲ ବେଷ୍ଟିତ ଏହି ସବୁ ଇଟାସ୍ତୁପମାନ କ୍ଷୁଦ୍ର ପାହାଡ ମାନଙ୍କର ଭ୍ରମ ସୃଷ୍ଟି କରିଥାଏ ।
ଏହି ସ୍ଥାନରେ ଜଙ୍ଗଲ ବିଭାଗ ଟ୍ରେଞ୍ଚ ଖୋଳିବା କାଳରେ ଗୋଟିଏ ଗଣେଶ ମୂର୍ତ୍ତି
ଶିବଲିଙ୍ଗ ଓ ମନ୍ଦିରର ସ୍ତମ୍ଭମାନ ମାଟିତଳୁ ଆବିଷ୍କୃତ ହୋଇଥିଲା । ଗଣେଶ ମୂର୍ତ୍ତି ଓ
ଶିବଲିଙ୍ଗ ସ୍ଥାନୀୟ ଲୋକଙ୍କ ଦ୍ୱାରା ସେଠାରେ ପୂଜିତ ହେଉଛନ୍ତି । ପ୍ରସ୍ତର ସ୍ତମ୍ଭ ଦୁଇଟି
ନିକଟସ୍ଥ ଅମାଠ ଗାଆଁରେ ରଖାଯାଇଛି । ଗୋଟିଏ ଜଙ୍ଗଲ ମଝିରେ ପଡ଼ିଛି । ଗୁପ୍ତଧନ
ଆଶାରେ ବେଆଇନ୍ ଭାବେ ସ୍ତୁପମାନ ଖୋଳାଯାଇ ଐତିହାସିକ ଅବଶେଷମାନ ନଷ୍ଟ
କରଯାଇଛି । ଏହି ସ୍ତୁପ ମାନଙ୍କରୁ ଛୋଟ ଛୋଟ କୋଠରୀ ଆବିଷ୍କୃତ ହୋଇଛି ।

Digitized by srujanika@gmail.com

ଏ ମଧ୍ୟରୁ ଅନେକ କୋଠରୀ ୧୦’-୧୫’ ବିଶିଷ୍ଟ । କେତେକ ବଡ ସ୍ତୁପର ଉଚ୍ଚତାରୁ ସେଠାରେ ବହୁତଳ ପ୍ରାସାଦ ଥିବା ଅନୁମାନ କରଯାଉଛି । ରାସ୍ତା ତିଆରି ସମୟରେ ଓ ବୃକ୍ଷରୋପଣ ବେଳେ ଅନେକ ସ୍ତୁପ ବିଧ୍ୱସ୍ତ ହେବା ସତ୍ତ୍ୱେ ବର୍ତ୍ତମାନ ଯାଏଁ ୩୦ଟି ସ୍ତୁପ ରହିଛି । ଏଠାରୁ ସଂଗୃହୀତ ସ୍ତମ୍ଭମାନଙ୍କରେ ୮ମ/୯ମ ଶତାବ୍ଦୀ କାଳୀନ ଲିପି ଖୋଦିତ ହୋଇଛି । ଆବିଷ୍କୃତ ଗଣେଶ ମୂର୍ତ୍ତିର ମସ୍ତକରେ ମୁକୁଟ ନାହିଁ । କପାଳରେ କେବଳ ପଗଏ ମାଳି ଖୋଦିତ ହୋଇଛି । ମୂର୍ତ୍ତିର ବାମହସ୍ତରେ ଲଡୁ ପାତ୍ର ଓ ଦକ୍ଷିଣ ହସ୍ତରେ କୁଠାର । ଏ ଧରଣର ଗଣେଶ ମୂର୍ତ୍ତି ଦୁର୍ଲଭ । ଶିବଲିଙ୍ଗଟି ଉତ୍ତର ମୁଖୀ । ଏହି ସ୍ଥାନର ପଶ୍ଚିମକୁ ତେଲନଦୀ ଓ ପୂର୍ବ ଉତ୍ତରକୁ ବଜ୍ରଗଡ ପର୍ବତ ରହିଛି । ଏହି ସ୍ଥାନଟି ପ୍ରାକୃତିକ ଗଡର ରୂପ ନେଇଛି । ଭୌଗୋଳିକ ପରିବେଶରୁ ଏହି ଗୁରୁତ୍ୱପୂର୍ଣ୍ଣ ସ୍ଥାନଟି ନୌବାଣିଜ୍ୟର ଏକ ପେଣ୍ଠସ୍ଥଳୀ ଥିବା ଅନୁମାନ କରଯାଏ । ଗଡ ଅଞ୍ଚଳର ବିଭିନ୍ନ ସ୍ଥାନରୁ ବିଭିନ୍ନ ପ୍ରକାରର ମାଟିପାତ୍ର ବହୁଳ ପରିମାଣରେ ମିଳୁଛି । ଅନେକ ବ୍ୟକ୍ତି, ମୁଦ୍ରା, ଅଳଙ୍କାର ଆଦି ପାଇଥିବା ମଧ୍ୟ କୁହାଯାଉଛି । ତେବେ ଏ ଯାଏଁ ଏହି ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଖନନ, ଗବେଷଣା କାର୍ଯ୍ୟ ହୋଇନାହିଁ ଏବଂ ଶିଳାଲିପିମାନ ସଂରକ୍ଷଣ ଅଭାବରୁ ନଷ୍ଟପ୍ରାୟ ।

ଏହି ଗଡ ନିକଟବର୍ତ୍ତୀ ଗ୍ରାମଟିର ନାମ ଅମାଠ ହୋଇଥିବାରୁ, ଉକ୍ତ ଗଡଟିକୁ ଅମାଠଗଡ ନାମରେ ଐତିହାସିକମାନେ ଗ୍ରହଣ କରି ନେଇଛନ୍ତି । କିନ୍ତୁ ଅମାଠ ଗ୍ରାମଟି ଏକ ପରବର୍ତ୍ତୀ କାଳୀନ ବସତି ହୋଇଥିବାରୁ ପ୍ରତ୍ନତାତ୍ତ୍ୱିକ ପୀଠଟିକୁ ଅମାଠଗଡ ଭାବରେ ଗ୍ରହଣ କରି ନେବା ପ୍ରମାଦପୂର୍ଣ୍ଣ ମନେହୁଏ । ଏହି ଗଡ଼ର ପୂର୍ବ ଉତ୍ତର ଦିଗରେ ରହିଥିବା ପାହାଡଟିର ନାମ ବଜ୍ରଗଡ଼ । ଏକ ପାହାଡର ନାମ ବଜ୍ରଗଡ ହୋଇଥିବା ପ୍ରସଙ୍ଗଟି ସ୍ୱତଃ ମନରେ ପ୍ରଶ୍ନବାଚୀ ସୃଷ୍ଟି କରିଥାଏ । ସମ୍ଭବତଃ ଉକ୍ତ ଗଡଟିର ପୂର୍ବ ନାମ ବଜ୍ରଗଡ ଥିଲା ଏବଂ ଏ ଯାବତ୍ ଉକ୍ତ ଗଡ ସଂଲଗ୍ନ ପାହାଡଟି ହିଁ ସେହି ନାମରେ ପରିଚିତ ହେଉଛି । ଅବଶ୍ୟ ଏହି ନାମକରଣର ଐତିହାସିକତା ସମ୍ପର୍କରେ ଅଧିକ ତଥ୍ୟାନୁସନ୍ଧାନର ଆବଶ୍ୟକତା ରହିଛି ।

## ବେଲଖଣ୍ଡି :-

ବଜ୍ରଗଡ ଠାରୁ ତେଲନଦୀର ୧୨ କି:ମି: ଉପର ମୁଣ୍ଡରେ ତେଲ ଓ ଉତେଇ ନଦୀ ସଙ୍ଗମରେ ବେଲଖଣ୍ଡି ବା ଗଜପ୍ରଦର ଏକ ମନୋରମ ତୀର୍ଥସ୍ଥାନ । ଐତିହାସିକ ଜେ.ଡ଼ି. ବେଗ୍‌ଲର ୧୮୭୪-୭୫ରେ ଏହି ସ୍ଥାନ ଭ୍ରମଣ କରି ବିସ୍ତୃତ ବିବରଣୀ ତାଙ୍କ ଆର୍କି-ଓଲୋଜିକାଲ ସର୍ଭେ ରିପୋର୍ଟର ଭଲ୍ୟୁମ୍-୧୩ରେ ବର୍ଣ୍ଣନା କରିଛନ୍ତି । ସେ ତାଙ୍କ ଯାତ୍ରା କାଳରେ ଇଟା ଓ ପଥର ନିର୍ମିତ ମନ୍ଦିରମାନଙ୍କ ଭଗ୍ନାବଶେଷ ଦେଖିବାକୁ ପାଇଥିଲେ । ମୂଳ ଅବସ୍ଥାରେ ଏଠାରେ ମୁଖ୍ୟ ମନ୍ଦିର, ମହାମଣ୍ଡପ, ଅର୍ଦ୍ଧମଣ୍ଡପ ଓ ବହୁ ସ୍ତମ୍ଭ ବିଶିଷ୍ଟ

Digitized by srujanika@gmail.com

ଅଛିବ ଅନ୍ତର୍ଭୁକ୍ତ ଥିଲା ବୋଲି ବେଗ୍‌ଲର ତାଙ୍କର ସର୍ବେକ୍ଷଣରେ ଉଲ୍ଲେଖ କରିଛନ୍ତି । ରଜୀମ, ସେଓନାରାୟଣପୁର, ଖରପୁର ପ୍ରଭୃତିର ମୂର୍ତ୍ତିକଳା ସହ ସାମଞ୍ଜସ୍ୟ ଥିବା ସୁଦୃଶ୍ୟ କାରୁକାର୍ଯ୍ୟର ବିଭିନ୍ନ ମୂର୍ତ୍ତି ଓ କଳାକୃତି ତାଙ୍କ ଦୃଷ୍ଟି ଗୋଚର ହୋଇଥିବା ବିଷୟ ମଧ୍ୟ ତାଙ୍କ ବିବରଣୀରେ ସୂଚନା ଦେଇଛନ୍ତି ।

ପରବର୍ତ୍ତୀ କାଳରେ ୧୯୪୬ ମସିହାରେ କଳାହାଣ୍ଡି ଦରବାର ପ୍ରତ୍ନତତ୍ତ୍ୱ ବିଭାଗର ମୁଖ୍ୟ କେଦାରନାଥ ମହାପାତ୍ର, ଏହି ଭଗ୍ନାବଶେଷର ଖନନ କରି ବହୁ ମୂର୍ତ୍ତି ଉଦ୍ଧାର କରିଥିଲେ । ତନ୍ମଧ୍ୟରୁ ସପ୍ତମାତୃକା ଉମା ମହେଶ୍ୱର, ପାର୍ଶ୍ୱ ଦେବା ଦେବୀ ଓ ଅନେକ ଭାସ୍କର୍ଯ୍ୟର ଭଗ୍ନାଂଶ ଅତି ଚିତାକର୍ଷକ ଓ ଉଲ୍ଲେଖ ଯୋଗ୍ୟ । ଏ ସବୁ ୮ମ/୯ମ ଶତାବ୍ଦୀ କାଳୀନ ସୋମବଂଶୀ କିର୍ତ୍ତି ବୋଲି ପ୍ରମାଣିତ । ଏହି ମୂର୍ତ୍ତିମାନଙ୍କର ସଂରକ୍ଷଣ ପାଇଁ ବେଲଖଣ୍ଡି ଠାରେ ରାଜ୍ୟ ସରକାର ଏକ ଶାଖା ସଂଗ୍ରହାଳୟ ସ୍ଥାପନ କରିଛନ୍ତି । ତେବେ ଏଥି ପାଇଁ ନିର୍ମିତ ଘରଟି ୧୯୬୭ର ତେଲନଦୀର ବନ୍ୟାରେ ଭାସିଯିବା ଫଳରେ ମୂର୍ତ୍ତିମାନ ଇତଃସ୍ତତ ଖୋଲା ଆକାଶ ତଳେ ପଡ଼ିରହିଛନ୍ତି । ଇତି ମଧ୍ୟରେ ୧୨ବର୍ଷ ବିତି ଯାଇଥିଲେ ହେଁ, ଏହି ମୂର୍ତ୍ତିମାନଙ୍କ ସଂରକ୍ଷଣ ପାଇଁ କୌଣସି ଘର ନିର୍ମାଣ ହୋଇ ପାରିନାହିଁ । କେବଳ ଜଣେ ଅଳ୍ପ ବେତନଭୋଗୀ ସ୍ୱଳ୍ପ ଶିକ୍ଷିତ ଚୌକିଦାର ଏ ସବୁର ଦାୟିତ୍ୱରେ । ବେଲଖଣ୍ଡିଠାରେ ପୁରୁଣା ମନ୍ଦିରମାନଙ୍କ ମୂଳଦୁଆରେ ଊନବିଂଶ ଶତାବ୍ଦୀରେ ଧବଳେଶ୍ୱର ଶିବ ମନ୍ଦିର, ନୃସିଂହନାଥ ମନ୍ଦିର ଓ ସିଦ୍ଧ ଗୌରୀ ଚଣ୍ଡୀ ମନ୍ଦିର ନିର୍ମିତ ହୋଇ ପୂଜା ଅର୍ଚ୍ଚନା ହେଉଛି । ଏଠାରେ ଶିବରାତ୍ରୀ ସମୟରେ ଓ ବଣଭୋଜି ପାଇଁ ବର୍ଷସାରା ବହୁ ଜନ ସମାଗମ ହୁଅନ୍ତି ।

ତେବେ ଏହି ବେଲଖଣ୍ଡିର ନିକଟରେ ଥିବା ଡାଇଭେଁଗ (ଚୋର ଭମରକ), କୁଶୁରୁଲା ଓ ଦିଗ୍‌ସର ଗ୍ରାମମାନଙ୍କରେ ମିଳୁଥିବା ଅବଶେଷ ମାନଙ୍କ ସଂପର୍କରେ କୌଣସି ଅନୁଧ୍ୟାନ କରାଯାଇ ନାହିଁ । ବେଲଖଣ୍ଡି ନିକଟବର୍ତ୍ତୀ ତେରେସିଙ୍ଗା ଠାରେ ତେଲନଦୀ କୂଳରେ ଅନେକ ଅବଶେଷ ମିଳୁଛି । ଏଠାରୁ ରାଜା "ତୁଷ୍ଟି କର"ଙ୍କ ୪ର୍ଥ/୫ମ ଶତାବ୍ଦୀ କାଳୀନ ତାମ୍ରପତ୍ର ମିଳିଥିଲା । ବେଲଖଣ୍ଡି ଓ ତେରେସିଙ୍ଗା ନିକଟରେ ଥିବା କୁନ୍ଦେଇପାଲି, ବିନ୍ଧାଣି, ରିଞ୍ଜା ପ୍ରଭୃତି ସ୍ଥାନରେ ଐତିହାସିକ ଅନୁସନ୍ଧାନ କାର୍ଯ୍ୟ ଏ ଯାଏଁ ହୋଇନାହିଁ । ଯଦିଓ ସେଠାରୁ ବହୁ ଅବଶେଷ ମିଳୁଛି । କୁନ୍ଦେଇପାଲି, ବିନ୍ଧାଣି ପ୍ରଭୃତି ନାମରୁ କେତେକ ଗବେଷକ ଅନୁମାନ କରନ୍ତି ଯେ ମୂର୍ତ୍ତିକଳାରେ ପାରଙ୍ଗମ ଥିବା କେତେକ କଳାକାରଙ୍କର ଏହା ବସତି ଥିଲା । କିନ୍ତୁ ଅନୁମାନ ଏପର୍ଯ୍ୟନ୍ତ ଅନୁମାନରେ ହିଁ ରହିଛି । ଏଠୁ ଅନେକ ଭଗ୍ନ ମୂର୍ତ୍ତି ମିଳୁଛି ଯାହାର ବିଧିବଦ୍ଧ ଗବେଷଣାର ଆବଶ୍ୟକତା ରହିଛି ।



Digitized by srujanika@gmail.com



# ।। କଳାହାଣ୍ଡିର ଲୋକନୃତ୍ୟ ଘୁମୁରା ।।

**ମୂର୍ତ୍ତିମନ୍ତ ସାହୁ**

●

ବିଗତ ଦୁଇଦଶନ୍ଧି ମଧ୍ୟରେ ସମଗ୍ର ଓଡ଼ିଶାରେ ଚହଳ ସୃଷ୍ଟି କରି ଭାରତର ଜନମାନସକୁ ଜୟ କରିବା ସଙ୍ଗେ ସଙ୍ଗେ ଆନ୍ତର୍ଜାତିକ ଖ୍ୟାତି ଓ ସମ୍ମାନ ଲାଭ କରିଥିବା କଳାହାଣ୍ଡିର ଅତି ପୁରାତନ ଲୋକନୃତ୍ୟ 'ଘୁମୁରା' ଆଜି ଆଉ କାହା ପାଖରେ ଅପରିଚିତ ହୋଇ ରହିନାହିଁ । ଯେଉଁ କେତୋଟି ପୁରାତନ ଗଣବାଦ୍ୟ ସମୟ ସହିତ ସଂଗ୍ରାମ କରି ଏବେ ମଧ୍ୟ ନିଜର ସତ୍ତା ଓ ସ୍ୱାତନ୍ତ୍ର୍ୟ ବଜାୟ ରଖିଛନ୍ତି ସେମାନଙ୍କ ମଧ୍ୟରେ ଘୁମୁରା ଅନ୍ୟତମ ନିଶ୍ଚୟ । ବହୁ ଗବେଷକ ଏବଂ ପ୍ରାବନ୍ଧିକ ତତ୍ ସମ୍ପର୍କରେ ଆଲୋଚନା କରିଛନ୍ତି । ଏ ସମ୍ପର୍କରେ ଅନେକ ପ୍ରାମାଣିକ ତଥ୍ୟ ଉପଲବ୍ଧ ଥିବା ସତ୍ତ୍ୱେ ବହୁ ପ୍ରାବନ୍ଧିକ ନିଜର ବୌଦ୍ଧିକ କଳ୍ପନା ଓ ଅନୁମାନକୁ ନିଜ ନିଜ ପ୍ରବନ୍ଧରେ ଆଶ୍ରୟ କରିଥିବା ଯୋଗୁଁ ସେ ସବୁକୁ ଯଥେଷ୍ଟ ବୋଲି କୁହାଯାଇ ପାରିବ ନାହିଁ । ଏଣୁ ଘୁମୁରା ଆଜି ମଧ୍ୟ ବିଶେଷ ଦେଖଣୀୟ ହୋଇ ରହିଛି ।

ଘୁମୁରାର ଜନ୍ମ ବୃତ୍ତାନ୍ତ କାଳ କୂପରେ ଜୀର୍ଣ୍ଣ ହୋଇ ସାରିଛି । ତେବେ ପୁରାଣ ଶାସ୍ତ୍ର ମାନଙ୍କରେ ଯୋଗଜନ୍ମା ତ୍ରିକାଳଦର୍ଶୀ ମୁନି-ଋଷିଗଣ ଯାହା ବର୍ଣ୍ଣନା କରିଛନ୍ତି ସେ ସବୁକୁ ପାଥେୟ କରି ପ୍ରାବନ୍ଧିକଗଣ ଘୁମୁରାର ଜନ୍ମ ସମ୍ପର୍କରେ ଧାରଣା ଦେବାକୁ ଚେଷ୍ଟା କରିଛନ୍ତି । ଖରିଆରର ରାଜା ✓ ଆର୍ତ୍ତତ୍ରାଣ ଦେଓ ଏବଂ ଅନେକ ବିଦ୍ୱାନଙ୍କ ମତରେ ଏହାର ଜନ୍ମସ୍ଥାନ ପୁରାଣ ବର୍ଣ୍ଣିତ ଲଙ୍କା ଅଟେ "Some claim that Ghumra was the war musical instrument of Ravana. Late Raja Artatrana Deo of Khariar (1900 A.D.—1946 A.D ) used to call 'Ghumra' as the Heroic dance of Lanka garh" (୧) ଏହି ମତଟିକୁ ପ୍ରବନ୍ଧିକ ପଣ୍ଡିତ ରାମ ମୁଣ୍ଡଙ୍କ ନିମ୍ନୋକ୍ତ ବକ୍ତବ୍ୟଟି ମଧ୍ୟ ସମର୍ଥନ କରେ । "ଏହାର ଉପତିସ୍ଥଳ ଲଙ୍କାର ରାଜା ରାବଣର ଏହା ବିଜୟସୂଚକ ମୟ ଯୁଦ୍ଧବାଦ୍ୟ । ଏହାର ପ୍ରମାଣ ବିଭିନ୍ନ ରାମାୟଣରେ ମିଳେ ।" (୨) ଏ ସମ୍ପର୍କରେ ଲୋକ ମୁଖରୁ ଶୁଣାଯାଏ ।

Digitized by srujanika@gmail.com

ଯେ ଏହା ରାବଣର ପ୍ରିୟପୁତ୍ର ବାସବ ବିଜୟୀ ମେଘନାଦର ତପସ୍ୟାଲବ୍ଧ ଯୁଦ୍ଧବାଦ୍ୟ, ଯାହାକି ବଜ୍ରଧ୍ୱନି ଠାରୁ ମଧ୍ୟ ଅଧିକ ଶିହରଣ ଓ ହୃତ୍‌କଂପ ସୃଷ୍ଟି କରିପାରେ । ଲୋକଙ୍କର ବିଶ୍ୱାସ ଯେ ଶତ୍ରୁ ପକ୍ଷର ବାଦ୍ୟ ଘୁମୁରା ବଜାଇଲେ ଇନ୍ଦ୍ର ବିରକ୍ତ ହୋଇ ବୃଷ୍ଟି କରନ୍ତି ନାହିଁ । ଏଣୁ ଦଶହରା ପୂର୍ବରୁ ଘୁମୁରା ବାଦ୍ୟ ବଜାଇଲେ ବୟସମାନେ ବିରକ୍ତ ହେବା ଦେଖାଯାଏ । ରାମାୟଣ କାଳରେ ଘୁମୁରା ସୃଷ୍ଟି ବୋଲି ଅନେକ ବିଦ୍ୱାନ ମତ ପ୍ରଦାନ କଲେ ମଧ୍ୟ ଏହି ତଥ୍ୟର ସତ୍ୟତା ଗବେଷଣା ସାପେକ୍ଷ । ଶୂଦ୍ରମୁନି ସାରଳା ଦାସ ସତ୍ୟ ଯୁଗର ବିଷୟ ବସ୍ତୁର ବର୍ଣ୍ଣନା ପ୍ରସଙ୍ଗରେ ଚଣ୍ଡି ପୁରାଣର ବିଭିନ୍ନ ଅଂଶରେ ଘୁମୁରାର ଉଲ୍ଲେଖ କରନ୍ତି । ଯେପରିକି–

ବାଜନ୍ତ କମ କାହାଳୀ ଦାଉଣ୍ଡି ଘୁମୁରା
କାଦମ୍ବରୀ ପାନ କରି ନାଚନ୍ତି ଅସୁର । (୩)

ବୀର ତୂରୀ ବୀର ଢୋଲ ଦାଉଣ୍ଡି ଘୁମୁରା
କତା ମର୍ଦ୍ଦଳ ବଜାନ୍ତି ମାରି ଗାଲ ତୂରା । (୪)

ଶ୍ରୀଯୁକ୍ତ ଯୋଗେନ୍ଦ୍ର ସିଂହଦେଓ ଆକାଶବାଣୀ ଜୟପୁରରୁ ପ୍ରସାରିତ ତାଙ୍କ ପ୍ରବନ୍ଧରେ ଘୁମୁରାର ଜନ୍ମ ସମ୍ପର୍କରେ କହନ୍ତି- "ପୁରାତନ କବି ରାଘନେଶ୍ୱରଙ୍କ ଗୀତରେ ଘୁମୁରାର ଜନ୍ମ ସମ୍ପର୍କରେ ବର୍ଣ୍ଣନା ଅଛି । ଉକ୍ତ ଗୀତର ସାରାଂଶ ହେଲା ଯେ ସତ୍ୟ ଯୁଗରେ ବ୍ରହ୍ମାଙ୍କ ଆଦେଶରେ ଚନ୍ଦ୍ରଧ୍ୱଜ ଏବଂ ତାଙ୍କର ପତ୍ନୀ ଭାରତୀ କାଞ୍ଚି ନଗରରେ ଚବିଶ ପଲ ମାଟିରେ ଘୁମୁରା ଗଢିଲେ । ଘୁମୁରାର ଉଦର ଦ୍ୱାଦଶ ଆଙ୍ଗୁଳ ଖୋଳାଗଲା । ଅତି ଯତ୍ନରେ ଚୈତନ୍ୟ ମନ୍ତ୍ରରେ ଶୁଦ୍ଧ କରାଗଲା । ଜୈବର୍ତ୍ତ ପର୍ବତରୁ ମଣିକଣ୍ଠ ମାରି ଆଣିଥିବା ଗୋଧି ଏଣ୍ଡୁଅ ଚର୍ମରେ ରୁଦ୍ରାକ୍ଷ ମନ୍ତ୍ରରେ ଛାଉଣୀ କରାଗଲା । ଭାଦ୍ରବ ମାସ ମଙ୍ଗଳବାର ସପ୍ତମୀ ମୃଗଶିରା ନକ୍ଷତ୍ରରେ ଘୁମୁରାର ଜନ୍ମ ବୋଲି ଉଲ୍ଲେଖ ଅଛି ।" (୫ ଶ୍ରୀଯୁକ୍ତ ଉମାଶଙ୍କର କର ମଧ୍ୟ ତାଙ୍କ ପ୍ରବନ୍ଧରେ ଠିକ୍ ଏଭଳି ଏକ ବର୍ଣ୍ଣନା କରିଛନ୍ତି- "ଘୁମୁରାର ଇତିହାସ ବହୁ କିମ୍ବଦନ୍ତୀ ଓ ପୌରାଣିକ ଆଖ୍ୟାୟନ ମଧ୍ୟରେ ଲୁକ୍କାୟିତ ହୋଇ ରହିଛି । ମହାଶକ୍ତି କାତ୍ୟାୟନୀ ମହିଷାସୁର ସହ ଯୁଦ୍ଧ କଲାବେଳେ ଦେବୀଙ୍କ ଗଣମାନେ ଯେଉଁ ପଟହ ବା ରଣଢ଼କା ବାଦନ କରୁଥିଲେ, ସେହି ରଣଢ଼କା ପଟହ ମଧ୍ୟରେ ଘୁମୁରା ଅନ୍ୟତମ ବୋଲି ଜନଶ୍ରୁତି କହେ । ଅପର ପକ୍ଷରେ ଘୁମୁରା ସମ୍ବନ୍ଧୀୟ ପ୍ରଚଳିତ ଅନ୍ୟ ଏକ ଆଖ୍ୟାୟିକାରୁ ଜଣାଯାଏ ଯେ ବିନ୍ଧାଣୀ ଚନ୍ଦ୍ରଧ୍ୱଜ ଘୁମୁରାକୁ ଗଢିବା ପରେ ତାହା କୁବେର ପୂଜାରେ ଥିଲା ।" (୬) ଏହି ବକ୍ତବ୍ୟ ଗୁଡିକରୁ ଜଣାଯାଏ ଯେ ଘୁମୁରା ରାମାୟଣ ଯୁଗ ଠାରୁ ବହୁ ପୁରାତନ ଅର୍ଥାତ ସତ୍ୟ ଯୁଗରୁ ସୃଷ୍ଟି । ଏପ୍ରସଙ୍ଗରେ ଗବେଷକ ପ୍ରତ୍ନତାତ୍ତ୍ୱିକ ଶ୍ରୀଯୁକ୍ତ ଜିତାମିତ୍ର ସିଂହଦେଓଙ୍କ ମତକୁ ମଧ୍ୟ ଉଦ୍ଧାର କରିବାକୁ ମୁଁ ଉଚିତ ମନେ କରୁଛି:–

Digitized by srujanika@gmail.com

According to Chandi Purana, while Durga, the eternal Sakti wanted to face Mahisasura in a Duet, she asked the Devas and the Devis to lend their weapons, war instruments and conveyances One of the war musical instrument collected was Ghumra instrument. It is said that a portion of the Damaru instrument of Lord Siva and Saraswati's Vina, Combined together was the Origin of Ghumra instrument " (7)

ମହିଷାସୁରର ପ୍ରତାପରେ ସନ୍ତ୍ରସ୍ତ ସମସ୍ତ ଦେବତା ମେରୁଗିରିରେ ତାହାର ବିନାଶ ନିମନ୍ତେ ଉପାୟ ଚିନ୍ତା କରୁଥିବା ବେଳେ ମହିଷା କ୍ରୋଧରେ ମେରୁଗିରିକୁ ତାଡ଼ିବା ପାଇଁ ଉଦ୍ୟତ ହେଲା । ଦେବତା ମାନଙ୍କର କ୍ରୋଧାଗ୍ନିରୁ ଅଯୋନି ସମ୍ଭୂତା ମାତା ଦୁର୍ଗା ଆବିର୍ଭୂତା ହୋଇ ରାକ୍ଷସକୁ ବିନାଶ କରିବାକୁ ସଂକଳ୍ପ କଲେ । ତାଙ୍କ ଇଛାରେ ଦେବାଦେବୀଗଣ ନିଜ ନିଜର ଅସ୍ତ୍ର ଶସ୍ତ୍ର ସହିତ ଯୁଦ୍ଧ ସରଞ୍ଜାମ ତାଙ୍କୁ ଅର୍ପଣ କଲେ । ମାତ୍ର ଯେତେବେଳେ ଘୁମୁରା ବାଦ୍ୟ ଦୁର୍ଗାଙ୍କୁ ଅର୍ପଣ କରଯାଇଥିବା ପ୍ରସଙ୍ଗ ସାରଳା ଦାସଙ୍କ ଶ୍ରୀଚଣ୍ଡି ପୁରାଣରେ ନାହିଁ । ପୁନଶ୍ଚ ଦେବୀ ଦୁର୍ଗାଙ୍କ ଆବିର୍ଭାବ ପୂର୍ବରୁ ଶୁମ୍ଭ ନିଶୁମ୍ଭ ପ୍ରଭୃତି ରାକ୍ଷସଙ୍କ ଯୁଦ୍ଧ ଯାତ୍ରା ଏପରିକି ମହିଷାସୁରର ସ୍ୱର୍ଗପୁର ଆକ୍ରମଣ ପ୍ରସଙ୍ଗରେ ଘୁମୁରାର ବର୍ଣ୍ଣନା ରହିଛି ।

ବାଜଇ ଯେ ବିଜି ଘୋଷ ମୃଦଙ୍ଗ ଘୁମୁରା
ମଉଳରେ ନୃତ୍ୟ କରେ କେବଣ ଅସୁରା । (୮)

ଆଦିମ ଶବର ସଂସ୍କୃତି ସହିତ ମୁଘୁରାର ନିବିଡ ସମ୍ପର୍କକୁ ଏଡାଇ ଦିଆଯାଇ ନପାରେ । ଅରଣ୍ୟ ଲବ୍ଧ ସର୍ବାପେକ୍ଷା ମନୋରମ ବସ୍ତୁ ମୟୂର ଚନ୍ଦ୍ରିକାର ଟାହିୟା (ଟାୟା) ଘୁମୁରା ଦଳର ଶିରୋଭୂଷା, ଯାହାକି ସେହି ସଂସ୍କୃତିରୁ ଆସିଥିବା ସମଗ୍ର ହିନ୍ଦୁ ସମାଜର ଆରାଧ୍ୟ ପ୍ରଭୁ ଜଗନ୍ନାଥଙ୍କର ମଧ୍ୟ ଶିରୋଭୂଷଣ । ଅତଏବ ଘୁମୁରାର ଉତ୍ପତ୍ତିକାଳ ସଠିକ ଭାବରେ ନିରୂପଣ କରିବା ସମ୍ଭବ ନୁହେଁ । ତେବେ ଏତିକି ନିସନ୍ଦେହରେ କୁହାଯାଇ ପାରେ ଯେ ଆଦିମ ବାଦ୍ୟ ଯନ୍ତ୍ରମାନଙ୍କ ମଧ୍ୟରେ ଘୁମୁରା ନିଶ୍ଚୟ ଅନ୍ୟତମ ।

ପ୍ରାବନ୍ଧିକଗଣ ଲଙ୍କାରୁ କଳାହାଣ୍ଡିକୁ ଘୁମୁରା ଆସିଥିବା କଥା ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି । ଶ୍ରୀଯୁକ୍ତ ଯୋଗେଶ୍ୱର ସିଂହଦେଓ ତାଙ୍କ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି- "ମହାବୀର ହନୁମାନଙ୍କ ଦ୍ୱାରା ଲଙ୍କା ଛାରଖାର ହେଲା ଏବଂ ରାବଣର ନିଧନ ପରେ ଦେବୀ ଲଙ୍କେଶ୍ୱରୀ ଲଙ୍କା ପରିତ୍ୟାଗ କଲେ । ପରିଶେଷରେ କଥିତ ଅଛି ଯେ ଜୁନାବନ୍ଧୀ ପାଟଣାରେ

Digitized by srujanika@gmail.com

ଦେବୀ ଲଙ୍କେଶ୍ୱରୀ ଅଧିଷ୍ଠିତା ହେଲେ । ଘୁମୁରବାଦ୍ୟ ଲଙ୍କାରୁ ଦେବୀ ଲଙ୍କେଶ୍ୱରୀଙ୍କ ଗହଣରେ ଆସିଥିଲା ବୋଲି କଥିତ ଅଛି ।" (୯) ମାତ୍ର ରାମାୟଣରେ ଦେବୀ ଲଙ୍କେଶ୍ୱରୀ ଜୋନାବଳୀ ପାଟଣାକୁ ଆସିଥିବାର କୌଣସି ବର୍ଣ୍ଣନା ନାହିଁ । ତେବେ ଏକଥା ସତ୍ୟ ଯେ ଜୋନାବଳୀ ପାଟଣା ବା ଜୁନାଗଡରେ ଲଙ୍କେଶ୍ୱରୀ ଦେବୀ ପୂଜିତା । ତେବେ ଲଙ୍କାର ଲଙ୍କେଶ୍ୱରୀ ଓଡ଼ିଶାକୁ କିପରି ଆସିଥିବେ ବିଗ୍ରର କରଯାଉ । ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସଙ୍କ ଅନୁସାରେ– "କଳିଙ୍ଗର ରାଜା ସିଂହ ବାହୁଙ୍କ ପୁତ୍ର ବିଜୟ ସିଂହଳକୁ ଯାଇ ସେଠାରେ ଖ୍ରୀ.ପୂ. ୫୪୩ ରୁ ଆରମ୍ଭ କରି ଖ୍ରୀ: ପୂ. ୫୦୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ବିଜୟଙ୍କଠାରୁ ସିଂହଳରେ କଳିଙ୍ଗବାସୀଙ୍କ ଠାରୁ ଆର୍ଯ୍ୟ ସଭ୍ୟତାର ବିକାଶ ହୋଇ ଥିଲା ବୋଲି ସିଂହଳର ରାଜା ସାହସ ମଲ୍ଲଙ୍କ ଶିଳାଲିପିରୁ ଜଣାପଡେ । ବିଜୟଙ୍କ ପୁତ୍ରରା ସୁନୀତ କଳିଙ୍ଗରୁ ଯାଇ ବିଜୟଙ୍କ ଉତ୍ତରାଧିକାରୀ ହୋଇଥିଲେ । (୧୦) ସେହି ସମୟରେ ସିଂହଳ ଓ ଉତ୍କଳ ମଧ୍ୟରେ ସାଂସ୍କୃତିକ ଆଦାନ ପ୍ରଦାନ ଘଟି ଦେବୀ ଲଙ୍କେ-ଶ୍ୱରୀ ଓ ଘୁମୁରା ବାଦ୍ୟ ଓଡ଼ିଶାକୁ ଆସିଥିବା ସମ୍ଭବ । ମାତ୍ର ବଳରାମ ଦାସଙ୍କ ଦାଣ୍ଡି ରାମାୟଣରେ କେବଳ ରାମଚନ୍ଦ୍ରଙ୍କର ସୈନ୍ୟ ସଜ୍ଜା ବେଳେ ଘୁମୁରାର ବର୍ଣ୍ଣନା ଦେଖିବାକୁ ମିଳେ । ଲଙ୍କା ସୈନ୍ୟ ଘୁମୁରା ବାଦ୍ୟ ବ୍ୟବହାର କରିଥିବାର କୌଣସି ସ୍ଥାନରେ ଉଲ୍ଲେଖ ନାହିଁ । ଏଣୁ ଏହି ବାଦ୍ୟ ଲଙ୍କାରେ ସୃଷ୍ଟି ଓ ଲଙ୍କାରୁ କଳାହାଣ୍ଡିକୁ ଆସିଛି କହିବା ଭ୍ରମାତ୍ମକ ମନେହୁଏ । ଅନ୍ୟ ପକ୍ଷରେ ରାମାୟଣ କାଳର ବହୁ ପୂର୍ବରୁ ଏ ଅଂଚଳରେ ଘୁମୁରାବାଦ୍ୟ ପ୍ରଚଳନ ଥିବାର ପ୍ରମାଣ ରହିଛି । କଳାହାଣ୍ଡିର ମାରାଗୁଡା ଗ୍ରାମ ଐତିହାସିକ କ୍ଷେତ୍ର ସଂସ୍କୃତିର ଧ୍ୱଂସାବଶେଷରେ ସେତେବେଳେ ଘୁମୁରା ବାଦ୍ୟ ପ୍ରଚଳନ ଥିବାର ପ୍ରମାଣ ରହିଛି । ଗୁଡହାଣ୍ଡି ଓ ଯୋଗୀମଠରୁ ଆବିଷ୍କୃତ ପ୍ରାଚୀନ ଗୁମ୍ଫା ଚିତ୍ର ଗୁଡ଼ିକରେ ଡମ୍ବରୁ ଓ ଘୁମୁରା ସହିତ ସାମଞ୍ଜସ୍ୟ ଥିବା କେତେକ ଚିତ୍ର ଦୃଷ୍ଟି ଗୋଚର ହୁଏ । ତହିଁରୁ ଉଦ୍ଧାର କରାଯାଇ ଥିବା ଘୁମୁରାର ଦୁଇଟି ପ୍ରାଚୀନ କଳାକୃତି ଖରିଆର ଶାଖା ସଂଗ୍ରହାଳୟରେ ସଂରକ୍ଷିତ ହୋଇ ରହିଛି ବୋଲି ପ୍ରତ୍ନତାତ୍ତ୍ୱିକ ଜିତାମିତ୍ର ପ୍ରସାଦ ସିଂହଦେଓ ତା ୧୬-୧୨-୧୯୮୭ରେ ଏକ ପତ୍ର ମାଧ୍ୟମରେ ଏହି ଲେଖକକୁ ଅବଗତ କରାଇଛନ୍ତି । ଶ୍ରୀ ସିଂହଦେଓ ତାର ଫଟୋଚିତ୍ର ନେବା ପାଇଁ ପରାମର୍ଶ ଦେଇଥିଲେ ମଧ୍ୟ ମୁଁ ତାହା କରି ନପାରି ପାଠକ ବନ୍ଧୁମାନଙ୍କଠାରୁ କ୍ଷମା ମାଗି ନେଇଛି । ସେହି ଚିତ୍ର ଗୁଡ଼ିକର କାଳ ନିରୂପଣ କରିବାକୁ ଯାଇ ପଣ୍ଡିତମାନେ ଧାରଣା କରନ୍ତି ଯେ ଖ୍ରୀ:ପୂ: ପଚିଶ ହଜାରରୁ ଖ୍ରୀ:ପୂ: ପନ୍ଦର ହଜାର ମଧ୍ୟରେ ଏହି ଚିତ୍ର ଗୁଡ଼ିକ ଅଙ୍କିତ ହୋଇଛି । "ତା ଛଡା କଳା-ହାଣ୍ଡି ଜିଲ୍ଲାର ଗୁଡହାଣ୍ଡିଠାରେ ଥିବା ଚିତ୍ର ଓ କଟକ ଜିଲ୍ଲାର ନରଜ ପାହାଡରେ ଥିବା ଅଦ୍ଭୁତ ଅକ୍ଷର ସେ ସମୟ ମାନବଙ୍କର କୃତିବୋଲି ନିରୂପିତ । ଏହାର କାଳ ନିରୂପଣ କରିବାକୁ ଯାଇ ପଣ୍ଡିତମାନେ ଧାରଣା କରନ୍ତି ଖ୍ରୀ:ପୂ: ୨୫ ହଜାରରୁ ୧୫ ହଜାର

Digitized by srujanika@gmail.com

ମଧ୍ୟରେ ଏହି ଚିତ୍ର ଗୁଡ଼ିକ ଅଙ୍କିତ ହୋଇଛି । ଗୁଡହାଣ୍ଡି ପାହାଡରେ ଥିବା ଗୁଂଫା ମାନଙ୍କରେ ସେ କାଳର ଆଦିମାନବ ରହୁଥିଲ ।” (୧୧) ଏହାଦ୍ୱାରା ସୁଦୂର ଅତୀତରେ କଳାହାଣ୍ଡିରେ ଏକ ଉନ୍ନତ ସଭ୍ୟତା ଥିବା ସଙ୍ଗେ ସଙ୍ଗେ ଘୁମୁରର ମଧ୍ୟ ପ୍ରଚଳନ ଥିବା ପ୍ରମାଣିତ ହେଉଛି । ପ୍ରାଗ୍ଐତିହାସିକ କାଳରେ ଏ ଅଞ୍ଚଳରେ ଏକ ଉନ୍ନତ ସଭ୍ୟତା ଥିବା କଥା କୃପାସିନ୍ଧୁ ମିଶ୍ରଙ୍କ ନିମ୍ନୋକ୍ତ ବକ୍ତବ୍ୟଟି ମଧ୍ୟ ପ୍ରମାଣିତ କରେ । “ପୌରାଣିକ ଯୁଗରେ ଏ ଅଂଚଳ ଅତ୍ୟନ୍ତ ସମୃଦ୍ଧ ଥିବାର ପ୍ରମାଣ ରହିଛି । ତେତୟା ଯୁଗରେ ରାମ-ଚନ୍ଦ୍ରଙ୍କ ଜନନୀ ଏହି କୋଶଳ ରାଜ୍ୟର ରାଜ କନ୍ୟା । ସରଯୂ ନଦୀର ଦକ୍ଷିଣସ୍ଥ ସମ୍ବଲପୁର, କଳାହାଣ୍ଡି, ବସ୍ତର ଓ ରାୟପୁର ଅଂଚଳକୁ ନେଇ ଦକ୍ଷିଣ କୋଶଳ ଗଠିତ ହୋଇଥିଲା ।” (୧୨) ପୁରାଣ ବର୍ଣ୍ଣିତ ଏହି କୋଶଳ ସାମ୍ରାଜ୍ୟରେ ହିଁ ଘୁମୁରର ପ୍ରଚଳନ ଥିଲା । ସେହି କୋଶଳ ସାମ୍ରାଜ୍ୟର ଅନ୍ତର୍ଗତ ନେହେନା–ମଧ୍ୟପ୍ରଦେଶରୁ ମଧ୍ୟ ଭୂଖୋଦନରୁ ଘୁମୁରର ଏକ ମୃତ୍ତିକା ନିର୍ମିତ ପ୍ରାଚୀନ କଳାକୃତି ମିଳିଛି । “ A terracotta Ghumra nstrument has been discovered at Nehna site, and is exibited at Khariar Branch Museum. ” (୧୩) ଅତଏବ ଘୁମୁରବାଦ୍ୟ କୋଶଳ ସଂସ୍କୃତିର, ଏଥିରେ ଦ୍ୱିରୁକ୍ତି ନାହିଁ ।

ସାରଳା ମହାଭାରତ ଅନୁସାରେ ସତ୍ୟଯୁଗର ମହିଷାସୁରଙ୍କ ନାତି ଗୋସିଙ୍ଘ ଦୈତ୍ୟର ରାଜଧାନୀ ଥିଲା ଜେନାବଳୀ ପାଟଣା । ପୁରାଣ ବର୍ଣ୍ଣିତ ଜେନାବଳୀ ପାଟଣା ବର୍ତ୍ତମାନର ଜୁନାଗଡ ବୋଲି ଅନେକେ ସ୍ୱୀକାର କରନ୍ତି । ନର୍ଲ ନିକଟସ୍ଥ ଅସୁରଗଡ ଦୁର୍ଗ ଗୋସିଙ୍ଘ ଦୈତ୍ୟର ରାଜଧାନୀ ଥିଲା ବୋଲି ମଧ୍ୟ ଜନଶ୍ରୁତି ରହିଛି । ମହାଭାରତର ମଧ୍ୟ ପର୍ବରେ ଗୋସିଙ୍ଘ ଦୈତ୍ୟ ବଧ ପ୍ରସଙ୍ଗରେ ଘୁମୁରର ବର୍ଣ୍ଣନା ରହିଛି । ଏହା ଉକ୍ତ ଦୈତ୍ୟର ମଧ୍ୟ ସମର ବାଦ୍ୟ ଥିଲା ।

କେତେ ମର୍ଦ୍ଦଳ ବଜାଇ ବଜାନ୍ତି ଘୁମୁର
ମତୁଆଳ ଖେଳେ ନାଚି ଚମକାନ୍ତି ଧର । (୧୪)

× × × ×

ଟମକ ନିଶାଣ ପୁଣ ଘୁମୁର ବାଜଇ
ବାହାର ହୋଇଲେ ଦୈତ୍ୟ ଆଗଭର ହୋଇ । (୧୫)

× × × ×

କେତେ ଘୁମୁର ବାଜୁଛି ତହିଁ ଘନ ଘନ
ଦିବସେ ନଦିଶେ ଦିନକରର କିରଣ । (୧୬)

× × × ×

Digitized by srujanika@gmail.com

ଏସବୁକୁ ପର୍ଯ୍ୟାଲୋଚନା କଲେ ଅନ୍ୟ କୌଣସି ସ୍ଥାନରୁ ଘୁମୁରା କଳାହାଣ୍ଡିକୁ ଆସିଥିବା କଥା ଆଦୌ ଯୁକ୍ତି ସଙ୍ଗତ ମନେହୁଏ ନାହିଁ । ପୁନଶ୍ଚ କଳାହାଣ୍ଡି ଓ ଏହାର ଆଖପାଖ ଅଂଚଳକୁ ଛାଡ଼ିଦେଲେ ଏହି ବାଦ୍ୟ ଓ ନୃତ୍ୟ ଅନ୍ୟସ୍ଥାନରେ ଦୃଷ୍ଟିଗୋଚର ହେଉ ନ ଥିବାରୁ ଏହା କଳାହାଣ୍ଡିର ସମ୍ପୂର୍ଣ୍ଣ ନିଜସ୍ୱ ବୋଲି ନିସନ୍ଦେହରେ କୁହାଯାଇ ପାରିବ ।

ବର୍ତ୍ତମାନ ଘୁମୁରାର ନାମ କରଣ ସଂପର୍କରେ ଆଲୋଚନା କରଯାଉ । ପ୍ରାବନ୍ଧିକ ଗଣ ଘୁମୁରାର ନାମ କରଣ ସଂପର୍କରେ ବ୍ୟାଖ୍ୟା କରିବାକୁ ଯାଇ କହିଛନ୍ତି ଯେ— ଏହିବାଦ୍ୟ ବଜାଇଲେ ଘୁମ୍ ଘୁମ୍ ଶବ୍ଦ ଜାତହୁଏ ବୋଲି ଏହାର ନାମ ଘୁମୁରା ହୋଇଛି । ସରଳା ମହାଭାରତର ମଧ୍ୟପର୍ବରେ ମୃତ୍ୟୁାସୁର ବଧ ପ୍ରସଙ୍ଗରେ ମଧ୍ୟ ସେପରି ଏକ ବର୍ଣ୍ଣନା ଦେଖାଯାଏ ।

ଢୋଲ ମାଦଲ ଆଦି ଯେ ଘୁମୁରା ବାଜଇ
ଘୁମୁରା ଯେ ଘୁମ୍ ଘୁମ୍ ହୋଇ ଗରଜଇ । (୧୭)

ମାତ୍ର ଏହା ଯଥାର୍ଥ ମନେହୁଏ ନାହିଁ କି ଘୁମୁରା ପ୍ରକୃତରେ ଘୁମ୍ ଘୁମ୍ ଶୁଭେ ନାହିଁ । ଦେଖିବାକୁଗଲେ 'କ' ବର୍ଗୀୟ ଧ୍ୱନି ସମୂହ ଘୁମୁରାରୁ ଅଧିକ ଉତ୍ପନ୍ନ ହୁଏ । ଯଥା— କ, ଚ, ଟ, ତ, ପ । ମୋ ମତରେ ଏହାର ନାମ କରଣ ତାତ୍ତ୍ୱିକ ତଥା ଅର୍ଥ ପୂର୍ଣ୍ଣ । ନାଦ ବ୍ରହ୍ମର ସଙ୍କେତ ହେଉଛି ଡମ୍ବରୁ, ଏହି ଆଦି ବାଦ୍ୟ ଯନ୍ତ୍ରର ପରବର୍ତ୍ତୀ ସଂସ୍କରଣ ଓ ଉନ୍ନତ ରୂପ ଘୁମୁରା ଅଟେ । ସଂଚାର ଧ୍ୱନି ଉତ୍ପନ୍ନ କରୁଥିବା ଏହାର ଉପରିଭାଗ ଡ଼ମ୍ବରୁ ସଦୃଶ ଅଟେ । ତାହା ଶିବ ଓ ପରବର୍ତ୍ତୀ କାଳରେ ଶିବାଙ୍କର ପ୍ରିୟ ବାଦ୍ୟ ହୋଇଛି । ଏଣୁ ଘୁମ + ଉ + ରା ହୋଇ ଘୁମୁରା ହେବା ସ୍ୱାଭାବିକ ତଥା ଯୁକ୍ତି ସଙ୍ଗତ ମନେହୁଏ । ଘୁମ ଶବ୍ଦର ଅର୍ଥ ମୃତ୍ତିକା ନିର୍ମିତ ସରୁ ମୁହଁ ଓ ବଡ଼ ପେଟଥିବା ମାଠିଆ ସଦୃଶ ପାତ୍ର । 'ଉ' ର ଅର୍ଥ ଶିବ । 'ରା' ଅର୍ଥ ରବ ବା ଧ୍ୱନି । ଏଣୁ ଘୁମ ସଦୃଶ ଶିବ ବାଦ୍ୟ ବା ଶିବଙ୍କ ପ୍ରିୟ ବାଦ୍ୟ ଯନ୍ତ୍ରରୁ ବିବର୍ତ୍ତିତ ଘୁମ ସଦୃଶ ବାଦ୍ୟ ହେଉଛି ଘୁମୁରା । ମାଟେଗୁଡ଼ା ଉପତ୍ୟକାରୁ ମିଳିଥିବା ପ୍ରାଗ୍ ଐତିହାସିକ ଶୈବ ସଭ୍ୟତାର ଡମ୍ବରୁ ଓ ଘୁମୁରାର ଜଳାକୃତି ଏହି ଯୁକ୍ତିକୁ ପ୍ରମାଣ କରେ ।

ଅନେକେ ମତ ଦିଅନ୍ତି ଯେ ଏହା ଏକ ଆସୁରିକ ବାଦ୍ୟ । ମାତ୍ର କୌଣସି ନୃତ୍ୟ ସଙ୍ଗୀତ କୌଣସି ଗୋଷ୍ଠୀ ବା ସଂପ୍ରଦାୟ ମଧ୍ୟରେ ସୀମା ବଦ୍ଧ ହୋଇ ରହିବା ସମ୍ଭବ ନୁହେଁ । ଶ୍ରୀ ଚଣ୍ଡୀ ପୁରାଣରେ ଦେବୀ ମାନଙ୍କର ରଣବାଦ୍ୟ ପ୍ରସଙ୍ଗରେ ଘୁମୁରାର ବର୍ଣ୍ଣନା ରହିଛି ।

କଡ଼ା ମୃଦଙ୍ଗ ମର୍ଦ୍ଦଳ ଘୁମୁରା ଘୌରଷ୍ଟ
ବଜାଇ ମତ୍ତ ରଙ୍ଗରେ ନାଚି ଖେମଟା ନାଟ

Digitized by srujanika@gmail.com

ଆପଦ ବିନାଶିନୀ ସେ ମଦ୍ୟ ପାନେ ଭଢ଼ି
ବ୍ରହ୍ମାଣ୍ଡ ଭଙ୍ଗୁ ଅଛି ମୁଖ ରବ ରଡ଼ି । (୧୮)

ମହାଭାରତର ଆଦ୍ୟ ପର୍ବରେ ଶିବ ପୁରରେ ଭୀମଙ୍କ ଦ୍ୱାରା ଚଣ୍ଡାଳ ମାନଙ୍କ ବଧ ପ୍ରସଙ୍ଗରେ ଉଡ୍ର ଦେଶର ଚଣ୍ଡାଳ ମାନଙ୍କର ଯୁଦ୍ଧ ବାଦ୍ୟ ରୂପେ ଘୁମୁରର ବର୍ଣ୍ଣନା ରହିଛି ।

କଡ଼ା ମର୍ଦ୍ଦଳ ଘୁମୁର ନିଶାଣ ବାଜନ୍ତି
ହୁଳହୁଳି ନାଦେ ନାଟ ଖେମଟାରେ ମଣ୍ଡି । (୧୯)

ସାରଳା ଦାସ ଉତ୍କଳର ଏହି ଅଞ୍ଚଳକୁ ଉଡ୍ର ଦେଶ ବୋଲି ବର୍ଣ୍ଣନା କରିଥିବା ଅନୁମିତ ହୁଏ । ରାମଚନ୍ଦ୍ରଙ୍କ ଯୁଦ୍ଧ ସଜ୍ଜା ପ୍ରସଙ୍ଗରେ ବଳରାମ ଦାସ ଦାଣ୍ଡି ରାମାୟଣରେ ଘୁମୁରର ବର୍ଣ୍ଣନା କରିଛନ୍ତି ।

ଘମ୍ ଘମ୍ ଘୁମୁର ଭେରୀ କଂସାଳ ମର୍ଦ୍ଦଳ
ମୃଦଙ୍ଗ ଶବ୍ଦ ଭେରୀ ଶବଦ ବହଳ । (୨୦)

ରାଜ୍ୟ ବିରାଟ ଓ ବୀରବାହୁଙ୍କ ଯୁଦ୍ଧ ବାଦ୍ୟ ରୂପେ ମଧ୍ୟ ଘୁମୁର ବ୍ୟବହୃତ ହେବାର ପ୍ରମାଣ ସାରଳା ମହାଭାରତରେ ରହିଛି ।

କଡ଼ା ବିଜି ଘୋଷ ଆଉ ବାଜଇ ଘୁମୁରା
ଝିରା ମହୁରୀ ଆହୁରି ବାଜଇ ତିମିରା । (୨୧)

ଉପରୋକ୍ତ ବର୍ଣ୍ଣନା ସମୂହରୁ ଜାତି ଧର୍ମ ନିର୍ବିଶେଷରେ ଘୁମୁରା ସମସ୍ତଙ୍କର ପ୍ରିୟ ବାଦ୍ୟ ଥିବା ଜଣାପଡେ । ତେବେ ସମର ବ୍ୟତୀତ ଅନ୍ୟ ଆନନ୍ଦ ଉତ୍ସବରେ ଘୁମୁରର ବର୍ଣ୍ଣନା ଦେଖିବାକୁ ମିଳୁ ନଥିବାରୁ ଏହାକୁ ନିସନ୍ଦେହରେ ପୁରାତନ ରଣ ବାଦ୍ୟ କୁହାଯାଇ ପାରିବ । "ପୂର୍ବେ କଳାହାଣ୍ଡି ଏକ ସ୍ୱତନ୍ତ୍ର ରାଜ୍ୟ ଥିଲା । ନାଗ ବଂଶର ରାଜାମାନେ ଏ ରାଜ୍ୟରେ ୧୦୦୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜୁତି କରିଥିଲେ । କଳାହାଣ୍ଡି ଅଧୀନରେ ଅଠରଜଣ ସାମନ୍ତ ରାଜାଥିଲେ ।" (୨୨) କଳାହାଣ୍ଡି ରାଜା ଓ ସାମନ୍ତ ରାଜା ମାନଙ୍କର ସୁ-ସଂଗଠିତ ସେନାବାହିନୀ ଥିଲା । ଉକ୍ତ ସେନାବାହିନୀ ଗୁଡ଼ିକର ପ୍ରଧାନ ରଣ ବାଦ୍ୟ ଥିଲା ଘୁମୁରା ।

ଏଥର ରଣବାଦ୍ୟ ଘୁମୁରା ରଣ ବାଦ୍ୟର ରୂପ ନେଲା କିପରି ଆଲୋଚନା କରାଯାଉ । ଅତି ପୁରାତନ କାଳରେ ଘୁମୁରା ଗୀତର ମହତ୍ତ୍ୱ ନଥିବା ପରି ମନେ ହୁଏ । କେବଳ ଯୋଦ୍ଧୃ ବୃନ୍ଦଙ୍କୁ ଉତ୍ତେଜିତ କରିବା ଉଦ୍ଦେଶ୍ୟରେ ରଣ ହୁଙ୍କାର କରି ବାଦ୍ୟର ତାଳେ-ତାଳେ ଭୟଙ୍କର ପ୍ରଚଣ୍ଡ ନୃତ୍ୟ ପ୍ରଦର୍ଶନ କରାଯାଉଥିଲା । ପାଇକ ମାନଙ୍କର ଅବସର

Digitized by srujanika@gmail.com

ସମୟରେ ଚିତ୍ତ ବିନୋଦର ଏହା ଏକ ମାତ୍ର ସାଧନ ଥିବାରୁ କ୍ରମେ ତହିଁରେ ଗୀତର ସମନ୍ୱୟ କରାଗଲା । ଇଂରେଜ ରାଜତ୍ୱ କାଳରେ ପାଇକମାନେ ଏକ ପ୍ରକାର ନିଷ୍କ୍ରିୟ ହୋଇ ପଡ଼ିଲେ । ସେହି ଅବସରରେ ଏକ ଉପଭୋଗ୍ୟ ନୃତ୍ୟ ରୂପରେ ଏହାର ଦ୍ରୁତ ଉନ୍ନତି ସାଧିତ ହୋଇଥିଲା । କଳାହାଣ୍ଡିର, ତଦାନିନ୍ତନ କବିଗଣ ଦେବାଦେବୀଙ୍କ ବନ୍ଦନା ରାଜାମାନଙ୍କର ପ୍ରଶସ୍ତି ଗାନକରି ଓ ପୌରାଣିକ ଉପାଖ୍ୟାନ ଗୁଡ଼ିକୁ ବର୍ଣ୍ଣନା କରି ବହୁ ଗୀତ ରଚନା କରିଥିଲେ । କାଳକ୍ରମେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତ ସିଂହାର ପ୍ରଭୃତି କବି ମାନଙ୍କର ଛାନ୍ଦ ଚଉପଦୀ ଘୁମୁରା ମଧ୍ୟକୁ ପ୍ରବେଶ କରି ଆହୁରି ରସୋଦ୍ଦୀପ୍ତ କରିଥିଲା ଫଳରେ ଗାଁ ଗହଳର ସାଧାରଣ ଲୋକେ ମଧ୍ୟ ଏ ନୃତ୍ୟ ପ୍ରତି ଆକୃଷ୍ଟହୋଇ ଘୁମୁରା ଦଳମାନ ଗଠନକଲେ । ଭବାନୀପାଟଣା, ଜୟପାଟଣା, ମଦନପୁର ରାମପୁର, ଖରିଆର ପ୍ରଭୃତିର ରାଜନ୍ୟବର୍ଗ ସେମାନଙ୍କୁ ପ୍ରୋତ୍ସାହିତ କରିଥିଲେ । ଦଶହରା ଉତ୍ସବରେ ଭବାନୀପାଟଣାର ମାଣିକେଶ୍ୱରୀ, ଜୁନାଗଡର ଲଙ୍କେଶ୍ୱରୀ, ଖରିଆରେ ରକ୍ତାମ୍ବରୀ ମଦନପୁର ରାମପୁରର ଡାକେଶ୍ୱରୀ, ଆମଥାଣିର ବୁଢ଼ାରଜା ପ୍ରଭୃତି ଦେବାଦେବୀଙ୍କ ପୀଠରେ ଗାଁ ଗହଳର ଅନେକ ଘୁମୁରା ଦଳର ସମାବେଶ ହୋଇ ଘୁମୁରାର ଉନ୍ନତି ଓ ବିସ୍ତୃତିରେ ସହାୟକ ହେଲା । ନିଜ ନିଜ ଦଳର ଶ୍ରେଷ୍ଠତ୍ୱ ପ୍ରତିପାଦନ ପାଇଁ ପୋଷାକ, ନୃତ୍ୟ ଓ ବାଦ୍ୟ ରୀତିନୀତିରେ ଉନ୍ନତି କରାଗଲା । ଘୁମୁରା ଗାୟକମାନେ ପୁରାଣ ଶାସ୍ତ୍ରର ଜଟିଳ ପ୍ରଶ୍ନ ସବୁ ପ୍ରତିଦ୍ୱନ୍ଦ୍ୱି ଦଳକୁ ଗୀତ ମାଧ୍ୟମରେ ପଚାରିଲେ । ଏପରି ଘୁମୁରା ଲଢ଼େଇ ବା ବାଦୀ ଘୁମୁରା ଜନ୍ମନେଲା । ବାଦୀ ପାଲା ପରି ଏହା ଦର୍ଶକ ମାନଙ୍କୁ ଅଧିକ ଆକୃଷ୍ଟ କଲା । ଏପରି ଭାବରେ ପୁରାତନ ରଣ ନୃତ୍ୟ ଘୁମୁରା କାଳକ୍ରମେ ସର୍ବ ଜନପ୍ରିୟ କଳାହାଣ୍ଡିର ଗଣ ନୃତ୍ୟର ରୂପ ନେଲା ।

ଘୁମୁରା ବାଦ୍ୟଟି ଯଦିଓ ଏକ ସ୍ୱୟଂ ସମ୍ପୂର୍ଣ୍ଣ ବାଦ୍ୟଯନ୍ତ୍ର ତଥାପି ଉକ୍ତ ବାଦ୍ୟ ପରିବେଷଣ କାଳରେ ଏକକ ଭାବେ ଏହି ବାଦ୍ୟ ବାଜେ ନାହିଁ । ଏହା ସହିତ ଶ୍ରୁତି ମଧୁର ତଥା ଭାବୋଦ୍ଦୀପକ ହେବା ଉଦ୍ଦେଶ୍ୟରେ ଆବଶ୍ୟକ ବାଦ୍ୟ ମାନଙ୍କୁ ସଂଯୋଗ କରାଯାଇଥାଏ । ଘୁମୁରା ସହିତ ଟାଳ ଓ ନିଶାଣ ମୁଖ୍ୟ ସହଯୋଗୀ ବାଦ୍ୟ ରୂପେ ସର୍ବତ୍ର ବ୍ୟବହାର କରାଯାଏ । କେତେକ ଅଞ୍ଚଳରେ ମୃଦଙ୍ଗ, ଭେରୀ ଓ ମହୁରୀକୁ ମଧ୍ୟ ସହଯୋଗୀ ବାଦ୍ୟ ରୂପେ ବ୍ୟବହାର କରିବା ଦେଖାଯାଏ । ଅନେକେ ଏସବୁ ବାଦ୍ୟ ଯନ୍ତ୍ରର ବ୍ୟବହାରକୁ ଅସଙ୍ଗତ ମନେ କରନ୍ତି । କିନ୍ତୁ ମଦନପୁର ରାମପୁର ଘୁମୁରା ଦଳରେ ମହୁରୀର ବ୍ୟବହାର ବହୁକାଳରୁ ରହିଆସିଛି ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ପ୍ରଣେତା ଗୋପାଳ ଚନ୍ଦ୍ର ପ୍ରହରାଜ ବିଂଶ ଶତାବ୍ଦୀର ତୃତୀୟ ଦଶକରେ ଘୁମୁରାର ବ୍ୟାଖ୍ୟା ନିମ୍ନମତେ କରିଛନ୍ତି । "ଏହା ଗୋଟିଏ ଲମ୍ବ ମୁହାଁ ମାଠିଆ ବା ସୋରେଇ ପରି । ଏହାର ପଛଆଡ଼େ ଗୋଟିଏ ଛିଦ୍ର

Digitized by srujanika@gmail.com

ଓ ଭୁଣ୍ଡି ଥାଏ ଓ ଏହା ମୁହଁରେ ଗୋଧିଚର୍ମ କେନ୍ଦୁ ଅଠା ଦ୍ୱାରା ଲଗା ଯାଇଥାଏ ଓ ଦଉଡ଼ି ଦ୍ୱାରା କସା ହୋଇ ବନ୍ଧା ହୋଇ ରହିଥାଏ । × × × × । ଘୁମୁରା ବାଜିବା ସଙ୍ଗେ-ସଙ୍ଗେ ମୃଦଙ୍ଗ (ମାଦଳ) ମଧ୍ୟ ବଜାହୁଏ । (୨୩) ଏହି ବକ୍ତବ୍ୟରୁ ଘୁମୁରା ସହିତ ମୃଦଙ୍ଗ ବା ମାଦଳର ବ୍ୟବହାର ମଧ୍ୟ ପୁରାତନ ବୋଲି ଜଣାଯାଏ । ଚଣ୍ଡୀ ପୁରାଣ, ମହାଭାରତ, ରାମାୟଣ ପ୍ରଭୃତି ଗ୍ରନ୍ଥରେ କେବଳ ଘୁମୁରା, ନିଶାଣ, ଓ ଢ଼ାଳର ସ୍ୱତନ୍ତ୍ର ବର୍ଣ୍ଣନା ଦେଖିବାକୁ ମିଳେନାହିଁ । ମୃଦଙ୍ଗ, ମର୍ଦ୍ଦଳ, କଂସାଳ ଢ଼ାଳ ଦୁନ୍ଦୁଭି, ପାଣବ, ପଟହ, ଶଂଖ, ଭେରୀ, ଢୋଲ, ବୀରତୂର, ଦମା, ଡମାଲୁ, ଟମକ, ନିଶାଣ, କାହାଳୀ, ଦାଉଣ୍ଡି, ବିଜିଘୋସ, ଖୁରା, ମହ୍ଲାର, ମହୁରୀ, ତିମିରା ଦୋହରୀ, ଝଁଜ୍ଝାଳ, ସୌରାଷ୍ଟ୍ର ପ୍ରଭୃତି ବାଦ୍ୟ ବୃନ୍ଦ ସହ ଘୁମୁରାର ବର୍ଣ୍ଣନା ଆସେ । ଏଥି ନିମନ୍ତେ ମହିଷାସୁରର ଯୁଦ୍ଧ ବାଦ୍ୟର ବର୍ଣ୍ଣନା ଦେଲେ ଯଥେଷ୍ଟ ହେବ ।

ସତୁରି କୋଟି ଯେ ଢୋଲ କୋଟିଏ ଟମକ
ମହୁରୀ ପଚିଶ ଖର୍ବ ଶଂଖ ଯେ ଅନେକ ।

× × × × × × ×

ବାମ ପାଖେ ତାହାର ଯେ ଅସୁର ଦୁନ୍ଦୁଭି
ତାହାଙ୍କର ନାଦ ଶୁଣି କଂପେ ଦେବୀଭୁବି ।

× × × × × × ×

ବାଦ୍ୟକାର ମାନେ କେତେ ନୁହଇ ଯେ କଳି
ଶଂଖ ଶୁଭୁଅଛି ପାଞ୍ଚ କୋଟିରୁ ଉଗୁଳି ।

× × × × × ×

ତାଙ୍କ ବାଦ୍ୟକାର ମାନ ସଂଖ୍ୟାକରି ନୋହେ
ଯହିଁରେ କି ଏକା ଭେରୀ ସାତ ପଦୁ ହୁଏ ।

× × × ×

ପଞ୍ଚଷଠି ସସ୍ର ବୀର ଢୋଲ ଯେ ବଜାଇ
ପଞ୍ଚଷଠି ସହସ୍ର ଯେ ନିଶାଣ ଶୁଭଇ ।
ପଞ୍ଚଷଠି ସହସ୍ରେକ ଟମକ ହିଁ ବାଜେ ।
ଦାଉଣ୍ଡି ବିଜିଘୋଷତ ତହୁଁ କେହି ହେଜେ ।
ପଞ୍ଚଷଠି କୋଟି ବାଜୁ ଅଛଇ ଝଞ୍ଜାଳ
ପଞ୍ଚଷଠି କୋଟି ତହିଁ ବାଜଇ କାହାଳ ।

Digitized by srujanika@gmail.com

ପଞ୍ଚଷଠି କୋଟି ଅଳାବେଣୀ ପରିକଳି
ପଞ୍ଚଷଠି କୋଟି ଭେରି ବାଜଇ ଉଗ୍ରଳି ।
ପଞ୍ଚଷଠି କୋଟି ଶଙ୍ଖ ବାଜେ ତହିଁ ପୁଣି
ପଞ୍ଚଷଠି କୋଟି ରାମ ତାଳି ପରିମାଣି ।
ପଞ୍ଚଷଠି କୋଟି ଏକ ମହୁରୀ ଦୋସରି
ଏ ବିଧି ଅନେକ ପରକାରେ ବାଦ୍ୟସ୍ଫୁରି ।

× × × ×

ବଜାଇ କେ ବିଜିଘୋଷ ମୃଦଙ୍ଗ ଘୁମୁରା
ମଞ୍ଚଉରେ ନୃତ୍ୟ କରେ କେବଣ ଅସୁର । (୨୪)

ଅତଏବ ଉପରୋକ୍ତ ବାଦ୍ୟଯନ୍ତ୍ର ଗୁଡ଼ିକ ମଧ୍ୟରୁ ଯେ କୌଣସି ବାଦ୍ୟ ଯନ୍ତ୍ରକୁ ସଙ୍ଗୀତର ସଂହତି ଓ ସୌନ୍ଦର୍ଯ୍ୟ ରକ୍ଷା ପୂର୍ବକ ଘୁମୁରା ସହିତ ବ୍ୟବହାର କରାଗଲେ କୌଣସି କ୍ଷତି ନାହିଁ ।

ଘୁମୁରା ଦଳର ପୋଷାକ ମଧ୍ୟ ସ୍ୱତନ୍ତ୍ର ଓ ନିର୍ଦ୍ଦିଷ୍ଟ ଅଟେ । ଏହାର ଅନ୍ୟ କୌଣସି ଲୋକନୃତ୍ୟର ବେଶଭୂଷା ସହିତ ମେଳ ନାହିଁ । ଘୁମୁରା କଳାକାରମାନେ ରଙ୍ଗ ବେରଙ୍ଗର ଶାଢ଼ୀ ବା ଧୋତିକୁ ପାଇ କଚ୍ଛା ମାରି ପିନ୍ଧନ୍ତି । ଦେହରେ ଚିତ୍ରିତ କାମିଜ ପିନ୍ଧି ମୁଣ୍ଡରେ ବୀର ପଗଡ଼ି ଭିଡ଼ନ୍ତି । ପଗଡ଼ି ଉପରେ ମୟୂର ଚନ୍ଦ୍ରିକାର ଟାହିୟା ଝଞ୍ଜା ଯାଇଥାଏ । ନୃତ୍ୟ ସମୟରେ ଏହି ଟାହିୟା ଦୋହଲି ଚମତ୍କାର ଦେଖାଯାଏ । ପ୍ରତ୍ୟେକ କଳାକାରଙ୍କ ପଛପଟକୁ ଝାଲର କାନ୍ଧରୁ ଆଣ୍ଠୁ ତଳ ପର୍ଯ୍ୟନ୍ତ ଝୁଲୁଥାଏ । ଏହା ଘୁମୁରାର ପାରମ୍ପାରିକ ପୋଷାକ ଏବଂ ବହୁ କାଳରୁ ଚଳି ଆସୁଛି । ଆଜିକାଲି ପୋଷାକ ଉପରେ ଏକ ରକମ ପ୍ରତିଯୋଗିତା ଆରମ୍ଭ ହୋଇ ଯାଇଛି । ଜନନୟନକୁ ଆକର୍ଷଣ କରିବା ଉଦ୍ଦେଶ୍ୟରେ ଘୁମୁରାଦଳ ଗୁଡ଼ିକ ବହୁ ବ୍ୟୟରେ ଜାକଜମକ ପୋଷାକ ଓ ବେଶଭୂଷା ପାଇଁ ବ୍ୟଗ୍ରତା ପ୍ରକାଶ କରୁଛନ୍ତି । ଯୁଗର ରୁଚି ଅନୁସାରେ ପରିବର୍ତ୍ତନ ଆବଶ୍ୟକ, ଏକଥା ସ୍ୱୀକାର୍ଯ୍ୟ । ମାତ୍ର ଯାହା ପରିବର୍ତ୍ତନ ହେଉନା କାହିଁକି ପୋଷାକ ପ୍ରାଇକ ଉପଯୋଗୀ ହେବା ନିତାନ୍ତ ବାଂଛନୀୟ । ଅନ୍ୟଥା ଏହା ମୂଳ ଘୁମୁରାରୁ ଦୂରେଇ ଯିବ ।

ଘୁମୁରା ନୃତ୍ୟର ଲକ୍ଷ ସମ୍ପୂର୍ଣ୍ଣ ଭିନ୍ନ । ଏଣୁ ଏହାର ନୃତ୍ୟ ଶୈଳୀ ମଧ୍ୟ ସ୍ୱତନ୍ତ୍ର । ଯୁଦ୍ଧ ସମୟରେ ଯୋଦ୍ଧୃବୃନ୍ଦଙ୍କୁ ଉତ୍ତେଜିତ କରିବା ଏହାର ମୁଖ୍ୟ ଉଦ୍ଦେଶ୍ୟ । ଅବସର ସମୟରେ ଯୁଦ୍ଧାଭ୍ୟାସକୁ ଅବ୍ୟାହତ ରଖି ଶରୀରକୁ ବଳିଷ୍ଠ ଓ ସୁଗଠିତ କରି ଯୁଦ୍ଧକ୍ଷମ କରି ରଖିବା ଏହାର ଅନ୍ୟ ଏକ ଉଦ୍ଦେଶ୍ୟ । ସାମୟିକ ମନୋରଂଜନ ସଙ୍ଗେ ସଙ୍ଗେ ପାଇକମାନଙ୍କ

Digitized by srujanika@gmail.com

ପାଇଁ ନିତାନ୍ତ ଆବଶ୍ୟକ ବ୍ୟାୟାମ ଏହି ନୃତ୍ୟ ମାଧ୍ୟମରେ ହୋଇଥାଏ । ଘୁମୁରା ଦଳର ଓଡ଼ିଶୀ, ଗୋଟିପୁଅ ବା ପାଇକର ଅନୁକରଣ ଗ୍ରହଣୀୟ ନୁହେଁ । ଏ ସମ୍ପର୍କରେ ଡକ୍ଟର ମାୟାଧର ମାନସିଂହଙ୍କ ବକ୍ତବ୍ୟଟି ପ୍ରଣିଧାନ ଯୋଗ୍ୟ । "ବିଶୁଦ୍ଧ ନୃତ୍ୟ ହେଉଛି ଆଦିବାସୀମାନଙ୍କର ଏବଂ ଚୈତ୍ର ମାସରେ ଆଚରିତ ଗୋପାଳମାନଙ୍କର ଲଉଡ଼ି ଖେଳ । ଜଗନ୍ନାଥ ମନ୍ଦିରରେ ବ୍ୟବସ୍ଥିତ ଦେବଦାସୀ ନୃତ୍ୟ ଏବର ଓଡ଼ିଶୀ ନୃତ୍ୟ ଏବଂ ଜଟିଳ ଗୋଟିପୁଅ ନୃତ୍ୟର ଆଦ୍ୟ ଉତ୍ସ । (୨୫) ମୋ ମତରେ ଘୁମୁରା ମଧ୍ୟ ଏକ ବିଶୁଦ୍ଧ ନୃତ୍ୟ । ଏହାର ବିଶୁଦ୍ଧତାକୁ ରକ୍ଷା କରିବା ସମସ୍ତ ଘୁମୁରା ପ୍ରେମୀଙ୍କର କର୍ତ୍ତବ୍ୟ ହେବା ଉଚିତ । ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶୀ ନୃତ୍ୟର ବିକାଶ ଘଟିଛି । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ନଟ ନଟୀ ନୃତ୍ୟର ପ୍ରଚଳନ ବ୍ୟତୀତ ଅନ୍ୟାନ୍ୟ ନୃତ୍ୟର ପ୍ରଚଳନ ଥିବାର ପ୍ରମାଣ ଦେଖିବାକୁ ମିଳେ ନାହିଁ । ଏ ସବୁର ପରିବେଷଣସ୍ଥଳ ମନ୍ଦିର କିମ୍ବା ଦରବାର ଥିବାରୁ ବିଭିନ୍ନ ଭଙ୍ଗି ଓ ମୁଦ୍ରା ଦ୍ୱାରା ଭାବ ପ୍ରକାଶ କରି ଜନ ମାନସକୁ ଆକର୍ଷଣ କରିବା ଥିଲା ତା'ର ମୂଳ ଲକ୍ଷ । ଅନ୍ୟ ଏକ ପାଇକ ନାଚ ରୂପରେ ଖ୍ୟାତ ଛଉନାଚ ମଧ୍ୟ ଘୁମୁରାର ବହୁ ପରବର୍ତ୍ତୀ ବୋଲି ମନେହୁଏ । କାରଣ ପୁରାଣ ମାନଙ୍କରେ ଛଉନାଚର ବର୍ଣ୍ଣନା ଦୃଷ୍ଟି ଗୋଚର ହୁଏ ନାହିଁ । ଏଣୁ ଅନ୍ଧାନୁକରଣ ନକରି ଘୁମୁରାର ଆଦିମତା ଓ ମୌଳିକତାକୁ ରକ୍ଷା କରିବାକୁ ପଡ଼ିବ ।

ପ୍ରଶ୍ନରେ ଷଷ୍ଠତାର ଅଭାବରୁ ସର୍ବାପେକ୍ଷା ପୁରାତନ ନୃତ୍ୟକଳା ଘୁମୁରା ଓଡ଼ିଶାର ଅନ୍ୟାନ୍ୟ ନୃତ୍ୟକଳା ତୁଳନାରେ ପ୍ରସିଦ୍ଧ ଲାଭ କରିପାରି ନାହିଁ । ତେବେ ମୁଷ୍ଟିମେୟ ଯେଉଁ କେତୋଟି ଅନୁଷ୍ଠାନ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ଏହାର ପ୍ରତିଷ୍ଠା ପାଇଁ ଉଦ୍ୟମ କରିଛନ୍ତି ସେମାନଙ୍କ ମଧ୍ୟରୁ ଭବାନୀପାଟଣା ମହାବୀର ସାଂସ୍କୃତିକ ଅନୁଷ୍ଠାନ ଏବଂ ଖରିଆରର ଜଗନ୍ନାଥ ସାଂସ୍କୃତିକ ଓ କ୍ରୀଡା ଅନୁଷ୍ଠାନର ନାମ ଉଲ୍ଲେଖ ଯୋଗ୍ୟ । ମହାବୀର ସାଂସ୍କୃତିକ ଅନୁଷ୍ଠାନର ଆନୁକୂଲ୍ୟରେ ୧୯୭୮ ମସିହାରେ ଗୁଜୁରାଟରେ ଅହମଦାବାଦ, ୧୯୭୯ରେ ବମ୍ବେରେ ଅନୁଷ୍ଠିତ ଓଡ଼ିଶା ଉତ୍ସବ, ପୁଣି ସେହି ବର୍ଷ ଆକାଶବାଣୀ ଆନୁକୂଲ୍ୟରେ ମଧ୍ୟ ପ୍ରଦେଶର ସେଣ୍ଟେଗଲ କୋଲମାରନ୍ ଦ୍ୱାରା ଉକ୍ତ ପ୍ରଦେଶର ବିଭିନ୍ନ ସ୍ଥାନରେ ଘୁମୁରା କଳାକାରଗଣ ନୃତ୍ୟ ପ୍ରଦର୍ଶନ କରି ଉଚ୍ଚ ପ୍ରଶଂସିତ ହୋଇ ପାରିଛନ୍ତି । ୧୯୮୨ ଏସିଆଡ ଖେଳର ଉଦ୍ଘାଟନୀ ଉତ୍ସବରେ କଳାହାଣ୍ଡିର ଘୁମୁରା ସ୍ଥାନ ପାଇ ଆକର୍ଷଣୀୟ ହୋଇ ପାରିଥିଲା । ୧୯୮୭ ମସିହାରେ ଜାତୀୟ ସ୍ତରରେ ଦିଲ୍ଲୀରେ ଅନୁଷ୍ଠିତ ସର୍ବଭାରତୀୟ ଲୋକନୃତ୍ୟ ପ୍ରତିଯୋଗିତାରେ ସର୍ବଶ୍ରେଷ୍ଠ ବିବେଚିତ ତିନୋଟି ଦଳରେ ସ୍ଥାନ ପାଇ ସେହି ବର୍ଷ ମସ୍କୋଠାରେ ଅନୁଷ୍ଠିତ ଭାରତ ଉତ୍ସବରେ ମହାବୀର ସାଂସ୍କୃତିକ ଅନୁଷ୍ଠାନର ସଭାପତି ଶ୍ରୀଯୁକ୍ତ ଜୟନ୍ତ କୁମାର ବେହେରଙ୍କ ନେତୃତ୍ୱ

Digitized by srujanika@gmail.com

ଓ ତତ୍ତ୍ୱାବଧାନରେ ଯୋଗଦେଇ ଆନ୍ତର୍ଜାତିକ ଖ୍ୟାତି ଓ ଗୌରବ ପାଇ ପାରିଛି । ସେହିପରି ଖରିଆରର ଘୁମୁରଦଳ ମଧ୍ୟ ଅହମଦାବାଦ, ଗୌହାଟୀ, ହାଇଦ୍ରାବାଦ, ରାଞ୍ଚି ଓ ଦିଲ୍ଲୀରେ ନୃତ୍ୟ ପ୍ରଦର୍ଶନ କରି ଉଚ୍ଚ ପ୍ରଶଂସିତ ହୋଇ ପାରିଛନ୍ତି ।

କେବଳ ଏତିକିରେ ଆମେ ସନ୍ତୁଷ୍ଟ ହେଲେ ଚଳିବ ନାହିଁ । ଘୁମୁରାର ଐତିହ୍ୟ ଉପରେ ବହୁ ଗବେଷଣାର ଆବଶ୍ୟକତା ରହିଛି । ଏହା ଯେ ଅନ୍ୟାନ୍ୟ ନୃତ୍ୟକଳାର ଜନକ ତାହା ଭୁଲି ଯିବାର ନୁହେଁ । ଏହାର ମୌଳିକତାକୁ ରକ୍ଷାକରି ତାକୁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରାଇବାକୁ ପଡ଼ିବ । ଏଥି ନିମନ୍ତେ ଗଭୀର ଶ୍ରମ ଓ ଆନ୍ତରିକ ପ୍ରୟାସ ଦରକାର । ଆମ ଆମ ଭିତରେ ଥିବା ସମସ୍ତ ସଂକୀର୍ଣ୍ଣତାକୁ ପରିହାର କରି ସମସ୍ତ କନ୍ଦଳକୁ ଭୁଲିଯାଇ ଘୁମୁରାର ଉନ୍ନତି ପାଇଁ ଲାଗି ପଡ଼ିବା ପ୍ରୟୋଜନ । କାରଣ ଘୁମୁରା ସହିତ କଳାହାଣ୍ଡିର କଳା, ସଂସ୍କୃତି, ସଭ୍ୟତା ଓ ଐତିହ୍ୟ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଘୁମୁରାର ଜୟହେଉ, କଳାହାଣ୍ଡିର କଳା ଓ ସଂସ୍କୃତିର ଜୟହେଉ, କଳାହାଣ୍ଡିର ଜୟହେଉ ।

ଶିକ୍ଷକ
ସରକାରୀ ମଧ୍ୟ ଇଂରାଜୀ ବିଦ୍ୟାଳୟ
ମ. ରାମପୁର–୭୬୬୧୦୨

Digitized by srujanika@gmail.com

# ସହାୟକ ଗ୍ରନ୍ଥ ସୂଚୀ

1- GHUMRA DANCE — Jitamitra Prasad Singh Deo, President Archaeo Logical Committee, Khariar, Published by - Satrujit Singh Deo, Manager Jaganath Culturs and Sport Assosiation Khariar, Kalahandi.

2- କଳାହାଣ୍ଡି ଗଣବାଦ୍ୟ – ଶ୍ରୀଯୁକ୍ତ ପର୍ଶୁରାମ ମୁଣ୍ଡ
ପଞ୍ଚପାଖୁଡା, ମାର୍ଚ୍ଚ–ଅପ୍ରେଲ ୧୯୮୮ ପୃଷ୍ଠା–୧୩

3- ଚଣ୍ଡୀ ପୁରାଣ – ସାରଳା ଦାସ – ପୃଷ୍ଠା–୪୫

4- ଚଣ୍ଡୀ ପୁରାଣ – ସାରଳା ଦାସ – ପୃଷ୍ଠା-୯୬
ପ୍ରକାଶକ ଦାଶରଥି ଦାସ – ୧୯୫୭

5- ଆକାଶବାଣୀ ଜୟପୁରରୁ ତା ୩ । ୧ । ୮୪ରେ ପ୍ରସାରିତ ।
ଆଲୋଚକ – ଶ୍ରୀଯୁକ୍ତ ଯୋଗେନ୍ଦ୍ର ସିଂହଦେଓ

6- ଏସିଆଡ୍‌ରେ କଳାହାଣ୍ଡିର ବୀରବାଦ୍ୟ ଘୁମୁରା ଶ୍ରୀଯୁକ୍ତ ଉମା ଶଙ୍କର କର
ଗିରିଝର ନଭେମ୍ବର ୧୯୮୨ – ପୃଷ୍ଠା-୧

7- GHUMRA DANCE — Jitamitra Prasad Singh Deo.

8- ଚଣ୍ଡୀ ପୁରାଣ – ସାରଳା ଦାସ – ପୃଷ୍ଠା–୧୦୪

9- ଆକାଶବାଣୀ ଜୟପୁର ତା ୩ । ୧ । ୮୪ରେ ପ୍ରସାରିତ ।
ଆଲୋଚକ - ଶ୍ରୀଯୁକ୍ତ ଯୋଗେନ୍ଦ୍ର ସିଂହଦେଓ

10- ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ

11- ଗୁଡହଣ୍ଡି ଓ ଯୋଗୀମଠ ପାହାଡର ପାଷାଣ ଗାତରେ ପ୍ରାଗୈତିହାସିକ ଚିହ୍ନ – ଶ୍ରୀଯୁକ୍ତ ଗଣେଶ ପ୍ରସାଦ ପରିଡା ପ୍ରଜାତନ୍ତ୍ର ସାପ୍ତାହିକୀ ତା ୧୨–୧୮ ଜୁଲାଇ ୧୯୮୭, ପୃଷ୍ଠା–୧୧

12- ଉତ୍କଳ ଇତିହାସ – ଶ୍ରୀଯୁକ୍ତ କୃପାସିନ୍ଧୁ ମିଶ୍ର

13- GHUMRA DANCE — Jitamitra Prasad Singh Deo.

14- ସାରଳା ମହାଭାରତ – ମଧ୍ୟ ପର୍ବ – ପୃଷ୍ଠା–୯୦

Digitized by srujanika@gmail.com

15- ସାରଳା ମହାଭାରତ – ମଧ୍ୟ ପର୍ବ – ପୃଷ୍ଠା–୩୪୩

16- ସାରଳା ମହାଭାରତ – ମଧ୍ୟ ପର୍ବ – ପୃଷ୍ଠା–୩୪୩

17- ସାରଳା ମହାଭାରତ – ମଧ୍ୟ ପର୍ବ – ପୃଷ୍ଠା–୩୧୪
ପ୍ରକାଶକ – ଅଜୟ କୁମାର ଘୋଷ
ପ୍ରକାଶନ କାଳ – ସ୍ନ ୧୯୨୮

18- ଚଣ୍ଡୀ ପୁରାଣ – ✓ ସାରଳା ଦାସ – ପୃଷ୍ଠା–୧୦୪

19- ସାରଳା ମହାଭାରତ – ଆଦ୍ୟ ପର୍ବ – ପୃଷ୍ଠା–୨୨୪
ପ୍ରକାଶକ – ରାଧାରମଣ ପୁସ୍ତକାଳୟ – ୧୯୬୯

20- ଦାଣ୍ଡି ରାମାୟଣ – ✓ ବଳରାମ ଦାସ – ଲଙ୍କାକାଣ୍ଡ – ପୃଷ୍ଠା–୪୧

21- ସାରଳା ମହାଭାରତ – ବିରାଟ ପର୍ବ – ପୃଷ୍ଠା–୧୦୩
ରାଧାରମଣ ପୁସ୍ତକାଳୟ – ୧୯୬୯

22- ଉତ୍କଳ ଇତିହାସ – ଶ୍ରୀଯୁକ୍ତ କୃପାସିନ୍ଧୁ ମିଶ୍ର

23- ପୂର୍ଣ୍ଣଚନ୍ଦ୍ର ଭାଷାକୋଷ – ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜ

24- ଚଣ୍ଡୀ ପୁରାଣ – ✓ ସାରଳା ଦାସ – ପୃଷ୍ଠା–୧୨୩

25- ଓଡ଼ିଆ ସାହିତ୍ୟର ଇତିହାସ – ଡକ୍ଟର ମାୟାଧର ମାନସିଂ



Digitized by srujanika@gmail.com



# ॥ କଳାହାଣ୍ଡି ଜିଲ୍ଲାର ଐତିହାସିକ ପୃଷ୍ଠଭୂମି ଓ ତହିଁରେ ଆଦିବାସୀ କନ୍ଧ ଜାତିର ଭୂମିକା ॥

–ଅଧ୍ୟାପକ ଦୋଲ ଗୋବିନ୍ଦ ବଶୀ

ଦେଶ୍ରୀକ'ର ଚିରସାଥୀ ରୂପେ ସଂସ୍କୃତି ନିଜକୁ ବିଶ୍ୱବିଦିତ କରାଇ ପାରିଥିବା ଓଡ଼ିଶା ମାନଚିତ୍ରର କଳାହାଣ୍ଡି ଜିଲ୍ଲାର ବିଗତ ଐତିହାସିକ ଯୁଗ ମାନଙ୍କରେ ଗୌରବୋଜ୍ଜ୍ୱଳ ପରଂପରାର ଲେଖ ଯେ ରହିଥିଲା,– ଏହା ଅବଶ୍ୟ ସ୍ୱୀକୃତ । ଏହି ଜିଲ୍ଲାର ଇତିହାସ ଓ ସାଂସ୍କୃତିକ ଐତିହ୍ୟ ଉପରେ ସତର୍କ ଦୃଷ୍ଟିପାତ କରି ଗବେଷଣା ଆରମ୍ଭ କଲେ ଏହାର ଫଳ ସ୍ୱରୂପ ଆଦିବାସୀ ସଂସ୍କୃତିର ଏକ ଅବହେଳିତ ଅଧ୍ୟାୟ ଉପରେ ଶୃଙ୍ଖଳିତ ଇତିହାସଟିଏ ଗଣିତ ହୋଇ ପାରିବ । ଏହି ଜିଲ୍ଲାର ରାଜତାନ୍ତ୍ରିକ ପ୍ରଥା କେତୋଟିରେ ପ୍ରତିଫଳିତ ଆଦିବାସୀ ସମାଜର ପ୍ରଭାବ, ଆଦିବାସୀ ମାନଙ୍କର ଆଦିସ୍ଥିତି ଓ ସୁସ୍ଥ ସଦ୍ଭ ଭିତ୍ତିକୁ ଉତ୍ତମ ଭାବେ ପ୍ରମାଣିତ କରିଥାଏ । (୧) ସର୍ବ ଭାରତୀୟ ସ୍ତରରେ କଳାହାଣ୍ଡି ପ୍ରାଚୀନ ଆଲେଖ୍ୟର ରତ୍ନାକର ଭାବରେ ଏକ ଉଲ୍ଲେଖନୀୟ ଜନପଦ । ଏହାର ମାଣରୁଡ଼ା ଓ ଅସୁରଗଡ଼ ଦୁର୍ଗ ଆଦିର ପ୍ରତ୍ନତାତ୍ତ୍ୱିକ ସମ୍ପଦ ଯେପରି ଐତିହାସିକ ମାନଙ୍କ ପକ୍ଷରେ ଧ୍ୟେୟ, ଘୁମୁରା ଓ ଢ଼ାପ ଆଦି ନୃତ୍ୟ-ସଂସ୍କୃତି ଯେପରି ଲୋକ ସଂସ୍କୃତିର ପ୍ରେୟ, କନ୍ଧ ଓ ଆହୁରି ଅନେକ ଆଦିବାସୀ ସମାଜର ଜୀବନଧାରା ଠିକ୍ ସେହିପରି ସମାଜ ଓ ନୃତତ୍ତ୍ୱବିଦ ମାନଙ୍କର ଶ୍ରେୟ ଅଟେ ।

ସଦର ମହକୁମା ଭବାନୀପାଟଣାକୁ ମିଶାଇ ୩ଟି ସବ୍‌ଡ଼ିଭିଜନ ଓ ୧୬ଟି ଗୋଷ୍ଠୀ ଉନ୍ନୟନ ବିଭାଗକୁ ନେଇ ଓଡ଼ିଶାର ସାମ୍ପ୍ରତିକ କଳାହାଣ୍ଡି ଜିଲ୍ଲା ଏହି ରାଜ୍ୟର ଦକ୍ଷିଣ ପଶ୍ଚିମ ଅଞ୍ଚଳରେ ୧୯.୩°.ଓ ୨୧.୫° ମଧ୍ୟରେ ଉତ୍ତର ଅକ୍ଷାଂଶରେ ଏବଂ ୮୨.୨୦° ଓ ୮୩-୪୭° ପୂର୍ବ ଦ୍ରାଘିମାରେ ଅବସ୍ଥିତ । (୨) ଏହାର ଉତ୍ତରରେ ବଲାଙ୍ଗିର ଓ ସମ୍ବଲପୁର ଜିଲ୍ଲା ତଥା ଆଂଶିକ ରାୟପୁର, ଦକ୍ଷିଣରେ କୋରାପୁଟ, ପଶ୍ଚିମରେ କୋରାପୁଟ ଓ ରାୟପୁର, ପୂର୍ବଦିଗରେ କୋରାପୁଟ ଓ ବଉଦ କନ୍ଧମାଳ ଆଦିର ପଡ଼ୋଶୀ ପରିବେଷ୍ଟନୀ ଥିବାର ଜଣାପଡ଼େ । (୩) କ୍ଷେତ୍ରଫଳ ଦୃଷ୍ଟି କୋଣରୁ ଏହା ୧୧୮୩୫ ବର୍ଗ କିଲୋମିଟର ପର୍ଯ୍ୟନ୍ତ ପରିବ୍ୟାପ୍ତ । ଓ ଆକାରରେ ଓଡ଼ିଶାର ଚତୁର୍ଥ ବୃହତ୍ତର ଜିଲ୍ଲା ।

Digitized by srujanika@gmail.com

କଳାହାଣ୍ଡିର ପ୍ରାଚୀନତ୍ୱ ଅଦ୍ୟାବଧି ଓଡ଼ିଶା ଇତିହାସର ଏକ ବିବାଦୀୟ ସମସ୍ୟା ହୋଇ ରହିଛି । କେତେକ ଐତିହାସିକଙ୍କ ମତରେ ପୂର୍ବ କାଳରେ ଏହା କରଣ୍ଡ ନାମରେ ପରିଚିତ ଥିଲା । ୧୮୫୬ ଖ୍ରୀଷ୍ଟାବ୍ଦରେ ରାୟପୁରରେ ଡେପୁଟି କମିସନର ଥିବା ଇଲିଏଟ୍ ସାହେବ ସ୍ୱୟଂ ଏହି ମତର ପକ୍ଷପାତି । (୪) ନାଗପୁର, କୋରାପୁଟ ଓ ବସ୍ତର ସୀମାନ୍ତରେ ଥିବା ଅନେକ ଗ୍ରାମ୍ୟ-ଭାଷାର ଧ୍ୱନିଗତ ସାଦୃଶ୍ୟ ଉପରେ ନିର୍ଭର କରି ଇଲିୟଟ ସାହେବ ସ୍ୱପ୍ରଦତ୍ତ ବିବରଣୀରେ ତାଙ୍କ ମତକୁ ପୁଷ୍ଟ କରିଛନ୍ତି । ମଦନପୁର ରାମପୁରର କୁମାର ସାହେବ ତାଙ୍କର ଏକ ସନ୍ଦର୍ଭରେ ଏ ସମ୍ପର୍କରେ ମତଦେଇ ଲେଖିଛନ୍ତି, କଳାହାଣ୍ଡି, ବସ୍ତର ଏବଂ କୋରାପୁଟ ଘନ ଜଙ୍ଗଲ ଏବଂ ପାର୍ବତୀୟ ଅଞ୍ଚଳକୁ ମହାକାନ୍ତାର କୁହାଯାଉଥିଲା । ବ୍ୟାଘ୍ରରାଜାଙ୍କ ରାଜତ୍ୱ ସମୟରେ କାରୁଣ୍ଡ ତଥା କଳାହାଣ୍ଡିର ନାମଥିଲା । କାନ୍ତାର ।" (୫) ନିଜ ମାତୃଭୂମିକୁ ଏହାର ଗୌରବ ମଣ୍ଡିତ ପ୍ରାଚୀନ ନାମରେ ସମ୍ବୋଧନ କରିବା ଅନ୍ୟଏକ କବିଧର୍ମ ଓ କବିକର୍ମ ଭାବରେ ଗୃହୀତ । ଏହି ନ୍ୟାୟରେ କଳାହାଣ୍ଡିର ଦେଶପ୍ରେମୀ କବିମାନେ ବର୍ତ୍ତମାନ ଯୁଗ ପର୍ଯ୍ୟନ୍ତ ମଧ୍ୟ ଏହାକୁ କରୁଣ୍ଡ ନାମରେ ଅଭିହିତ କରିଥିବାର ଦେଖାଯାଏ । କବି ଶ୍ରୀ ଭକ୍ତରାମ ଦାଶ ଶର୍ମାଙ୍କ ରଚନାରେ ଅଛି,—

" ପ୍ରକୃତି ପ୍ରଦତ୍ତ ସୌନ୍ଦର୍ଯ୍ୟ ଭୂଷଣେ
ପ୍ରକାଶି ଲାବଣ୍ୟ ରାଶି,
ଉତ୍କଳ-ପ୍ରସଙ୍ଗ କରେ ସୁଶୋଭିତ,
କାରୁଣ୍ଡ ଅବନୀ-ରାଣୀ ।"

ଏହାର ଟୀକାରେ ସେ କାରୁଣ୍ଡ'କୁ କଳାହାଣ୍ଡିର ଅନ୍ୟନାମ ବୋଲି ଉଲ୍ଲେଖ କରିଛନ୍ତି ।(୬) କେବଳ ଏତିକି ନୁହେଁ ଏହି ପୁସ୍ତକର ଉତ୍ସର୍ଗପତ୍ରରେ ମଧ୍ୟ ସେ ନିଖିଳ-ସଦ୍‌ଗୁଣ-ନିକେତନ ପ୍ରକୃତି ରଞ୍ଜନ ନାଗବଂଶା-ବତଂସ ପବିତ୍ର କୀର୍ତ୍ତି ଶ୍ରୀଳ ଶ୍ରୀଯୁକ୍ତ କାରୁଣ୍ଡ ଧୂପ ମହାରାଜାଶ୍ରୀ ବ୍ରଜମୋହନ ଦେବଙ୍କୁ ହିଁ ସବିନୟ ନିବେଦନ କରିଛନ୍ତି । (୭) ଏ ଅଞ୍ଚଳର ଲୋକ ସାହିତ୍ୟରେ ମଧ୍ୟ ଏହି ପରଂପରାର ପ୍ରଭାବ ସୁସ୍ପଷ୍ଟ, ଆଦିବାସୀ କନ୍ଧ ମାନଙ୍କର 'ଢ଼ପଗୀତ' ରେ ରହିଛି,—

"କନେ କରଣ୍ଡ କନେକନ୍ଦ,
କେଡେ ସୁଆଦ କଲସୁର ମନ୍ଦ,
ସଇପ ନିଶାଣ ଚମ ଚିମଟା
କରେକଣ୍ଡ ରଜା କନ୍ଧର ବେଟା
କଲେ ଓଧର କାର୍‌ରୁକିଆ
ଖୁଦ ଭଜିଖିଆ ଢ଼ାଗୁଆ କନ୍ଧକେ କେବେ ଢ଼ାପି ନାଗବେସିଆ । (୮)

ଏହି ପଦଟିରେ ଐତିହାସିକ କନ୍ଧ ଜାତିର ଗୌରବମୟ ଇତିହାସର ବହୁ ରହସ୍ୟ ରହିଛି,

Digitized by srujanika@gmail.com

ଏହାର ଅର୍ଥ ଅନୁସରେ ଏହା ସ୍ପଷ୍ଟ ବୁଝା ପଡ଼ିବ, କରଣ୍ଡ ବା କଳାହାଣ୍ଡିର ଆଦ୍ୟାକ୍ଷର ହେଉଛି 'କ' ଠିକ୍ ସେହିପରି ମଧ୍ୟ କନ୍ଧ । ତେଣୁ କରଣ୍ଡ ହିଁ କନ୍ଧ ଓ କନ୍ଧ ହିଁ କରଣ୍ଡ । ତାତ୍ପର୍ଯ୍ୟ ହେଉଛି କଳାହାଣ୍ଡି ବା କରଣ୍ଡ ହେଉଛି ମୂଳତଃ ଓ ପୂର୍ଣ୍ଣତଃ କନ୍ଧ ଆଧିପତ୍ୟର ଭୂମି । ସେହି କନ୍ଧର ଜୀବନଚର୍ଯ୍ୟା ମଧ୍ୟରେ ମନଫୁର୍ତ୍ତି ରସାୟନ ମଦ ଓ ଯୁଦ୍ଧବାଦ୍ୟ ନିଶାଣ ମୁଖ୍ୟ ଅଟେ, ସ୍ୱୟଂ କରଣ୍ଡ ବା କରକଣ୍ଡ ରଜା କନ୍ଧମାନଙ୍କର ପୁତ୍ର (କନ୍ଧମାନେ ହିଁ ରଜାଙ୍କର ତତ୍ତ୍ୱାବଧାରକ) ରଜାଙ୍କର ଅଭିଷେକ ସମୟରେ କନ୍ଧ ମାନଙ୍କର କାର୍-ଲୁକିଆ ଉପବର୍ଷର ମୁଖିଆ ତାଙ୍କୁ କୋଳରେ ବସାଇ ଥାନ୍ତି । (୯)

ପରବର୍ତ୍ତୀ ସମୟରେ ନବାଗତ ହୋଇ ଆସିଥିବା ଅନ୍ୟାନ୍ୟ ଜାତି ମାନଙ୍କର ଅତ୍ୟାଗ୍ରରୀ ଓ ଶୋଷକ ମନୋବୃତ୍ତି ପ୍ରତି ତୀବ୍ର ଚେତାବନୀ ଶୁଣାଇ ଶେଷ ପାଦରେ କନ୍ଧ ତେଣୁ କହୁଛି – ସ ବଧ ନ ! ଏ ଜାତିର ଅକ୍ଷୟ ମୁହୂର୍ତ୍ତରେ ସେ କେବଳ ଖୁବ ଭତ ଓ ଭଜି-ଶାଗ ଖାଇ ଦରିଦ୍ର ଅଷ୍ଟାରେ ଢ଼ାପ ନାଚି ନାଚି ବୁଲୁଛି ବୋଲି, ଏହାକୁ ଆୟତ୍ତ ବା ଅବନମିତ କରିଦେବାର ଦୁଃସାହସ କରନା ।" ଅନ୍ୟତ୍ର ହଳିଆ ଗୀତରେ ମଧ୍ୟ ରହିଛି,

ଏ................. ଣିକ ପରବତେ ରେ ଶାହାଳ ପିକେ ଗଜା,
ଲଖେ ରଜା ଲଖେ ପରେ ହୋ ପରଜା............
ପରଜା ହୋ...... କରଣ୍ଡ ଦେଶ ରଜା ହୋ......(୧୦)

ପ୍ରଚଳିତ ଏକ ଲୋକ ବିଶ୍ୱାସ ଅନୁଯାୟୀ 'ରଜପୁତନାରୁ' 'କାଳ ହମୀର' ନାମରେ ଜଣେ କ୍ଷତ୍ରୀୟ ଯୁବକ ପୂର୍ବେ 'କଳାହାଣ୍ଡି' କୁ ଆସି ରାଜ୍ୟ ସ୍ଥାପନ କରିଥିଲେ । ଏହି କିମ୍ବଦନ୍ତୀ ଅନୁସାରେ କାଳ ହମୀର, ବା କଳା ହମୀର ଶବ୍ଦହିଁ ପରବର୍ତ୍ତୀ କାଳରେ କଳାହାଣ୍ଡି ଭାବରେ ରୂପାନ୍ତରୀତ ହୋଇଛି ବୋଲି କେତେକ ସମାଲୋଚକ କହିଥାନ୍ତି । (୧୧) ଆଉ କେତେକ ସମାଲୋଚକ ଙ୍କ ମତରେ କଳାହାଣ୍ଡିର ପ୍ରାଚୀନ ନାମ ହେଉଛି "କମଳମଣ୍ଡଳ" । ଏହି କମଳ ମଣ୍ଡଳ ହିଁ ପରବର୍ତ୍ତୀ ଯୁଗରେ କଳାହାଣ୍ଡି ନାମରେ ପରିଣତ ହୋଇଥିବାର ଅନୁମେୟ ବୋଲି ଏହି ଗୋଷ୍ଠୀର ସମାଲୋଚକ ମାନେ ମତ-ଦେଇଥାନ୍ତି ।।୧୨।। ତେଣୁ କଳାହାଣ୍ଡି ଜିଲ୍ଲା ନାମରେ ପରିଚିହ୍ନିତ ହେଉଥିବା ପ୍ରାକୃତିକ ଅଞ୍ଚଳ ଭାରତର ପ୍ରାଚୀନ ଇତିହାସରେ ଏକ ମନ୍ତବ୍ୟ ପୂର୍ଣ୍ଣ ସ୍ଥାନ ଅଧିକାର କରୁଥିବାର ପ୍ରମାଣ ସ୍ପଷ୍ଟ । ମହାବ୍ରଗ୍‌ଗର କରଣ୍ଡଜାଲ ସୁତ୍ର ରେ କରଣ୍ଡ ଅଞ୍ଚଳ ଏକ ପ୍ରାଚୀନ ବୌଦ୍ଧ ଭୂମି ଥିବାର ଜଣାପଡେ । ଆଗ୍ରଯ୍ୟା ତିପ୍ପ୍ପିକଳ ଏହି ଅଞ୍ଚଳରେ ବୌଦ୍ଧଧର୍ମକୁ ଲୋକପ୍ରିୟ କରେଇ ପାରିଥିଲେ ବୋଲି ମହାବଗ୍‌ଗରୁ ପ୍ରମାଣ ମିଳିଛି ।୧୩।। 'ସେର ବଣିଜ' ଜାତକ ତେଲବାହା ନଦୀ କୂଳରେ ଅଗଣିତ ବ୍ୟବସାୟ ପେଣ୍ଠ ଗଢି ଉଠିଥିବା ପ୍ରମାଣ ଦେଇଥାଏ ।।୧୪।

Digitized by srujanika@gmail.com

ଏହି ତେଲବାହା ନଦୀକୁ ସମ୍ଭବତଃ କଳାହାଣ୍ଡି ପାଟଣାର ସୀମାରେଖାଟାଣି ପ୍ରବାହିତ ହୋଇଯାଉଥିବା ସଂପ୍ରତିକ 'ତେଲନଦୀ' ସହିତ ଚିହ୍ନିତ କରଯାଇପାରେ । ବୌଦ୍ଧଧର୍ମର ଶାସ୍ତ୍ର ଗୁଡ଼ିକୁ ବାଦଦେଲେ ଏହି ଐତିହାସିକ ବର୍ଣ୍ଣନା ଧର୍ମସୂତ୍ର ଗୁଡ଼ିକରେ ମଧ୍ୟ ରହିଛି ।୧୫। ଧର୍ମସୂତ୍ର ଗୁଡିକରେ ଏହି ତେଲନଦୀ ବିଶେଷତଃ ' ତୈଳନଦୀ" ନାମରେ ନାମିତ ହୋଇଛି ।୧୬। ବୈଦିକ ଧର୍ମସୂତ୍ର ଯୁଗରେ ଏହି କଥିତ ଅଞ୍ଚଳରେ "ତୈଳପ" ନାମରେ ଜଣେ ରାଜା ରାଜତି କରୁଥିବାର ଜଣାପଡ଼େ ।୧୭। ତାଙ୍କରି ନାମାନୁସାରେ ଏଇନଦୀ ତେଲବାହା ନଦୀ ତୈଳ ନଦୀ ବା ତେଲ ନଦୀ ନାମରେ ପରିଚିତ ଥିବାର ଜଣାପଡ଼େ ।୧୮। 'ତୈଳପ' ଏକ ଆଦିବାସୀ ମଣ୍ଡଳର ରାଜାଥିଲେ ବୋଲି ବ୍ରହ୍ମ ବୈବର୍ତ୍ତ ପୁରାଣରୁ ଜଣାପଡ଼ିଥାଏ ।୧୯। ପାଣିନୀଙ୍କର ଅଷ୍ଟାଧ୍ୟାୟୀ ରଚନାକାଳରେ କଳାହାଣ୍ଡିର କେତେଂକାଂଶ ଓ ବଲାଙ୍ଗୀର ର କେତେକାଂଶକୁନେଇ 'ତୈତଳିକ' ଜନପଦ ନାମରେ କଳିଙ୍ଗର ପଶ୍ଚିମ ପାର୍ଶ୍ୱରେ ଏକ ସାମ୍ରାଜ୍ୟ ଗଢ଼ିଉଠି ବର ନିର୍ଭରଯୋଗ୍ୟ ପ୍ରମାଣ ମିଳୁଛି ।୨୦। ପାଣିନୀଙ୍କ ମତ ନୁସାରେ ଏହି ଅଞ୍ଚଳରେ କାଦ୍ରୁ ବ୍ୟବସାୟ ବେଶି ପରିମାଣରେ ହେଉଥିଲା । ଏହି 'କାଦ୍ରୁ'ର ଭିନ୍ନ ଭିନ୍ନ ଅର୍ଥ ଭାବରେ ଐତିହାସିକ ମାନେ ଘୋଡ଼ା ତୁଳ୍ୟ ଜାତୀୟ କୌଣସି ପଦାର୍ଥ, ଇସବ ବର୍ଣ୍ଣଚବସ୍ତୁ ଓ ଗଣ୍ଡାର ହାଡ କୁ ଗ୍ରହଣ କରିଛନ୍ତି । ଯେତେଦୂର ସମ୍ଭବ ଏହି ଅଞ୍ଚଳରୁ ଗଣ୍ଡାର ହାଡହିଁ ବିଦେଶକୁ ରପ୍ତାନି କରଯାଉଥିଲା କାରଣ ଏହି ଅଞ୍ଚଳ ସହ ସଂସୃତିକ ସଂପର୍କ ରକ୍ଷା କରି ଆସିଥିବା ସୋନପୁର ଅଞ୍ଚଳରୁ ପ୍ରାପ୍ତ ପତ୍ନତାତ୍ତ୍ୱିକ ଓ ଐତିକହାସିକ ପ୍ରମାଣରୁ ଏହା ସୁସ୍ପଷ୍ଟ ହେଉଛି ।୨୧। ଯେହେତୁ ତୈତଳିକ ତେଲବାହା, ତୈଳପ ଆଦି ଶବ୍ଦ ଗୁଡ଼ିକରେ ଧ୍ୱନିଗତ ସାଦୃଶ୍ୟ ରହିଛି ତେଣୁ ଏହି ତୈଳପ ରାଜାଙ୍କର ଗୌରବୋଜ୍ଜଳ ପରଂପରରୁହିଁ ଏକ ବୃହତ୍ତର ତୈତଳିକ ରାଜ୍ୟର ସୃଷ୍ଟି ହୋଇ ଥିବାର ସମ୍ଭାବନାକୁ ଯୁକ୍ତିଯୁକ୍ତ ଭାବରେ ଗ୍ରହଣ କରଯାଇ ପାରେ । ଏହି ପ୍ରାଚୀନ ତୈତଳିକ ଜନପଦ ମଧ୍ୟ ଏକ ସମୃଦ୍ଧ ବ୍ୟବସାୟ କେନ୍ଦ୍ରଥିଲା ବୋଲି ପାଣିନୀ ସ୍ପଷ୍ଟ ଭାବରେ ସୂଚନା ଦେଇଛନ୍ତି ।୨୨।

ଓଡ଼ିଶାର ଆଦିବାସୀ ସଂସ୍କୃତି ଓ ଜୀବନଧାରା ଉପରେ ସଫଳ ଗବେଷଣାକରିଥିବା ପାଶ୍ଚାତ୍ୟ ପଣ୍ଡିତ ଭେରିଅର ଏଲ୍‌ଓ୍ୱିନ ଙ୍କର ଟ୍ରାଇବାଲି ମିଥ୍ ଅଫ ଓଡ଼ିଶା ପୁସ୍ତକରେ ପ୍ରଦତ୍ତ ଆଦିବାସୀ ଲୋକକଥା ।୨୩। ଗୁଡ଼ିକରୁ ଜଣାପଡ଼େ ଯେ, ପ୍ରାକ ଐତିହାସିକ ଯୁଗରେ ଆଦିବାସୀମାନେହିଁ ପୃଥିବୀର ଆଦିମାନବ ଭାବରେ ସୃଷ୍ଟିହୋଇଥିଲେ ଓ ପ୍ରସ୍ତରଯୁଗୀୟ ଗୁମ୍ଫା ଜୀବନ ହିଁ ଏହାଙ୍କର ଜୀବନଧାରାଥିଲା । ବିଶେଷ ଆଶ୍ଚର୍ଯ୍ୟର ବିଷୟ ଯେ କଳାହାଣ୍ଡି ଜିଲ୍ଲାରୁ ହିଁ ଦିନେ ଏହି ଆଦି ମାନବ ସଭ୍ୟତାର ସୂତ୍ରପାତ ହୋଇଥିବାର ପ୍ରମାଣ ଅତରଳରେ ମନୁଷ୍ୟ ସଭ୍ୟତାର ସୁଦୀର୍ଘ ପ୍ରାକ୍ ଐତିହାସିକ ଯୁଗର ଇତିହାସ

Digitized by srujanika@gmail.com

ମଧ୍ୟ ମିଳୁଛି, ଏହାର ଭୁରିଭୁରି ପ୍ରମାଣ ଦେବାପାଇ ଏବେ ମଧ୍ୟ ଗୁଡହାଣ୍ଡି ପର୍ବତମାଳା ଓ ମାଗଗୁଡା ଉପତ୍ୟକା ଗବେଷକ ମାନଙ୍କୁ ସାଦର ସ୍ୱାଗତ କରୁଛି । (୨୪) ଏଥିରୁ ମିଳିଥିବା ପ୍ରାଚୀନ ପ୍ରସ୍ତରର ହାତ ତିଆରି ସହ ପର୍ବତ ଗାତ୍ରସ୍ଥ ପ୍ରାକ୍-ଐତିହାସିକ ଗୁମ୍ଫାଚିତ୍ରରୁ ଆଦିମାନବର ଶୀକାର ଓ ଖାଦ୍ୟ ଆହରଣ କୌଶଳ ସାଙ୍ଗକୁ ତା'ର ଜୀବନ ଯାତ୍ରାର ପ୍ରଣାଳୀ ସମ୍ପର୍କରେ ଏକ ପ୍ରାଞ୍ଜଳ ଧାରଣା ଜନ୍ମିଥାଏ । ସୁନାବେଢ଼ା ମାଳଭୂମିର ଉତ୍ତରକୋଣରେ ଉତ୍ତର ଦକ୍ଷିଣ ଦିଗ ହୋଇଥିବା ଏହି ଜିଲ୍ଲାର ନୂଆପଡା ସବ୍‌ଡ଼ିଭିଜନ ଅନ୍ତର୍ଗତ ଇଂରଜୀ ଏଲ୍ ଆକୃତିର ଏହି ପ୍ରସିଦ୍ଧ ମାରଗୁଡା ଉପତ୍ୟକାର ଯଥାକ୍ରମେ ପ୍ରସ୍ତରଯୁଗ-ସିନ୍ଧୁସଭ୍ୟତା-ଶରଭପୁରୀୟ ରାଜବଂଶ-ସୋମବଂଶୀ-କାଳଚୁରୀ-ଛିନ୍ଦକନାଗ ଓ ଚୌହାଣ ରାଜବଂଶ ସହ ସମ୍ପର୍କ ରହିଛି । (୨୫ ମାରଗୁଡା ଉପତ୍ୟକାର ଗିରିବନ୍ଧ । ଝରଣା ଉପଚେଥିବା 'ଲଖପୋଲ'ରୁ ଏହି ଉପତ୍ୟକାର ପ୍ରସ୍ତର ଯୁଗୀୟ ଅଧିବାସୀମାନଙ୍କୁ ଉନ୍ନତ ମାନର ଅଠା ବ୍ୟବହାର ଜଣାଥିଲା ବୋଲି ଜଣା ପଡ଼ିଥାଏ । ଠିକ୍ ଏହି ପରି ଅଠାକାର୍ଯ୍ୟମାନ ଆଫ୍ରିକାରେ ମଧ୍ୟ ଆବିଷ୍କାର କରାଯାଇଛି । ତେଣୁ ଏମାନେ ପ୍ରସ୍ତର-ଯୁଗୀୟ ଏକ ପ୍ରକାର ପ୍ରାଗ୍-ଐତିହାସିକ କଳା ଏଥିରେ ସନ୍ଦେହ ନାହିଁ । (୨୬) ନିସନ୍ଦେହ ଭାବରେ କୁହାଯାଇ ପାରେ ଯେ, ସର୍ବାଶ୍ମଯୁଗରେ ଆବିଷ୍କୃତ ହେଉଥିବା ଏପ୍ରକାର ଆଦି-ମାନବ' ସଂସ୍କୃତିହିଁ ଆଜିର ଆଦିବାସୀ ସଂସ୍କୃତିର ପୂର୍ବଜ । ଏହି ଉପତ୍ୟକାକୁ ସିନ୍ଧୁସଭ୍ୟତା ସହ ସଂଯୋଗ କରିବାକୁ ସମର୍ଥ ହୋଇପାରି ଥିବା ମୂଲ୍ୟବାନ ପ୍ରନ୍ ସମ୍ପଦଟି ହେଉଛି ୨୩ ସେ:ମି: ପରିମିତ ଏକ ପ୍ରସ୍ତର ଯୋନି । (୨୭) କଳାହାଣ୍ଡି ଜିଲ୍ଲାର ସାଂପ୍ରତିକ ଅସ୍ତୁରଗଡ ଜୁନାଗଡ ଓ ଅନ୍ୟାନ୍ୟ ଅଞ୍ଚଳରୁ ଅନେକ ପ୍ରାଚୀନ ମୁଦ୍ରାର ସନ୍ଧାନ ମିଳିଅଛି । ଏହି ମୁଦ୍ରା ଗୁଡ଼ିକ ପ୍ରାକ୍ ମୌର୍ଯ୍ୟ କାଳର ନିଦର୍ଶନ ବୋଲି ଅନେକ ଐତିହାସିକ ମତ ଦେଇଛନ୍ତି । (୨୮ ଯଦି ଏମାନଙ୍କର ମତ ଗ୍ରହଣ ଯୋଗ୍ୟ ହୁଏ ତେବେ, ତତ୍କାଳୀନ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ କଳାହାଣ୍ଡି ଯେ, ନିର୍ବିବାଦରେ ଏକ ଆଦିବାସୀ ନିୟନ୍ତ୍ରିତ ବ୍ୟବସାୟ କେନ୍ଦ୍ରଥିଲା ଏହା ମୁଖ୍ୟତଃ ଗ୍ରହଣ କରିବାକୁ ହେବ । ଅଶୋକଙ୍କର ଶୀଳାନୁ-ଶାସନ ଗୁଡ଼ିକରୁ ଓଡ଼ିଶାରେ ଏକ ଆଟବିକରାଜ୍ୟର ପ୍ରତିଷ୍ଠା ଓ ବିକାଶ ଉପରେ ସୂଚନା ମିଳିଥାଏ । ଖ୍ରୀ ପୂ ତୃତୀୟ ଶତାବ୍ଦୀରେ ଅଶୋକ ତତ୍କାଳୀନ ଆଟବିକ ଅଞ୍ଚଳର ଅନତି ଦୂରରେ ଖପିଙ୍ଗଲ ପାହାଡରେ ଉତ୍କୀର୍ଣ୍ଣ ଜଉଗଡ ଶୀଳାନୁଶାସନରେ ଚତୁର୍ଥରୁ ଷଷ୍ଠ ପଙ୍କ୍ତିରେ ତାଙ୍କ ରାଜ୍ୟ ସୀମାନ୍ତରେ ଅପରାଜେୟ ପ୍ରତିବେଶୀ ଅନ୍ତା ଅବିଜିତା, ବା ଅବିଜିତ ଅରଣ୍ୟ ପାର୍ବତ୍ୟ ଅଞ୍ଚଳର ଅଧିବାସୀ 'ଆଟବିକ' ମାନଙ୍କ କଥା ଉଲ୍ଲେଖ କରି-ଛନ୍ତି । (୨୯) ଏହି ଆଟବିକ ରାଜ୍ୟ ସାଂପ୍ରତିକ ପଶ୍ଚିମ ଓଡ଼ିଶା ମୁଖ୍ୟତଃ କଳାହାଣ୍ଡି, କୋରାପୁଟ ଓ ଗଞ୍ଜାମର କେଉଁକ ଅଞ୍ଚଳକୁ ନେଇ ଗଢି ଉଠିଥିଲା । ଅଶୋକ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳକୁ ପରାଜୟ କରିଥିଲେହେଁ ଏହି ଆଟବିକ ରାଜ୍ୟକୁ ପରାସ୍ତ କରି-

Digitized by srujanika@gmail.com

ପାରି ନଥିଲେ । (୩୦) ମହାମେଘବାହନ ଐର ଖାରବେଳଙ୍କର ହାତୀଗୁମ୍ଫା ଅଭି-ଲେଖର ପଞ୍ଚମ ଓ ଷଷ୍ଠଧାଡ଼ିରେ ଉଲ୍ଲେଖ ଅଛି ଯେ ତାଙ୍କ ରାଜତ୍ୱର ଚତୁର୍ଥ ବର୍ଷରେ କଳିଙ୍ଗର ପୂର୍ବ ରାଜାମାନଙ୍କ ଦ୍ୱାରା ସଙ୍ଗଠିତ ଅଜେୟ' 'ବିଦ୍ୟାଧର ରାଜା' (ଅର୍ହତପୂର୍ବ) ତାଙ୍କର ବନ୍ଦନା କରିଥିଲେ । ଏହି ବିଦ୍ୟାଧର ରାଜ୍ୟ ହେଉଛି 'ଆଟବିକ ରାଜ୍ୟ' ଓ ଏହି ଅଜେୟ ଆଟବିକ ସୈନ୍ୟବାହିନୀ ସାହାଯ୍ୟରେ ସାତବାହିନ ଶକ୍ତି 'ରଥିକ' ଓ 'ଭୋଜକ' ମାନଙ୍କ ବିରୁଦ୍ଧରେ ଯୁଦ୍ଧାଭିଯାନ ଚଳାଇଥିଲେ । ଜୈନଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ଏହି ଅଠର ବିଦ୍ୟାଧର ନିବାସ' ହିଁ ପରବର୍ତ୍ତୀ କାଳର 'ଅଷ୍ଟାଦଶ ଆଟବିକ ରାଜ୍ୟ' । (୩୧) ଏଥିରୁ କାଳକ୍ରମେ ଓଡ଼ିଶାର ଅଠର ଗଡ଼ଜାତ ଜନପଦର ସୃଷ୍ଟି ହୋଇଥିବା ସମ୍ଭବ । ତନ୍ମଧ୍ୟରୁ କଳାହାଣ୍ଡି ଅନ୍ୟତମ । ଅଶୋକଙ୍କର ଶୀଳାନୁଶାସନରେ ଅନୁସାରେ ଏହି ଆଟବିକ ରାଜ୍ୟ ଗୁଡ଼ିକ ତାଙ୍କ ଶାସନାଧୀନ ନଥିଲ । (୩୨) ମୌର୍ଯ୍ୟ ଚକ୍ରବର୍ତ୍ତୀ ସମ୍ରାଟ ଅଶୋକ ଏହି ଆଟବିକ ରାଜ୍ୟ ଦ୍ୱାରା ନିୟତ ସଙ୍କୋଚିତ ରହୁଥିଲେ ବୋଲି ତାଙ୍କ ଶୀଳାନୁଶାସନରେ ଉଲ୍ଲେଖିତ ରହିଛି । ଆଟବିକ ରାଜ୍ୟର ଏହି ତ୍ରାସ ସୃଷ୍ଟିକାରୀ ସୈନ୍ୟମାନେ ଆଦିବାସୀ ଥିବାର ପ୍ରମାଣ ମହାଭରତ ପୃଷ୍ଠାରେ ସୁସ୍ପଷ୍ଟ କାରଣ କୁରୁକ୍ଷେତ୍ର ଯୁଦ୍ଧରେ ଯେଉଁ ଶବର ପୁଳିନ୍ଦ ସେନା ଅସୀମ ବୀରତ୍ୱ ପ୍ରଦର୍ଶନ କରିଥିଲେ ବୋଲି ବର୍ଣ୍ଣିତ ଅଛି ସେମାନେ ଏହି 'ଆଟବିକ' ଅଞ୍ଚଳର ଅଧିବାସୀ ଥିଲେ ବୋଲି ଅନେକ ଐତିହାସିକ ମତପୋଷଣ କରି-ଛନ୍ତି । (୩୩) ଏବେ ମଧ୍ୟ କଳାହାଣ୍ଡି ଓ କୋରାପୁଟ ଆଦିବାସୀ ଶବର ଆଉ ପୁଳିନ୍ଦ [କନ୍ଧ] ମାନଙ୍କର ଯଥାର୍ଥ ବାସଭୂମି । ଐତିହାସିକ ସମୀକ୍ଷା ଦୃଷ୍ଟିକୋଣରୁ ଅଶୋକଙ୍କର କଳିଙ୍ଗ ବିଜୟ ପରେ ଯୁଦ୍ଧପ୍ରତି ନିସ୍ପୃହତା ଯଦିଓ ଆଟବିକ ରାଜ୍ୟର ସ୍ୱାଧୀନ ବ୍ୟବସ୍ଥା ପାଇଁ ଏକ କାରଣ ସ୍ୱରୂପ ଗ୍ରହଣ କରଯାଇପାରେ, ତଥାପି ରାଜନୈତିକ ଓ ସାମରୀକ ଦୃଷ୍ଟିକୋଣରୁ ଏହି ଅଞ୍ଚଳ ଯେ ଅଶୋକଙ୍କର ହୃଦୟରେ କିଞ୍ଚିତ ଭୀତି ଉଦ୍ରେକ କରିଥିବ, ଏହା ଅଗ୍ରାହ୍ୟ ହୋଇନପାରେ । (୩୪) କଳାହାଣ୍ଡି ଏହି ଆଟବିକ ରାଜ୍ୟର କେନ୍ଦ୍ରାଞ୍ଚଳ ଥିଲ ବୋଲି ପରବର୍ତ୍ତୀ ପର୍ଯ୍ୟାୟରେ ସମୁଦ୍ରଗୁପ୍ତଙ୍କର ଏଲ୍ଲାହାବାଦ୍ ଶୀଳାଲେଖରେ ଆସୁ-ଥିବା 'ମହାକାନ୍ତାର' ଶବ୍ଦରୁ ଏହା ସ୍ପଷ୍ଟ ପ୍ରତିପାଦିତ ହୋଇଥାଏ । [୩୫] ଅଟବୀ ଓ କାନ୍ତାର ଶବ୍ଦ ଦୁଇଟି ମଧ୍ୟ ମୂଳତଃ ସମାର୍ଥ ବାଚକ ଶବ୍ଦ । ଏ ଉଭୟେ ଘନବନକୁ ବୁଝାଇଥାନ୍ତି । [୩୬] ନିର୍ଭର ଯୋଗ୍ୟ ଐତିହାସିକ ପ୍ରମାଣ ବଳରେ ଜଣାପଡ଼ିଛି ଯେ, ମହାକାନ୍ତାରରେ ବ୍ୟାଘ୍ର ରାଜ ନାମରେ ଜଣେ ରାଜା ରାଜୁତି କରୁଥିଲେ । କେତେକ ଐତିହାସିକ ଏହାଙ୍କୁ ଉଚ୍ଛକଳ୍ପ ବଂଶର ଜଣେ ଦାୟାଦ ବୋଲି ଗ୍ରହଣ କରିଥାନ୍ତି । [୩୭] ପ୍ରାଚୀନ ଭାରତର ପୁରାଣ ଗୁଡ଼ିକରେ ଉଚ୍ଛକଳ୍ପ ବଂଶର ଉତ୍ପତ୍ତି ଆଦିବାସୀ ଭିତ୍ତିକ ହୋଇ-ଥିବାରୁ ବ୍ୟାଘ୍ରରାଜ ଓ ଉଚ୍ଛକଳ୍ପ ବଂଶର ମଧ୍ୟରେ ଥିବା ବୀଜଦ୍ରୁମ ସମ୍ପର୍କକୁ ଯୁକ୍ତିଯୁକ୍ତ ଭବରେ ଗ୍ରହଣ କରଯାଇପାରେ । [୩୮] ଖ୍ରୀଷ୍ଟୀୟ ପ୍ରଥମ/ଦ୍ୱିତୀୟ ଶତାବ୍ଦୀ ବେଳକୁ

Digitized by srujanika@gmail.com

କଳାହାଣ୍ଡି ଜିଲ୍ଲା ସାତବାହନ ରାଜବଂଶର ଅଧିନସ୍ଥଥିବା କଥା ✓ ଐତିହାସିକ ଡକ୍ଟର ନବୀନ କୁମାର ସାହୁ ଲେଖିଯାଇଛନ୍ତି । [୩୯] ଚୀନ ପରିବ୍ରାଜକ ହୁଏନ୍‌ସାଂ ଓ ଇତ୍‌ସିଂଙ୍କ ବିବରଣୀରୁ ଜଣାଯାଏ ଯେ, ଗୌତମୀ ପୁତ୍ର ସାତକର୍ଣ୍ଣୀ ଦାର୍ଶନିକ ବନ୍ଧୁ ନାଗାର୍ଜ୍ଜୁନଙ୍କ ନିମନ୍ତେ କୋଶଳର ପରିମଳଗିରିଠାରେ ଏକ ବିହାର ନିର୍ମାଣ କରାଇଥିଲେ । ପରିମଳଗିରି ହେଉଛି ଆଧୁନିକ ବଲାଙ୍ଗୀର ଓ ସମ୍ବଲପୁର ଜିଲ୍ଲାର ସୀମାରେ ଥିବା ସୁପ୍ର-ସିଦ୍ଧ ଗନ୍ଧମାର୍ଦ୍ଧନଗିରି ସେଥିରୁ ଜଣାପଡ଼େ ଯେ, କୋଶଳ ଅଞ୍ଚଳ ମଧ୍ୟ ସାତକର୍ଣ୍ଣୀଙ୍କର ସାମ୍ରାଜ୍ୟ ଅଧିନସ୍ଥ ଥିଲା ବହୁ ପୁରାତନ କାଳରୁ କଳାହାଣ୍ଡି ଜନପଦକୁ ଆଲିଙ୍ଗନ କରି ହିଁ କୋଶଳର ଭୌଗଳିକ ପରିସୀମା ପରିବ୍ୟାପ୍ତ । ଏଣୁ ଏହି ଐତିହାସିକ କାଳରେ କଳା-ହାଣ୍ଡି ମଧ୍ୟ ସାତବାହନ ଶାସନ ଧୀନ ଥିଲା ବୋଲି କୁହାଯାଇପାରେ । [୪୦] ସମୁଦ୍ର-ଗୁପ୍ତଙ୍କର ଦକ୍ଷିଣାପଥ ଅଭିଯାନ କ୍ରମରେ ସେ ମହାକାନ୍ତାର ରାଜ୍ୟକୁ ଜୟ କରିଥିବା କଥା ଏଲାହାବାଦ ସ୍ତମ୍ଭ ଅଭିଲେଖରୁ ଜଣାପଡ଼ିଥାଏ । [୪୧] ମହାଭାରତର ସଭାପର୍ବରୁ ଜଣା ପଡ଼ିଥାଏ ଯେ, ମହାକାନ୍ତାର ରାଜ୍ୟ କୋଶଳ ଦେଶର ପୂର୍ବସୀମାଠାରୁ ଆରମ୍ଭ କରି ବେଣାନଦୀ ତଟ ପର୍ଯ୍ୟନ୍ତ ବିସ୍ତୃତ ଥିଲା । [୪୨] ବେଣାନଦୀ ହେଉଛି ଗୋଦାବୀର ଏକ ଉପନଦୀ ବେନଗଙ୍ଗା, ତେଣୁ ଆଧୁନିକ ବଲାଙ୍ଗୀର ଜିଲ୍ଲାର କେତେକ ଅଞ୍ଚଳ, ଦନ୍ତୁ କଳାହାଣ୍ଡି ଓ କୋରାପୁଟର କେତେକାଂଶକୁ ନେଇ ମହାକାନ୍ତାର ରାଜ୍ୟ ଗଠିତ ହୋଇ-ଥିଲା । [୪୩] ପୂର୍ବରୁ ସୂଚିତ ଏହି ରାଜ୍ୟର ରାଜା ବ୍ୟାଘ୍ରରାଜ ଜୟନାଥଙ୍କର ପିତା ବ୍ୟାଘ୍ର ରୂପରେ ଚିହ୍ନିତ ହୋଇଛନ୍ତି । [୪୪] ବ୍ୟାଘ୍ରରାଜ ଜଣେ ଆଦିବାସୀ ରାଜାଥିଲେ ବୋଲି ପୂର୍ବରୁ ସୂଚନା ଦିଆଯାଇଛି । ସମୁଦ୍ରଗୁପ୍ତଙ୍କର ଦକ୍ଷିଣାପଥ ଅଭିଯାନ ଖ୍ରୀ: ୪ର୍ଥ ଶତାବ୍ଦୀର ଐତିହ୍ୟ ହୋଇଥିବା ହେତୁ ମହାକାନ୍ତାର ରାଜ୍ୟ ସହିତ କଳାହାଣ୍ଡିର ଐତିହାସିକ ସମ୍ପର୍କକୁ ଏହି ଶତାବ୍ଦୀର ସୀମାରେଖା ମଧ୍ୟରେ ଅବସ୍ଥାପିତ କରାଯାଇପାରେ ।

ବାୟୁ ଓ ବ୍ରହ୍ମାଣ୍ଡ ପୁରାଣରେ ନଳବଂଶୀୟ ରାଜାମାନଙ୍କୁ କୋଶଳର ରାଜବଂଶ ରୂପେ ବର୍ଣ୍ଣନା କରାଯାଇଛି । [୪୫] ନଳ ରାଜବଂଶର ଅଭିଲେଖ ଓ ମୁଦ୍ରା ଗୁଡ଼ିକର ପ୍ରାପ୍ତିସ୍ଥାନ ଉପରେ ନିର୍ଭରକରି ଐତିହାସିକ ଭବରାଜ୍ ଭେଙ୍କେଟକୃଷ୍ଣ ରାଓ କହନ୍ତି ଯେ, ସେହି ବଂଶର ରାଜାମାନଙ୍କର ରାଜ୍ୟ ପଶ୍ଚିମରେ ବେଣାନଦୀଠାରୁ ଦକ୍ଷିଣରେ ଇନ୍ଦ୍ରାବତୀ ପର୍ଯ୍ୟନ୍ତ ଓ ପୂର୍ବରେ ପୂର୍ବଘାଟ ପର୍ବତମାଳ ଠାରୁ ଉତ୍ତରକୁ ମେକଳ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ୪୬] ଏହି ନଳମାନଙ୍କର ପ୍ରାଚୀନ ରାଜ୍ୟ ବସ୍ତର, କୋରାପୁଟ ଓ କଳାହାଣ୍ଡିକୁ କେନ୍ଦ୍ରକରି ଗଢ଼ି ଉଠିଥିଲା ବୋଲି ନିର୍ଭର ଯୋଗ୍ୟ ପ୍ରମାଣ ମିଳୁଛି । [୪୭] ନଳବଂଶୀ ରାଜାମାନେ ମହାଭାରତରେ ନିଷାଦ ରାଜାନଳଙ୍କର ବଂଶଧର ରୂପେ ବର୍ଣ୍ଣିତ ହୋଇଛନ୍ତି । [୪୮] ମୋ ଦ୍ୱାରା ସଂଗୃହିତ 'ମଗଲଗୀତ'ରେ ଥିବା ଗନ୍ଧଜାତିର ଉତ୍ପତ୍ତି ଓ ମାଟିଲାଭ ପ୍ରସଙ୍ଗରେ ନଲ୍ ନୀଲ୍‌ଙ୍କୁ ମାଟିର ଅଧିକାରୀ ଭାବେ ଚିତ୍ରଣ କରାଯାଇଛି । [୪୯] ଏହି ନଳବଂଶୀୟ

Digitized by srujanika@gmail.com

ରଜାମାନଙ୍କର ତାମ୍ର ଶାସନରେ "ଶ୍ରୀ ବିନ୍ଧ୍ୟଦେବ ମହାରଜସ୍ୟ ମହେଶ୍ୱର ମହାସେନା ଗତିସୃଷ୍ଟ ରଜ୍ୟ ବିଭବଃ" ଇତ୍ୟାଦି ପ୍ରଶସ୍ତିମାନ ଦେଖିବାକୁ ମିଳେ । [୫୦] ଐତିହାସିକ ଡ଼କ୍ଟର ନବୀନ କୁମାର ସାହୁ ଏହି ବିନ୍ଧ୍ୟଦେବଙ୍କୁ ବସ୍ତର, କଳାହାଣ୍ଡି ଓ କୋରାପୁଟ ଅଞ୍ଚଳରେ ଗଢ଼ି ଉଠିଥିବା ନଳ ରଜ୍ୟର ରଜାରୂପେ ଗ୍ରହଣ କରିଛନ୍ତି । [୫୧] ନଳବଂଶୀୟ ରଜା ସ୍କନ୍ଦ ବର୍ମାଙ୍କ ସମୟରେ କଳାହାଣ୍ଡି ରଜ୍ୟ ପ୍ରଖ୍ୟାତ ଅଞ୍ଚଳରେ ପରିଣତ ହୋଇଥିବା କଥା ପୋଡାଗଡ ତାମ୍ର ଶାସନରୁ ଜଣା ପଡ଼ିଥାଏ । [୫୨] ଆଧୁନିକ ଓଡ଼ିଶାର ମାନଚିତ୍ରରେ ପୋଡାଗଡ ପୋଡାଘର ନାମରେ ଭବାନୀପାଟଣାର ଅନତି ଦୂରରେ ଅବସ୍ଥିତ [୫୩] ଐତିହାସିକ ମାନଙ୍କ ମତରେ କଳାହାଣ୍ଡି, କୋରାପୁଟ ଓ ବସ୍ତର ତଥା କଳିଙ୍ଗର କେତେକାଂଶକୁ ନେଇ ଏହି ସମୟରେ ତ୍ରିକଳିଙ୍ଗ ରଜ୍ୟ ଗଠିତ ହୋଇଥିଲା ଓ ଏହି ତ୍ରିକଳିଙ୍ଗ ରଜ୍ୟର କେନ୍ଦ୍ରାଞ୍ଚଳ କଳାହାଣ୍ଡି ଥିଲା ବୋଲି ପୋଡାଗଡ ଅଭିଲେଖରୁ ଜଣାପଡେ । [୫୪] ଖ୍ରୀଷ୍ଟିୟ ପଞ୍ଚମ ଷଷ୍ଠ ଶତାବ୍ଦୀରେ ଏହି ଅଞ୍ଚଳରେ ନଳରଜତ୍ୱର ଅବସାନ ଘଟିଲା । ବାକାତକ ଆକ୍ରମଣରୁ ଏହି ନଳରଜତ୍ୱର ଅବସାନ ଘଟିଥିଲା ବୋଲି ଐତିହାସିକ ମାନେ କହନ୍ତି । ନଳବଂଶୀ ରଜାମାନଙ୍କର ଦୁର୍ଯୋଗର ସୁଯୋଗ ନେଇ ଏଠିକେ ପର୍ବତ ଦ୍ୱାରକ ରଜବଂଶମାନେ ତାଙ୍କ ନିଜ ହସ୍ତକ୍ଷେପ କରି ମହାକାନ୍ତାରରେ ସ୍ୱାଧୀନ ରାଜ୍ୟ ଘୋଷଣା କରିଥିଲେ । [୫୫] ଫଳରେ ନଳରଜତ୍ୱର ପରେପରେ ଏହି ଅଞ୍ଚଳରେ ପର୍ବତ ଦ୍ୱାରକ ରାଜବଂଶର ରାଜତ୍ୱ ପ୍ରତିଷ୍ଠା ହୋଇଥିଲା । କଳାହାଣ୍ଡି ଜିଲ୍ଲାର ନୂଆଁଅଞ୍ଚଳ, ଟାଲଭଅଁରା ଓ ବେଲପଦର ବା ବେଲଖଣ୍ଡି ଅଞ୍ଚଳରୁ ମିଳିଥିବା ଦୁଇଟି ତାମ୍ର ଶାସନରୁ ଜଣାପଡେ ଯେ,–ଏହି ଅଞ୍ଚଳରେ ପର୍ବତ ଦ୍ୱାରକ ରାଜାମାନେ ଆଦିବାସୀମାନଙ୍କୁ ନେଇ ଏହି ରାଜ୍ୟ ଗଠନ କରିଥିଲେ । (୫୬) ତାଙ୍କର ସାମ୍ରାଜ୍ୟ ନିର୍ମାଣ ଯୋଜନାରେ ଆଦିବାସୀମାନେ ମୁଖ୍ୟ ଭୂମିକା ଗ୍ରହଣ କରିଥିବାରୁ ଆର୍ଯ୍ୟଜାତ୍ୟ ପର୍ବତ ଦ୍ୱାରକ ବଂଶୀୟମାନେ ତାଙ୍କ ତାମ୍ର ଶାସନ ଗୁଡ଼ିକରେ ଆଦିବାସୀ ସଂସ୍କୃତିର ପରମାରାଧ୍ୟା ଦେବୀ ସ୍ତମ୍ଭେଶ୍ୱରୀଙ୍କୁ କୃତଜ୍ଞତା ଜଣାଇଥିବାର ଦେଖାଯାଏ । (୫୭) ନଳୀ ତାମ୍ର ଶାସନରେ ପର୍ବତ ଦ୍ୱାରକ ବଂଶୀୟ ରାଜା ନନ୍ଦରାଜା ନିଜକୁ ସ୍ତମ୍ଭେଶ୍ୱରୀ ପାଦଭକ୍ତ ନାମରେ ବର୍ଣ୍ଣିତ କରିଛନ୍ତି । ୫୮] ଠିକ ସେହିପରି ତେରେସିଙ୍ଗା ତାମ୍ର ଶାସନରେ ମଧ୍ୟ ମହାରାଜା ତୁଷ୍ଟିକର ନିଜକୁ ସ୍ତମ୍ଭେଶ୍ୱରୀ ପାଦଭକ୍ତ ବୋଲି ଭଣିତ କରିଛନ୍ତି । (୫୯) ଏହି ତାମ୍ର ଶାସନରେ ତୁଷ୍ଟିକରଙ୍କର ରାଣୀ 'କୌସ୍ତୁଭେଶ୍ୱରୀ' ଦାହଜ୍ୱରରେ ପଡ଼ିଥିବା ହେତୁ ସ୍ତମ୍ଭେଶ୍ୱରୀଙ୍କର ଅର୍ଚ୍ଚନ କ୍ରମେ କଶ୍ୟପ ଗୋତ୍ରର ଆର୍ଯ୍ୟଦ୍ରୋଣ ଶର୍ମାଙ୍କୁ ଭୂମିଦାନ କରିଥିଲେ । (୬୦) ଏଥିରୁ ସ୍ପଷ୍ଟ ଜଣ ପଡେ ଯେ ଖ୍ରୀଷ୍ଟିୟ ପଞ୍ଚମ, ଷଷ୍ଠ ଶତାବ୍ଦୀରେ ମଧ୍ୟ ଆଦିବାସୀ ଦେବୀ ସ୍ତମ୍ଭେଶ୍ୱରୀଙ୍କର ଲୋକ ପ୍ରିୟତା ଏଅଞ୍ଚଳର ପାରଂପରିକ ବ୍ରାହ୍ମଣ ସଂସ୍କୃତିରେ ପ୍ରତିଫଳିତ ହୋଇ ସାରିଥିଲା । ଐତିହାସିକ ଡ଼କ୍ଟର ନବୀନ କୁମାର ସାହୁଙ୍କ ମତରେ ସ୍ତମ୍ଭେଶ୍ୱରୀ ହିଁ ଓଡ଼ିଶା

Digitized by srujanika@gmail.com

ସର୍ବପ୍ରାଚୀନ ଦେବୀ । ଯେହେତୁ ସମ୍ପ୍ରତି ସ୍ତମ୍ଭେଶ୍ୱରୀ ପୂଜାରେ ମୁଖ୍ୟ ପୁରୋଧା ବ୍ରାହ୍ମଣ ହେଲେହେଁ ଏହି ଉପାସନାର ପ୍ରତ୍ୟେକ ସ୍ତରର ପୂଜା ପଦ୍ଧତିରେ ଡୁମାଲ, କନ୍ଧ, ଗଣ୍ଡ, ସଉରା, ମରାଲ, ଓ ବିଞ୍ଝାଲ୍ ଆଦି ଜାତିମାନେ ମୁଖ୍ୟଭୂମିକା ଗ୍ରହଣ କରିଥାନ୍ତି ତେଣୁ ଏହି ସ୍ତମ୍ଭେଶ୍ୱରୀ ସଂସ୍କୃତି ଆଦିବାସୀ ସଂସ୍କୃତି ମଧ୍ୟଦେଇହିଁ ଗଢି ଉଠିଥିବାର ଯୁକ୍ତିଯୁକ୍ତତା ଯଥେଷ୍ଟ ଭାବରେ ରହିଛି । ପୁନଶ୍ଚ ଶ୍ରୀ ଜଗନ୍ନାଥଙ୍କର ନବକଳେବର ଉତ୍ସବ ଓ ସ୍ତମ୍ଭେଶ୍ୱରୀଙ୍କର ନୂତନ ସ୍ତମ୍ଭ ସ୍ଥାପନ ଉତ୍ସବରେ ଯଥେଷ୍ଟ ସାମ୍ୟତା ରହିଛି । ପୁରୀ ଜଗନ୍ନାଥ ମନ୍ଦିର ଥିବା ସୁଦର୍ଶନ ଚକ୍ର ମଧ୍ୟ ଏକ ଗୋଲକାର ସ୍ତମ୍ଭ ମାତ୍ର ଯାହାକି ଠିକ୍ ସ୍ତମ୍ଭେଶ୍ୱରୀଙ୍କର ପ୍ରତୀକ ସ୍ତମ୍ଭପରି । ତେଣୁ ଗଞ୍ଜାମ, କଳାହାଣ୍ଡି, କୋରାପୁଟ ବଲାଙ୍ଗୀର ଓ ବସ୍ତର ଅଞ୍ଚଳର ଆଦିବାସୀ ସଂସ୍କୃତିରୁହିଁ ପ୍ରାଚୀନ କାଳରେ ଏହି ଜଗନ୍ନାଥ ସଂସ୍କୃତିର ପ୍ରାଥମିକ ଧର୍ମଧାରଣାର ଆଦି ଉନ୍ମେଷ ହୋଇଥିବା ସମ୍ଭାବନା ଅଳୀକ ହୋଇନପାରେ [୬୧] ମାଦଳା ପାଞ୍ଜିରେ ମାଣିକେଶ୍ୱର ପାଟଣା ନାମରେ ଏକ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳଥିଲା ବୋଲି ବର୍ଣ୍ଣିତ ହୋଇଛି । [୬୨] ଏହି ମାଣିକେଶ୍ୱର ପାଟଣାରୁହିଁ ଏକାଂଶା ଦେବୀଙ୍କର ଉତ୍ପତ୍ତି ଘଟିଥିବା ବିଷୟ ଖୀଳ ହରିବଂଶ ପୁରାଣରେ ଲିଖିତ ହୋଇଛି ।[୬୩] କୋଶଳାନନ୍ଦ ମହାକାବ୍ୟରେ ଏହି ମାଣିକେଶ୍ୱରୀ ପାଟଣାକୁ କୋଶଳର ସୀମାନ୍ତରେ ଅବସ୍ଥିତ ବୋଲି ନିର୍ଦ୍ଧାରିତ କରାଯାଇଛି । [୬୪] ବହୁ ନିର୍ଭର ଯୋଗ୍ୟ ସୂତ୍ରରୁ ପ୍ରମାଣିତ ହୋଇଛି ଯେ, କନ୍ଧମାନେ ତାଙ୍କର ମେରିଆ ବଳୀ ଦେବା ସମୟରେ "ମାନିକ୍‌ସାଇରୋ" (Manikasairo) ବୋଲି ଏକ ଦେବୀଙ୍କୁ ପୂଜା କରୁଥିଲେ । [୬୫] ଏହି 'ମାନିକ୍ ସାଇରୋ'କୁ କନ୍ଧମାନେ ତାଙ୍କର ଧରନି ପେନୁର ଭଉଣୀ ଭାବରେ ଗ୍ରହଣ କରିଥାନ୍ତି, ତେଣୁ ଏହି ମାନିକ ସାଇରୋଙ୍କୁ କଳାହାଣ୍ଡି ଲୋକ ସଂସ୍କୃତିରେ ବିଶେଷତଃ ଆଦିବାସୀ କନ୍ଧ ସଂସ୍କୃତିରେ ଜନପ୍ରିୟ ଭାବରେ ଗୃହିତ ବର୍ତ୍ତମାନର ରାଜଦେବୀ ମାଣିକେଶ୍ୱରୀଙ୍କ ସହ ଚିହ୍ନିତ କରାଯାଇପାରେ । କନ୍ଧମାନଙ୍କର ଲୋକଗୀତରେ ଧରନି ଓ ମାଣିକେଶ୍ୱରୀଙ୍କୁ ଭଉଣୀ ମାନ୍ୟରେ ସମ୍ବୋଧିତ କରାଯାଇଛି ଯଥା,–

> "ଜୁଆର ଜୁଆର ମାନିକେଶରୀମା ରଏଲେ ମହରମନି,
> ସାଏବାନୀମାହାଁ ଲଏବାନୀମାହାଁ ଧରନୀର ସାନ ବହେନି...
> ଜୁଆର ମାଁ ଆମର୍ ମାଟକାଟ ଲେ,
> ଧାଙ୍ଗରୀ ଗୁଟେକ ମିଲୁ ଆମକେ... ... ... ... ..." ।୬୬।

ବହୁ ପରବର୍ତ୍ତୀ ସମୟରେ ମାଣିକେଶ୍ୱରୀ ରାଜରାଜବଂଶ, ଓ ପରେପରେ ନାଗରାଜବଂଶର ଇଷ୍ଟଦେବୀ ରୂପେ ଗୃହୀତ ହୋଇଥିଲେ ହେଁ ।୬୭। ଏହାଙ୍କର ମୌଳିକତା କନ୍ଧ ସଂସ୍କୃତି-ରେହିଁ ନିହିତ । ସେ ନପରେ ଅଷ୍ଟଚଣ୍ଡୀଙ୍କର ଉପାସନା କ୍ରମରେ ସ୍ତମ୍ଭେଶ୍ୱର, ଦମ୍ଭେଶ୍ୱରୀ

Digitized by srujanika@gmail.com

(ସମଲେଶ୍ୱରୀ) ଇତ୍ୟାଦିଙ୍କ ମଧ୍ୟରେ ମାଣିକେଶ୍ୱରୀ ଙ୍କର ମଧ୍ୟ ପୂଜା ହୋଇଥାଏ ।୬୮। ଏହି ଅଷ୍ଟଚଣ୍ଡୀ ସଂସ୍କୃତି ଏକ ଆଦିବାସୀ ସଂସ୍କୃତିର ପ୍ରତିନିଧି କାରଣ ଏହି ଦେବୀମାନଙ୍କର ବର୍ଣ୍ଣନା ପାରଂପରିକ ପୁରାଣ ଗୁଡ଼ିକରେ ମିଳେନାହିଁ, ଏଥିରେ ସାମାନ୍ୟମାତ୍ର କୋଟେଟି ଉପାସନାର ସ୍ତରକୁ ବାଦଦେଲେ ଅନ୍ୟସବୁ ସ୍ତର ଗୁଡ଼ିକରେ ଏହିଦେବୀ ମାନଙ୍କର ପୂଜା ପଦ୍ଧତିରେ ଆଦିବାସୀମାନେହିଁ ମୁଖ୍ୟାଂଶ ଗ୍ରହଣ କରିଥାନ୍ତି । ଏଣୁ କୁହାଯାଇପାରେ ମହାନଦୀ ତଟରୁ ଆରମ୍ଭକରି ତେଲି ଅଙ୍ଗ ଓଇଟନଦୀ ଉପତ୍ୟକାରେ ଗଢି ଉଠିଥିବା ଶାକ୍ତ ସଂସ୍କୃତିର ପୃଷ୍ଠଭୂମିରେ ଏକ ବଳିଷ୍ଠ ଆଦିବାସୀ ସଂସ୍କୃତିର ପ୍ରଛନ୍ନବିଦ୍ୟମାନତା ରହିଛି ।୬୯। ଅତଏବଃ ପ୍ରୋକ୍ତ ମାଣିକେଶ୍ୱର ପାଟଣା ହିଁ ସମ୍ପ୍ରତି କଳାହାଣ୍ଡିର ଜୁନାଗଡ଼-ପାଟଣା ଓ ଅନେକ ସମାଲୋଚକଙ୍କ ସ୍ୱୀକୃତ ମତାନୁସାରେ 'ଏକାନଂଶା' ଙ୍କର କ୍ରମରୂପହିଁ ଦେବୀ ସୁଭଦ୍ରା ।୭୦। ଏକାନଂଶା ଦେବୀଙ୍କର ପ୍ରାଚୀନ ମୌଳିକତ୍ୱର ସମ୍ପର୍କ ଆଲୋଚ୍ୟ ମାଣିକେଶ୍ୱରପାଟଣା ସହିତ ରହୁଥିବାରୁ କଳାହାଣ୍ଡି ଜିଲ୍ଲାକୁହିଁ ସୁଭଦ୍ରା ତତ୍ତ୍ୱର ପ୍ରାଥମିକ ଭୂମିଖଣ୍ଡରେ ଗ୍ରହଣ କରଯାଇପାରେ । ପୁରୁଷୋତ୍ତମଙ୍କ ବିରଚିତ ତ୍ରିକାଣ୍ଡ ଶେଷରେ ଏକାନଂଶା ନନ୍ଦପୁତ୍ରୀ ଓ କଳିବରି ନାମରେ ନାମିତ ।୭୧। ଯେହେତୁ କଳାହାଣ୍ଡିରେ ପଞ୍ଚମ ଶତାବ୍ଦୀରେ ନଳରାଜତ୍ୱ ଥିଲା ଓ ଏହି ନଳମାନେ ଶୈବ ଉପାସନାର ପୃଷ୍ଠ ପୋଷକତା କରୁଥିଲେ ଅତଏବ ଏହି ସମୟରୁହିଁ ଦେବୀ ଏକାନଂଶାଙ୍କ ଉତ୍ପତ୍ତି ଘଟିଥିବାର ଅନୁମେୟ । ପୂର୍ବରୁ କଥିତ ହୋଇଛି ଯେ, କଳାହାଣ୍ଡିରେ ନଳରାଜତ୍ୱର ଉଚ୍ଛେଦ ବାକାଟକ ବଂଶ ଦ୍ୱାରା ହୋଇଥିଲା । ବାକାଟକ ବଂଶର ଏକ ପ୍ରଧାନ ଦୁର୍ଗ କଳିଞ୍ଜର ଠାରେ ଅବସ୍ଥିତଥିଲା, ବାକାଟକ ବଂଶର ରାଣୀ ପ୍ରଭାବତୀ ଦେବୀଙ୍କର ତାମ୍ରଶାସନରେ ଏହାଏକ ରାଜନୈତିକ ଦୁର୍ଗ ରୂପରେ ଘୋଷିତ ହୋଇଛି ।୭୨। ଏହି କଳିଞ୍ଜର ଦୁର୍ଗରୁ ବାକାଟକମାନେ ହରିଷେଣ, କୁନ୍ତଳ, ଅବନ୍ତୀ କଳିଙ୍ଗ, କୋଶଳ, ତ୍ରିକୂଟ, ଲାଟଓ ଆନ୍ଧ୍ରଦେଶ ଆଦିଜୟ କରିଥିଲେ ।୭୩। ନଳ ଆଧିପତ୍ୟର ଉଚ୍ଛେଦପରେ' ବୋଧହୁଏ ବାକାଟକ ବଂଶର ରାଜାମାନେ ଓ ପର୍ବତଦ୍ୱାରକ ମାନେ ଏହି ଏକାନଂଶାଙ୍କୁ ପୂଜାକରୁଥିଲେ ଓ ବାକାଟକ-ଗୁପ୍ତସଂସ୍କୃତିରେ ଏକାନଂଶା କଳିଞ୍ଜର ଦେବୀନାମରେ ପରିଚିତହୋଇ, ପର୍ବତ ଦ୍ୱାରକ ରାଜବଂଶରେ ପ୍ରତିଷ୍ଠିତ ଶାକ୍ତ ସଂସ୍କୃତିରେ ସେ ଦେବୀ ସ୍ତମ୍ଭେଶ୍ୱରୀ ରୂପ ଗ୍ରହଣ କଲେ । ପୁରୀ ଜଗନ୍ନାଥ ସଂସ୍କୃତିର ହସ୍ତ ପାଦାଦିଶୂନ୍ୟ ଦେବୀ ସୁଭଦ୍ରାଙ୍କର ମୂର୍ତ୍ତୀ ଯେ, ମୂଳତଃ ଏକ ସ୍ତମ୍ଭ କୃତି ଏହା ଅନସ୍ୱୀକାର୍ଯ୍ୟ । ସୁଭଦ୍ରା ତତ୍ତ୍ୱ ମଧ୍ୟରେଯେ ମୂଳତଃ ସ୍ତମ୍ଭେଶ୍ୱରୀ ରହିଛନ୍ତି ଏହା ଓଡ଼ିଶାର ପ୍ରବୀଣ ପ୍ରତ୍ନତାତ୍ତ୍ୱିକ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ମଧ୍ୟ କହନ୍ତି ।୭୪। ଇତିହାସ ପ୍ରସିଦ୍ଧ କଳାହାଣ୍ଡିର ପୁରାତନ ରାଜପଦର ବା ବେଲଖଣ୍ଡିରେ ବିକାଶଲାଭ କରିଥିବା ଶୈବ, ଶାକ୍ତ ସଂସ୍କୃତି ନଳ ଓ ପର୍ବତଦ୍ୱାରକ ରାଜା ବଂଶର କୀର୍ତ୍ତିବୋଲି ଐତିହାସିକ ମାନଙ୍କଦ୍ୱାରା ଦୃଢ଼ମତ ଉପସ୍ଥାପିତ ହୋଇଛି ।୭୫।

Digitized by srujanika@gmail.com

ଆଦିବାସୀ ସସ୍କୃତି ହିଁ ଯେ ଏ ସବୁର ପୃଷ୍ଠଭୂମି ଏହା ଅବଶ୍ୟସ୍ୱୀକାର୍ଯ୍ୟ । ମାରଗୁଡ଼ା ଉପତ୍ୟକାରୁ ଆବିଷ୍କୃତ ହୋଇଥିବା ଏକ ଶାକ୍ତ ବିହାର ରେ ଗୋଟିଏ ଯୋନିମନ୍ଦିର ର ଧ୍ୱଂସାବଶେଷ ରହିଛି; ଏଥିରୁ ମିଳିଥିବା ଚତୁଃକୋଣ ଶକ୍ତି ପଥରରୁ ପ୍ରମାଣ ସଂଗ୍ରହ କରି ଏହି ନିର୍ଜ୍ଜନ ସ୍ଥାନରେ ଗୁପ୍ତରେ ଚକ୍ରପୂଜାର ପ୍ରଚଳନଥିଲା ବୋଲି ଐତିହାସିକ ଜିତାମିତ୍ର ପ୍ରସାଦ ସିଂହଦେଓ ମତବ୍ୟକ୍ତ କରିଛନ୍ତି ।୭୬। କଳାହାଣ୍ଡି ର ଆଦିବାସୀ ବିଶେଷତଃ କନ୍ଧଜାତିର ଦଳିପୂଜାରେ ଦୁମାଦୁମା ଦେବୀ ଯୋନିରେ ପୂଜିତ ହୁଅନ୍ତି ଓ ସେ ବିଭତ୍ସ ଆଦିମରସ ପୂର୍ଣ୍ଣ ହୁଇଲିଗୀତରେ ବନ୍ଦିତ ହୋଇଥାନ୍ତି । ଏହି ଗୀତରେ ଯୋନି ଓ ଲିଙ୍ଗର ପ୍ରସଙ୍ଗହିଁ ମୁଖ୍ୟ । ପୁଣି କନ୍ଧସସ୍କୃତିରେ ଏବେମଧ୍ୟ ଚକର୍‌ଧାର୍ ବୋଲି ଏକ ଗାଁ ବାହାରେ ନିର୍ଜ୍ଜନରେ ପୂଜିତ ହୁଅନ୍ତି, ଆଜିକାଲି ଉପଲଭ୍ୟ ନହେଲେହେଁ ଅଗେଯେ ଚକରଧାର ଏକ ଚତୁଃକୋଣ ଶକ୍ତି ପଥରରେ ପୂଜିତ ହେଉଥିଲେ ଏହାର ପ୍ରମାଣ ଏବେମଧ୍ୟ ଢ଼ାପଗୀତରେ ରହିଛି," –

> " ଆଏ ମହୁଲର୍ ପୁରେପୁରେ ଜାଏ ମହୁଲରପୁରେ
> ଆମ ଚକରଧାର ପୂଜା ଛିନ୍‌ନେ ଗୁରକୁନିଆ ପଥରେ " ।୭୭।

ଅତଏବ କୁହାଯାଇପାରେ ଯେ ମାରଗୁଡ଼ାରୁ ମିଳୁଥିବା ଯୋନିପୂଜା ଓ ଚକ୍ରପୂଜାର ସସ୍କୃତି ଏହି ଜିଲ୍ଲାର ଆଦିବାସୀ ସସ୍କୃତି ଗାଥେଟେ ।

ଐତିହାସିକ ଜୀତାମିତ୍ର ପ୍ରସାଦ ସିଂହଦେଓ ତାଙ୍କର ଏହି ପ୍ରବନ୍ଧରେ ପୁଣି ଲେଖୁଛନ୍ତି ଯେ, "-ଏହି ଉପତ୍ୟକାରେ (ମାରଗୁଡ଼ା) ଏକଦା ଦକ୍ଷିଣ କୋଶଳର ରାଜଧାନୀ ଶରଭପୁର-ଥିଲା" ।୭୮। ଐତିହାସିକ ପଣ୍ଡିତ ମାନେ କହନ୍ତି ଯେ, "-ଶରଭପୁରିଆ ମାନେ ପ୍ରଥମେ କୋଶଳ ପୂର୍ବାଂଶର ଶାସନ କରୁଥିଲେ ।୭୯। ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ଶେଷଆଡ଼କୁ କଳାହାଣ୍ଡିର କେତେକଅଞ୍ଚଳରେ ଶରଭ ପୁରୀୟ ରାଜା ମାନଙ୍କର ଆଧିପତ୍ୟ ବିସ୍ତାର ହୋଇଥିଲା ।୮୦। ଏମାନଙ୍କୁ ଅମରାର୍ଯ୍ୟକୁଳ ଭାବେ ମଧ୍ୟ ନାମିତ କରାଯାଇଛି ।୮୧। ଏହି ଅମରାର୍ଯ୍ୟକୁଳର ପ୍ରତିଷ୍ଠାତାଙ୍କୁ ଶରଭ ନାମରେ ନାମିତ କରାଯାଇଛି । କୁରୁଦ ଓ ପିପରଡୁଲା ତାମ୍ର ଶାସନ ଅନୁସାରେ ଏହି 'ଶରଭ' ନାମକ ଏକ ପଣ୍ଡୁଠାରୁ ଜନ୍ମିଥିବାର ଉଲ୍ଲେଖ ରହିଛି ।୮୨ ଐତିହାସିକମାନେ ଶରଭଙ୍କୁ ଏକ ବଳିଷ୍ଠ ପଶୁଭାବରେ ଗ୍ରହଣ କରି ଏହାଠାରୁ ହିଁ ଶରଭପୁରର ସୃଷ୍ଟି ଘଟିଛି ବୋଲି ବର୍ଣ୍ଣନା କରିଛନ୍ତି । ଶାରଭପୁରୀୟ ରାଜାମାନେ ଶରଭପୁରରେ ତାଙ୍କର ରାଜଧାନୀ ପ୍ରତିଷ୍ଠା କରିଥିଲେ । ଡକ୍ଟର ନବୀନ କୁମାର ସାହୁ ଏହି ଶରଭପୁରକୁ ସୁନ୍ଦରଗଡ଼ ଜିଲ୍ଲାର ଶରଭଗଡ଼ରେ ଚିହ୍ନଟ କରିଛନ୍ତି ।୮୩। କନିଂହାମ ଆଧୁନିକ ସମ୍ବଲପୁରକୁ ପ୍ରାଚୀନ

Digitized by srujanika@gmail.com

ଶରଭପୁର ବୋଲି ଚିହ୍ନିତ କରିଛନ୍ତି ।୮୪। ଡକ୍ଟର ଏସ. ପି. ତିୱାରୀ ମାରଗୁଡାକୁ ହିଁ ଅମରଗଡ଼ର ଅପଭ୍ରଂଶ ରୂପେ ଗ୍ରହଣକରି ଅମରାର୍ଯ୍ୟକୂଳର ରାଜଧାନୀ ରୂପେ ଶରଭ-ହୋଇଥିବା ଅନୁମାନ କରନ୍ତି ।୮୫। କିନ୍ତୁ ଅନୁମାନର ମାତ୍ରାଧିକ୍ୟତା, ଓ ବଳିଷ୍ଠ ଯୁକ୍ତିର ଅଭାବତା ହେତୁ ଏହି ତିନୋଟିମତକୁ ଗ୍ରହଣ କରାଯାଇନପାରେ । ମାରଗୁଡ଼ା ଅଞ୍ଚଳରେ ଥିବା 'ଶରଭଙ୍ଗ' ବା ଯାହାକି ବର୍ତ୍ତମାନ ଶରବଙ୍ଗ ନାମରେ ପରିଚିତ ତାହାହିଁ ପ୍ରାଚୀନ ଶରଭପୁରଥିବାର ଅଧିକସମ୍ଭବ । ଏହି ଶରଭଙ୍ଗରୁ ମିଳିଥିବା ଏକ ଗଜଲକ୍ଷ୍ମୀ ମୂର୍ତ୍ତି ଓ ଅନ୍ୟାନ୍ୟ କେତେକ ମୂର୍ତ୍ତି ବର୍ତ୍ତମାନ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂଗୃହିତ ହୋଇ ରହିଛି । ଅଦ୍ୟାପି ସୁଦ୍ଧା ଏହି ଶରଭଙ୍ଗରେ ଏକ ଭଗ୍ନ ଦୁର୍ଗର ଧ୍ୱଂସାବଶେଷ ଦେଖି-ବାକୁ ମିଳେ । ଏହି ଶରଭଙ୍ଗ ପାଖରେ ଧରମବନ୍ଧ ନାମରେ ଏକ ଗ୍ରାମ ରହିଛି । ପ୍ରାଚୀନ ଶରଭପୁରୀୟ ତାମ୍ରଶାସନରେମଧ୍ୟ "ଧମବନ୍ଧ" ନାମକ ଏକ ଗ୍ରାମର ସ୍ପଷ୍ଟ ଉଲ୍ଲେଖ ମିଳିଥାଏ ।୮୬। ଅତଏବ ଶରଭପୁରୀୟ ସାମ୍ରାଜ୍ୟର କେନ୍ଦ୍ରବିନ୍ଦୁ କଳାହାଣ୍ଡିର ଶରବଙ୍ଗ ଅଞ୍ଚଳରେ ଅବସ୍ଥିତ ଥିବାର ପୂର୍ଣ୍ଣ ସମ୍ଭାବନା ପ୍ରମାଣିତ ଅଟେ । ଏହି ଅଞ୍ଚଳ ନୂଆପଡ଼ା ଓ ଖଡ଼ିଆଳ ଗେଡ଼ର ଦକ୍ଷିଣ ପଶ୍ଚିମରେ ଅବସ୍ଥିତ ଓ ଅନେକ ଆଦିବାସୀ ଜନ ବସତିରେ ପରିପୂର୍ଣ୍ଣ । ଅତଏବ ଏ ଅଞ୍ଚଳର ଶରଭପୁରୀୟ ସଂସ୍କୃତିରେ ଆଦି-ବାସୀ ମାନଙ୍କର ପ୍ରଭାବଥିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇନପାରେ । ଶରଭକୁ ଏକ ବଳିଷ୍ଠ ବନ୍ୟପ୍ରାଣୀ ରୂପେ ଗ୍ରହଣ କରାଯାଇଥିବା ହେତୁ, ଏବଂ ଏହି ନେୟକନ୍ତୁର ନାମାନୁସାରେ ଏକ ରାଜବଂଶର ସୃଷ୍ଟି ରହସ୍ୟକୁ ବିଶ୍ୱାସ କରାଯାଇଥିବାରୁ ଏହି ରାଜ-ବଂଶ ମୂଳତଃ ଆଦିବାସୀ ମାନଙ୍କଠାରୁ ଉଦ୍ଭବ ହୋଇଥିବା ସମ୍ଭବ । ଏବେଶୌ କାଳରେ ଏବଂଶର ପ୍ରଭଞ୍ଜନୀ ରାଜାମାନଙ୍କର ଜନ୍ମରୁ ରାଜବଂଶେତିକ ଯଥାସମ୍ଭବ ଆର୍ଯ୍ୟାୟନ ହୋଇଛି । ଏହି ରାଜବଂଶୀୟ ମହେନ୍ଦ୍ରାଦିତ୍ୟଙ୍କର ଅନେକ ଗୁଡ଼ିଏ ମୁଦ୍ରା କଳା-ହାଣ୍ଡିର ମଦନପୁର-ରାମପୁରର ଏକ ଭଗ୍ନ ଦୁର୍ଗରୁ ମିଳିଛି ।୮୭। ପୁଣି ଏହି ବଂଶୀୟ ଅନ୍ୟଏକ ରାଜାଙ୍କର କେତେକ ମୁଦ୍ରାମଧ୍ୟ ଖଡ଼ିଆଳ ଅଞ୍ଚଳରୁ ପ୍ରାପ୍ତ ହୋଇ ସମ୍ପ୍ରତି ସମ୍ବଲପୁର ବିଶ୍ୱବିଦ୍ୟାଳୟର ସଂଗ୍ରହାଳୟରେ ସଂରକ୍ଷିତ ହୋଇ ରହିଛି । ସୁଦେବ ରାଜାଙ୍କର ତାମ୍ର ଶାସନରୁ ମଧ୍ୟ ଏ ଅଞ୍ଚଳରେ ଶରଭପୁରୀୟ ରାଜାମାନଙ୍କର ପ୍ରଚଣ୍ଡ ଆଧିପତ୍ୟଥିବାର ସୂଚନା ମିଳେ ।୮୮।

ଶରଭପୁରୀୟ ରାଜତ୍ୱର ଅବସାନ ପରେ କୋଶଳରେ ପାଣ୍ଡୁବଂଶୀ ବା ସୋମବଂଶୀ ରାଜାମାନେ ପ୍ରତିଷ୍ଠା କରିଥିଲେ । ତେଣୁ ଏହି ସମୟ ମଧ୍ୟରେ କଳାହାଣ୍ଡି ମଧ୍ୟ ସୋମ-ସାମ୍ରାଜ୍ୟଭୁକ୍ତ ହୋଇ ରହିଲା । ସର୍ବ ପ୍ରଥମେ ତୀବରଦେବ ହିଁ କଳାହାଣ୍ଡିକୁ ଶରଭପୁରୀୟ ରାଜାମାନଙ୍କଠାରୁ ଜୟକରି ସୋମ ଆଧିପତ୍ୟରେ ରଖିଥିଲେ । ଫଳରେ

Digitized by srujanika@gmail.com

ସପ୍ତମ ଶତାବ୍ଦୀର ଶେଷଭାଗକୁ ସୋମ ରାଜତ୍ୱର ପ୍ରତିଷ୍ଠାହେଲା ।୮୯। ଏସମୟରେ ସମ୍ପ୍ରତି କଳାହାଣ୍ଡି ଓ ଟିଟିଲାଗଡ ଅଞ୍ଚଳ ବା କନ୍ଧାନ ଅଞ୍ଚଳ କଳା, ସଂସ୍କୃତି ଓ ସ୍ଥାପତ୍ୟ ଦିଗରେ ଅନେକ ଉନ୍ନତି କରିଥିବାର ଜଣାପଡ଼େ । ମହାଶିବଗୁପ୍ତ ବାଳାର୍ଜୁନଙ୍କର ମାତା ବାସଟ ଶିରିପୁରଠାରେ ତାଙ୍କର ଲକ୍ଷ୍ମଣେଶ୍ୱର ମନ୍ଦିର ଅଭିଲେଖରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତିଯେ, '- ବାଳାର୍ଜୁନଙ୍କ ପିତାମହ ଚନ୍ଦ୍ରଗୁପ୍ତଙ୍କର ଜ୍ୟେଷ୍ଠଭ୍ରାତା ପୂର୍ବେ ରାଜପଣ କରିଥିଲେ ।୯୦। ଚନ୍ଦ୍ରଗୁପ୍ତଙ୍କର ଜ୍ୟେଷ୍ଠଭ୍ରାତା ହେଉଛନ୍ତି ତୀବରଦେବ, ଓ ସେ ନିଜକୁ ନନ୍ନ ଦେବଙ୍କର ପୁତ୍ର ଓ ଇନ୍ଦ୍ରବଳଙ୍କର ନାତି ରୂପରେ ପରିଚିତ କରାଇଛନ୍ତି ।୯୧। ତାଂରେ ଦେଙ୍କେର ଶାସନକାଳରେ ସେ ସମଗ୍ର କୋଶଳକୁ ନିଜ ଅଧୀନସ୍ଥ କରାଇପାରି ସକଳ କୋଶଳାଧି-ପତି ଉପାଧିରେ ଭୂଷିତ ହୋଇଥିଲେ ।୯୨। ଏହି ସମୟରେ ଉତ୍କଳ ମଧ୍ୟ କୋଶଳର ଅଧୀନସ୍ଥ ହୋଇଥିଲା ଓ ତୀବର ଦେବଙ୍କର ଉତ୍କଳ ବିଜୟ ସମୟରେ କୋଶଳର କେତେକ ଆଦିବାସୀ ତାଙ୍କୁ ସାହାଯ୍ୟ କରିଥିଲେ ବୋଲି ସ୍ପଷ୍ଟ ଉଲ୍ଲେଖ କରାଯାଇଛି ।୯୩। ଏହି ପାଣ୍ଡୁ ବା ସୋମବଂଶର ରାଜମାତା ବାସଟ ଶିରିପୁରର ଲକ୍ଷ୍ମଣେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । ଏହି ମନ୍ଦିରର ସ୍ଥାପତ୍ୟ କୌଶଳ ଓ ରାଣୀପୁର ଝରିଆଲ ସ୍ଥ ବିଷ୍ଣୁ ମନ୍ଦିରର ସ୍ଥାପତ୍ୟ କୌଶଳ ମଧ୍ୟରେ ସାମ୍ୟତା ରହିଥିବାରୁ ସେହି ସମୟରେହିଁ ଏହା ନିର୍ମିତ ହୋଇଥିବାର ଜଣାପଡ଼େ । ରାଜପଦରରେ ଥିବା ଭଗ୍ନଇଟା ମନ୍ଦିର ମଧ୍ୟ ଠିକ୍ ସେହିପରି ଏ ସମୟର କାର୍ଯ୍ୟ ବୋଲି ଜଣାପଡ଼େ—ଏହାହେଉଛି ଚଣ୍ଡୀଙ୍କର ମନ୍ଦିର ।୯୪। ବାଳାର୍ଜୁନଙ୍କର ମୃତ୍ୟୁ ପରେ ପାଣ୍ଡୁବଂଶୀମାନେ ଶିରିପୁରରୁ ସୋନପୁରକୁ ତାଙ୍କର ରାଜଧାନୀ ପରିବର୍ତ୍ତନ କରିଥିଲେ, ଏହି ସମୟରେ ସେମାନେ କଳାହାଣ୍ଡି ଓ ଟିଟିଲାଗଡ଼, ଅଞ୍ଚଳଦେଇ ସୋନପୁର ବା ସୁବର୍ଣ୍ଣ ପୁରକୁ ଯାତ୍ରାକରିଥିବାର ଅନୁମେୟ ।୯୫। ସୋନ-ପୁରରେ ରାଜଧାନୀ ପ୍ରତିଷ୍ଠାପରେ ସେମାନେ ଦେବୀ ପଞ୍ଚାମ୍ବରୀ ଓ ଭଦ୍ରାମ୍ବିକାଙ୍କୁ ଉପାସନା କରୁଥିଲେ ।୯୬। ଏହି ପଞ୍ଚାମ୍ବରୀ ଭଦ୍ରାମ୍ବିକା ଦେବୀ ଆଦିବାସୀ ସମ୍ପ୍ରତିର ସ୍ତମ୍ଭେଶ୍ୱରୀଙ୍କର ଆର୍ଯ୍ୟାୟନ ବ୍ୟତୀତ ଅନ୍ୟକିଛିନୁହଁନ୍ତି ସୋନପୁର ଓ ବିନିକା ଆଦି ଅଞ୍ଚଳରେ ଲୋକପ୍ରିୟ ଭାବରେ ପୂଜିତା ହେଉଥିବା ଦେବୀ ସ୍ତମ୍ଭେଶ୍ୱରୀଙ୍କର ଉପାସନାରେ ପଞ୍ଚାମ୍ବରୀ ଭଦ୍ରାମ୍ବିକା ଦେବୀଙ୍କର ପୂଜାହିଁ ହୋଇଥାଏ ।୯୭। ଅତଏବ ଟେରେସିଙ୍ଗା ଗ୍ରାମର ଅଭିଲେଖକୁ ସାକ୍ଷ୍ୟ ଦୃଷ୍ଟି କୋଣରୁ ପ୍ରଥମେ ବିକାଶଲାଭ କରିଥିବା ସ୍ତମ୍ଭେଶ୍ୱରୀ ଉପାସନା ଏହି ସମୟରେହିଁ ସୋନପୁର ଓ ବିନିତପୁର ଅଞ୍ଚଳକୁ ଯାଇଥିବାର ଅନୁମେୟ । ସୁବର୍ଣ୍ଣ ପୁର ପରେପରେ ସୋମବଂଶୀ ରାଜାମାନେ ବିନିତପୁର ବା ସମ୍ପ୍ରତି ବିନିକା ରେ ତାଙ୍କର ରାଜଧାନୀ ପ୍ରତିଷ୍ଠା କରିଥିଲେ ।୯୮। ଏହି ସୋମବଂଶୀ ରାଜତ୍ୱକାଳରେ କଳା-ହାଣ୍ଡିର ବେଲଖଣ୍ଡି ଓ ବଲାଙ୍ଗୀର ଜିଲ୍ଲାର ସିନ୍ଧେକେଲା ସନ୍ନିକଟସ୍ଥ ରାଣୀପୁର ଝରିଆଲରେ ଏକ ଉନ୍ନତ ଶାକ୍ତ ସଂସ୍କୃତି ଗଢିଉଠିଥିଲା । ଏ ଅଞ୍ଚଳରୁ ମିଳିଥିବା ସପ୍ତ ମାତୃକା ବିଗ୍ରହ

Digitized by srujanika@gmail.com

ଗଡ଼ିକର ସ ମଞ୍ଜସ୍ୟ ବହୁଭବରେ ପରିଲକ୍ଷିତ ହେଉଥିବାରୁ, ତଥା ସମ୍ପ୍ରତି ଟିଟିଲଗଡ ସନ୍ନିକଟସ୍ଥ ଘୋଡାର ରୁ ମିଳୁଥିବା ସପ୍ତମାତୃକାବିଗ୍ରହ ଗୁଡ଼ିକର ମଧ୍ୟ ଏମାନଙ୍କ ସହ ସାଦୃଶ୍ୟ ଥିବାରୁ, ସୋମବଂଶୀ ରାଜତ୍ୱ କାଳରେହିଁ ଏ ସମସ୍ତ ଅଞ୍ଚଳରେ ଏକ ଉଚ୍ଚାଙ୍ଗ ଶୈବ ଓ ଶାକ୍ତ ସଂସ୍କୃତି ଗଢି ଉଠିଥିଲା ବୋଲି କୁହାଯାଇପାରେ । ଘୋଡାର ଗ୍ରାମର ଏକ ଡୁଙ୍ଗରୀ ଉପରେ ରହିଥିବା ଏକପାଦ ଭୈରବ ବିଗ୍ରହରୁ ଏହି ମତ ଅଧିକ ଦୃଢ଼ ପ୍ରମାଣିତ ହୋଇଥାଏ । ପ୍ରସଙ୍ଗକ୍ରମେ ଏଠାରେ ସ୍ମରଣୀୟ ଯେ କଳାହାଣ୍ଡି ଓ ଟିଟିଲଗଡ଼ ଅଞ୍ଚଳର କନ୍ଧ ମାନଙ୍କ ମଧ୍ୟରେ ପୂଜିତ ହେଉଥିବା "ସାତବହନି ଝଙ୍କାମୁନି" ସପ୍ତମାତୃକାଙ୍କର ରୂପ ଭିନ୍ନ ଆଉ କିଛି ନୁହନ୍ତି । ପୁନଶ୍ଚ ଭୈରବ ବା "ଭର୍ଗେ" ହେଉଛନ୍ତି କନ୍ଧମାନଙ୍କର ଏକ ଲୋକପ୍ରିୟ ଦେବତା । ଏମାନେ ଜଳଭର୍ଗେ, ଥଳ ଭର୍ଗେ, ଅର୍ଗ୍ନି ଭର୍ଗେ, ପାତାଳଭର୍ଗେ ଆଦି ଦ୍ୱାଦଶ ପ୍ରକାର ଭର୍ଗେଙ୍କର ଉପାସନା କରିଥାନ୍ତି ।୯୯। ଏହି ସମୟରେ ମତ୍ତମୟୁର ଶୈବଧର୍ମ କଳାହାଣ୍ଡିର କଦମ୍ବଗୁହା ଓ ଟିଟିଲଗଡ ସିନ୍ଧେକେଲା ଅଞ୍ଚଳର ରଣିପଦ୍ର ଅଞ୍ଚଳରେ ଲୋକପ୍ରିୟତା ଅର୍ଜନ କରିଥିଲା ।୧୦୦। ରଣିପଦ୍ର ହେଉଛି ଯେ ଗିନୀପାଠ ମଣ୍ଡିତ ସପ୍ତତିରିକିପୁର ଝରିଆଲ । ଅତଏବ ଏସବୁଥିରୁ ପ୍ରମାଣିତ ହୋଇଥାଏ ଯେ, ସୋମବଂଶୀ ରାଜତ୍ୱକାଳରେ କଳାହାଣ୍ଡି ଓ ତେଲଙ୍ଗିକ ଜନପଦର ଏକ ରାଜନୈତିକ, ସାମାଜିକ ଓ ଧାର୍ମିକ ସର୍ବୋପରି ସାଂସ୍କୃତିକ ପ୍ରାଧାନ୍ୟ ଥିବାର ଜଣାପଡେ । ଘୋଡ଼ାର ଅଞ୍ଚଳରୁ ପ୍ରାପ୍ତ ଶୈବ ବିଗ୍ରହ ଗୁଡ଼ିକ, ମୂର୍ତ୍ତିକଳା ଦୃଷ୍ଟିକୋଣରୁ ଚତୁର୍ଥ ପଞ୍ଚମ ଶତାବ୍ଦୀର ପ୍ରାଚୀନତ୍ୱକୁ ବହନ କରୁଥିବାରୁ ଏଗୁଡ଼ିକୁ ନଳରାଜତ୍ୱର ଭଗ୍ନାବଶେଷ ବୋଲି ଗ୍ରହଣ କରଯାଇପାରେ । ପ୍ରାଚୀନ ଶୈବ ସଂସ୍କୃତିର କେନ୍ଦ୍ର ହୋଇଥିବାରୁ ବୋଧହୁଏ ସୋମରାଜତ୍ୱ କାଳରେ ମତ୍ତମୟୁର ଶୈବଧର୍ମ ଏଠାରେ ବିଶେଷ ଲୋକପ୍ରିୟ ହୋଇ ପାରିଥିଲା । ସୋମବଂଶୀ ରାଜାମାନେ ଯେତେବେଳେ କଳାହାଣ୍ଡିର ଉତ୍ତରାଞ୍ଚଳରେ ରାଜୁତି କରୁଥିଲେ, ସେହି ସମୟରେ କଳାହାଣ୍ଡିର ଦକ୍ଷିଣାଞ୍ଚଳରେ ଛିନ୍ଦକନାଗ ମାନେ ରାଜୁତି କରୁଥିଲେ ।୧୦୧। ଛିନ୍ଦକନାଗରାଜା ସୋମେଶ୍ୱରଦେବ ତାଙ୍କର ପ୍ରଥମ ସେନାପତି ଯଶୋରାଜଦେବଙ୍କୁ ପଠାଇ ସମଗ୍ର କୋଶଳକୁ ଜୟକରିଥିଲେ । ଇତିହାସ ପୃଷ୍ଠାରୁ ଜଣାପଡ଼େଯେ ଯଶୋରାଜଦେବ ସମ୍ବଲପୁରରେ ସର୍ବ ପ୍ରଥମେ ତାଙ୍କର ରାଜଧାନୀ ସ୍ଥାପନକରି ତେଲୁଗୁ ଚୋଡ ବଂଶର ରାଜତ୍ୱ ପ୍ରତିଷ୍ଠା କରିଥିଲେ ।୧୦୨। ଏହି ଶତାବ୍ଦୀରେ ସେ ଏହିଅଞ୍ଚଳର କାଳଚକ୍ରତନ୍ତ୍ରରେ ଦୀକ୍ଷିତହୋଇ ଧନକୋଶଠାରେ ପ୍ରଥମେ କାଳଚକ୍ରତନ୍ତ୍ରର ମହାମଣ୍ଡଳଗୃହ କରିଥିଲେ ।୧୦୩। ସମ୍ବଲପୁରର ଅନତିଦୂରରେ ଥିବା ଧନକୌଡ଼ା ଅଞ୍ଚଳରେ ବର୍ତ୍ତମାନ ସୁଦ୍ଧା ଏକ ମଣ୍ଡଳାକାର ଗୃହର ଭଗ୍ନାବଶେଷ ରହିଛି ।୧୦୪। ବିଗତ ଇତିହାସର ଲେଖକ ମାନେ ସମ୍ବଳକକୁ ଯାତଭେଇରେ ନିର୍ଦ୍ଧାରିତ କରୁଥିଲେ ହେଁ, ଓଡ଼ିଶାର ସୋମବଂଶୀ ରାଜାମାନଙ୍କର ତାମ୍ରଶାସନରେ ସମ୍ବଳବାଦୀ ମଣ୍ଡଳ ଓ ସମ୍ବଳକ

Digitized by srujanika@gmail.com

ନାମୋଲ୍ଲେଖ ଥିବାରୁ ଓ ସର୍ବୋପରି ସେହି ଅଞ୍ଚଳର ଭୂରୂପ ବିବରଣରେ ଶଙ୍ଖପତି ସମ୍ବଲ-ପୁର ଅଞ୍ଚଳରେ ଥିବା କେତୋଟି ଗ୍ରାମର ନାମୋଲ୍ଲେଖ ଥିବାରୁ ଏ ଅଞ୍ଚଳକୁହିଁ ଯେ ଯୁଗର କାଳଚକ୍ର ତନ୍ତ୍ରର ଆଦିପୀଠବୋଲି ଓଡ଼ିଶାର ଐତିହାସିକ ମାନେ ଗ୍ରହଣ କରିଛନ୍ତି ।୧୦୫। ବେଲଖଣ୍ଡି ଗଜପଦରେ ବେଲେଶ୍ୱର ମନ୍ଦିର ହତାରୁ ମିଳିଥିବା ସପ୍ତମାତୃକା ମୂର୍ତ୍ତୀ, ତାନ୍ତ୍ରିକ ବୌଦ୍ଧଧର୍ମର ବଜ୍ରଯୋଗିନୀମୂର୍ତ୍ତି ଓ ସର୍ବୋପରି କଳାହାଣ୍ଡି ଜିଲ୍ଲାର ଅସୁରଗଡ଼ ଅଞ୍ଚଳରୁ ମିଳିଥିବା କୁରୁକୁଲ୍ଲାମୂର୍ତ୍ତୀରୁ ସ୍ପଷ୍ଟଜଣାପଡୁଛିଯେ, କଳାହାଣ୍ଡି ଅଞ୍ଚଳ ତୈତିରିକ ଜନପଦର ଚଉଷଠିଯୋଗିନୀ ଓ ସପ୍ତମାତୃକା ଉପାସନାର ଧାରା ସହିତ ସମତାଳଦେଇ ଏକ ବଳିଷ୍ଠ ଶାକ୍ତପୀଠ ଭାବେ ଆତ୍ମପ୍ରକାଶ ଲାଭକରିଥିଲା । ତିବ୍ବତୀୟ ତନ୍ତ୍ରର କାଉଁରି ମଣ୍ଡଳ ଉଡ୍ଡୀୟାନରେ ଅବସ୍ଥିତଥିଲା ବୋଲି ତିବ୍ବତୀୟ ଐତିହାସିକ ମାନେ ଲେଖିଛନ୍ତି ।୧୦୬। ଏହି ଉଡ୍ଡୀୟାନ ଏକ ସାମ୍ରାଜ୍ୟଥିଲା । ଓଡ଼ିଶା ଇତିହାସର ବିଭିନ୍ନ ପର୍ଯ୍ୟାୟରେ ବିଭିନ୍ନ ରୂପରେ ଏହାର ଭୌଗୋଳିକ ଅବସ୍ଥିତି ନିରୂପିତ ହୋଇ-ଥିଲେ ହେଁ ବିରଜାପୀଠରୁ ଆରମ୍ଭକରି କଳାହାଣ୍ଡି ଜିଲ୍ଲା ପର୍ଯ୍ୟନ୍ତ ଓ ପାଟଣାଗଡ଼ ସମ୍ବଲ-ପୁର ଜିଲ୍ଲାକୁ ଅନ୍ତର୍ଭୁକ୍ତ କରି ଏହି ରାଜ୍ୟହିଁ ପ୍ରାଚୀନ ଉଡ୍ଡୀୟାନ ସାମ୍ରାଜ୍ୟ ରୂପେ କଥିତ ଥିଲା ।୧୦୭। ଏହି ପ୍ରାଚୀନ ଉଡ୍ଡୀୟାନ ଜନପଦ ଅନେକ ଗୁଡ଼ିଏ ଅଞ୍ଚଳରେ ବିଭକ୍ତ ହୋଇଥିଲା । ଏହି ଅଞ୍ଚଳ ଗୁଡ଼ିକୁ 'ମଣ୍ଡଳ' ବୋଲି କୁହାଯାଉଥିଲା ଏହି ମଣ୍ଡଳ ଗୁଡ଼ିକ ଅଧୀନରେ ଅନେକ ଗ୍ରାମ ଥିବାର ଜଣାଯାଏ ।୧୦୮। ଏବେ ମଧ୍ୟ ବଲାଙ୍ଗୀର ଜିଲ୍ଲାରେ ମଣ୍ଡଳ ନାମରେ ଏକ 'ନିର୍ଦ୍ଦିଷ୍ଟ' ଗ୍ରାମଟିଏ ରହିଛି ।୧୦୯। ତିବ୍ବତୀୟ ସାହିତ୍ୟର କାଉଁରୀମଣ୍ଡଳ ସମ୍ଭବତଃ ଖଡ଼ିଆଳ ଅଞ୍ଚଳ ବ୍ୟତିତ ଆଉ କିଛି ନୁହେଁ । ଚୈତନ୍ୟଦାସଙ୍କର ନିର୍ଗୁଣ ମାହାତ୍ମ୍ୟ ରେ ବଡମୂଳ ଅଞ୍ଚଳକୁ କେନ୍ଦ୍ରକରି ଓ ଖଡ଼ିଆଳକୁ ଯୁକ୍ତକରି ଚିହ୍ନିତ ହେଉଥିବା କାଉଁରି ପାଟଣାହିଁ ହେଉଛି ତିବ୍ବତୀୟ କାଉଁରୀମଣ୍ଡଳର ପରବର୍ତ୍ତୀ ରୂପ ।୧୧୦। ସୋମବଂଶର ଶେଷରଜା କର୍ଣ୍ଣଦେବଙ୍କୁ ପରାସ୍ତ କରି ଚୋଡ଼ଗଙ୍ଗ-ଦେବ କୋଶଳ ଅଧିକାର କରିଥିଲେ ।୧୧୧। କର୍ଣ୍ଣଦେବ ୧୧୧୦ ଖ୍ରୀଷ୍ଟାବ୍ଦରେ ପରାସ୍ତ ହୋଇଥିଲେ ଓ ଏହି ବିଜୟର ଫଳ ସ୍ୱରୂପ ଚୋଡଗଙ୍ଗ ନିଜକୁ 'ତ୍ରିକଳିଙ୍ଗାଧିପତି' ନାମରେ ଘୋଷଣା କରିଥିଲେ ।୧୧୨। ଉତ୍କଳ ଓ ତ୍ରିକଳିଙ୍ଗର ଦଖଲପରେ ଚୋଡ଼ଗଙ୍ଗଦେବ ଛିନ୍ଦକ ନାଗମାନଙ୍କୁ ମଧ୍ୟ ପରାସ୍ତ କରିଥିଲେ । ଫଳରେ ଉତ୍ତର କଳାହାଣ୍ଡି ଓ ଦକ୍ଷିଣ କଳାହାଣ୍ଡି ଉଭୟ ଏହାଙ୍କ ଶାସନାଧୀନହେଲା । ଶାଳିବାହାନ ଶକାବ୍ଦ ୧୬୬୬ରେ ଲିଖିତ ଏକ ପୋଥିମାଦଳା ଯାହାକି କଳାହାଣ୍ଡି ଜିଲ୍ଲାର ଯୁବରାଜ ଗ୍ରାମର ଭୂପାଳ-ଦେବଙ୍କ ଘରୁ ମିଳିଅଛି ତହିଁରେ ଚୋଡଗଙ୍ଗଙ୍କୁ ଚୁଡଙ୍ଗଦେବ ହିସାବରେ ଓ ସୋମବଂଶୀ ନରପତି କର୍ଣ୍ଣଦେବଙ୍କୁ କେଶରୀ ବଂଶର ସୁବର୍ଣ୍ଣ କେଶରୀ ଭାବରେ ବର୍ଣ୍ଣିତ କରଯାଇଛି ।୧୧୩। ଏହି ମାଦଳାରେ ଚୁଡ଼ଙ୍ଗଦେବଙ୍କୁ ଉତ୍କଳର ଏକାଧୀଶ୍ୱର ଛତ୍ରପତି ଭାବରେ ବର୍ଣ୍ଣନା

Digitized by srujanika@gmail.com

କରଯାଇ ସେ ବଙ୍ଗ, ମନ୍ଦର, ବିଲସ, ପୁର ଓ ରତନପୁର ରାଜ୍ୟ ଜୟ କରିଥିଲେ ବୋଲି ଉଲ୍ଲେଖ କରାଯାଇଛି । ଏହି ମାଦଳା ବର୍ଣ୍ଣିତ ତଥ୍ୟଗୁଡ଼ିକ କେତେକାଂଶରେ ଅଭ୍ରାନ୍ତଥିବାର ଜଣାପଡେ । ଅନନ୍ତବର୍ମା ଚୋଡଗଙ୍ଗଦେବ କର୍ଣ୍ଣଦେବଙ୍କୁ ପରାସ୍ତ କରାପରେ ଓ ଉତ୍କଳକୁ ଅଧିକାର କରାପରେ ମନ୍ଦାରରାଜ୍ୟର ରାଜାଙ୍କୁ ପରାସ୍ତ କରିଥିଲେ । ଏହି ମନ୍ଦାର ରାଜ୍ୟ ଆରମ୍ବାଗ ନାମରେ ମୁସଲମାନ ରାଜତ୍ୱରେ ପରିଚିତଥିଲା ପଶ୍ଚିମ ବଙ୍ଗର ହୁଗୁଳି ଜିଲ୍ଲାରେ ଏହି ରାଜ୍ୟ ଅଦ୍ୟାପି ମଧ୍ୟ ଅବସ୍ଥିତ ।୧୧୪। ଇତିହାସର ସ୍ୱୀକାର ଅନୁଯାୟୀ ଏହାପରେପରେ ଚୋଡ଼ ଗଙ୍ଗଦେବ ବଙ୍ଗ ଶାସନାଧୀନଥିବା ଦଣ୍ଡଭୁକ୍ତି ଅଞ୍ଚଳକୁ ଜୟ କରିଥିଲେ । ବିଳାସପୁର ଓ ରତନପୁର ଅଞ୍ଚଳରେ ରାଜତ୍ୱ କରୁଥିବା କଳଚୁରୀ ବଂଶର ରାଜାମାନଙ୍କୁ ପରାସ୍ତକରି ସେହିସମୟ ବଂଶର ନରପତି ମାନଙ୍କୁ ମଧ୍ୟ ପରାସ୍ତ କରିଥିଲେ ।୧୧୫। ବିଳାସପୁର ଓ ରତନପୁରର କଳଚୁରୀ ମାନଙ୍କ ସମ୍ପର୍କରେ ମତବ୍ୟକ୍ତ କରି ଐତିହାସିକ ଜିତାମିତ୍ର ପ୍ରସାଦ ସିଂହଦେଓ କହନ୍ତିଯେ,"୧୧୧୪ଖ୍ରୀଷ୍ଟାବ୍ଦରେ କାଳଚୁରୀରାଜା ରତ୍ନଦେବ ୧ମ ସମଗ୍ର ଦକ୍ଷିଣ କୋଶଳ ଜୟକରିଥିଲେ ଓ ରତ୍ନପୁରଠାରେ ନିଜର ରାଜଧାନୀ ସ୍ଥାପନ କରିଥିଲେ । ସେତେବେଳର ରତ୍ନପୁର ବର୍ତ୍ତମାନ ଅପଭ୍ରଂଶରେ ରତନପୁର ହୋଇଅଛି । ଏହି ରତନପୁର ଦୁର୍ଗଟି ବିଳାସପୁର ଜିଲ୍ଲାରେ ଅବସ୍ଥିତ ।" ।୧୧୬। ମାରଗୁଡ଼ା ଉପତ୍ୟକାରୁ ପ୍ରାପ୍ତ କାଳଚୁରୀ ମୁଦ୍ରା, କାଳଚୁରୀ ମନ୍ଦିର ନିର୍ମାଣ ଶୈଳୀ ଓ କାଳଚୁରୀ ରାଣୀମୂର୍ତ୍ତୀ ଇତ୍ୟାଦି ଗବେଷଣାକରି ଐତିହାସିକ ଶ୍ରୀ ସିଂହଦେଓ କଳାହାଣ୍ଡିର ମାରଗୁଡ଼ା ଉପତ୍ୟକାଟି ଏକ ସମୟରେ କାଳଚୁରୀ ରାଜାମାନଙ୍କର ଦକ୍ଷିଣ ରାଜଧାନୀଥିଲା ବୋଲି କହିଛନ୍ତି ।୧୧୭। କିନ୍ତୁ ଏହି ସମୟ ସହ ୧୧୧୦ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀଘଟଣାର ଅନେକ ଉପୁଜୁଥିବାରୁ ଏହି ମତକୁ ଗ୍ରହଣ କରିହୁଏ ନାହିଁ ।୧୧୮। କେବଳ ଏହି ମାଦଳାରେ ଚୋଡଗଙ୍ଗଙ୍କର ରାଜତ୍ୱର ସମୟ ସୀମାରେ ପାର୍ଥକ୍ୟ ପରିଲକ୍ଷିତ ହେଉଛି । ଚୋଡ଼ଗଙ୍ଗଙ୍କର ମୃତ୍ୟୁପରେ ତାଙ୍କ ପୁତ୍ର କାମାର୍ଣ୍ଣବ ରାଜତ୍ୱ କରିଥିଲେ । କାମାର୍ଣ୍ଣବଙ୍କୁ ଜଟେଶ୍ୱରଦେବ ଓ ସିଦ୍ଧେଶ୍ୱର ଦେବନାମରେ ମଧ୍ୟ ନାମିତକରାଯାଇଛି ଓ ଏହାଙ୍କରାଜତ୍ୱ୧୧୪୭ଖ୍ରୀଷ୍ଟାବ୍ଦରୁ୧୧୫୮ଖ୍ରୀ ମଧ୍ୟରେ ସୀମାବଦ୍ଧ ଥିବାର ଐତିହାସିକ ପ୍ରମାଣ ମିଳୁଛି।୧୧୯।ଯଦି ଓ ମାଦଳାରେ ସମୟ ସୀମାରେ ପାର୍ଥକ୍ୟ ପରିଲକ୍ଷିତ ହେଉଛି ତଥାପି ଐତିହାସିକ ତଥ୍ୟ ଦୃଷ୍ଟିକୋଣରୁ ଏହା ନିର୍ଭୁଲ ପ୍ରମାଣିତ ହେଉଛି । କାମାର୍ଣ୍ଣବଙ୍କର ମୃତ୍ୟୁପରେ ତାଙ୍କରଭାଇ ରାଘବ ରାଜେଶ୍ୱର ଉପାଧିଧାରଣ କରି ରାଜତ୍ୱ କରିଥିଲେ ।୧୨୦। ଉପଯୁକ୍ତ ମାଦଳାରେମଧ୍ୟ ଏହି ରାଘବଙ୍କୁ ରାଜେଶ୍ୱର ନାମରେ ନାମିତ କରାଯାଇଛି । ଏହି ମାଦଳା ଅନୁଯାୟୀ ରାଜେଶ୍ୱରଙ୍କ ପରେ ରାଜୁତି କରିଥିବା ଏକଜଟ ରାମଚନ୍ଦ୍ର ଦେବଙ୍କ ବିଷୟରେ ଇତିହାସ କୌଣସି ତଥ୍ୟ ପ୍ରଦାନକରି ପାରୁନାହିଁ । ଯେହେତୁ ଅଭିଲେଖିକ ସାକ୍ଷ୍ୟଦୃଷ୍ଟିକୋଣରୁ ଏପରି କୌଣସି ରାଜାଙ୍କର ନାମ ମିଳୁନାହିଁ ତେଣୁ

Digitized by srujanika@gmail.com

ଏକଜଟ ରାମଚନ୍ଦ୍ରଦେବଙ୍କର ନାମୋଲ୍ଲେଖ ଓ ତାଙ୍କ ସମ୍ବନ୍ଧୀୟ ବିବରଣୀକୁ ମାଦଳା ଲେଖକଙ୍କର ଭ୍ରାନ୍ତିବୋଲି ଧରାଯାଇପାରେ । ଏକଜଟ ରାମଚନ୍ଦ୍ର ଦେବଙ୍କର ପରେ ରାଜରାଜେଶ୍ୱର ଦେବ ରାଜୁତି କରିଥିବା କଥା ଏଥିରେ ଉଲ୍ଲେଖ କରାଯାଇଛି । ଏହି ରାଜ-ରାଜେଶ୍ୱରଦେବଙ୍କୁ ରାଜରାଜ ୨ୟ ଭାବରେ ଗ୍ରହଣ କରାଯାଇପାରେ ।୧୨୧। ଏହିଁରାଜା ରାଘବଙ୍କର ମୃତ୍ୟୁପରେ ସିଂହାସନ ଆରୋହଣ କରିଥିଲେ ଓ ଭୁବନେଶ୍ୱରରେ ମେଘେ-ଶ୍ୱର ଶିବମନ୍ଦିର ନିର୍ମାଣ କରାଇଥିଲେ ।୧୨୨। ମେଘେଶ୍ୱର ଶିବ ମନ୍ଦିରର ଏକ ଶିଳାଲି-ଲେଖରୁ ଜଣାପଡେଯେ, ସମ୍ପୂର୍ଣ୍ଣ କୋଶଳରାଜ୍ୟ ରାଜରାଜଙ୍କର ଅଧିନରେଥିଲା ।୧୨୩। ରାଜରାଜଦେବ ୨ୟ ଙ୍କପରେ ମଦନରାଜଦେବ ବା ଅନଙ୍ଗଭୀମଦେବ ୨ୟ ରାଜତ୍ୱ କରି-ଥିଲେ ।୧୨୪। ଏହି ମଦନଦେବ ମାଦଳାର ବିବରଣୀ ଅନୁସାରେ ଐତିହାସିକ ପ୍ରମାଣ-ସିଦ୍ଧମତପରି ୪୦ ବର୍ଷ ରାଜୁତିକରିନଥିଲେ ସୁଦ୍ଧା, ସେ ଯେ ଏହିଂଶରଜଣେ ରାଜାଥିଲେ ଏହା ଇତିହାସ ପୃଷ୍ଠାରୁ ଓ ଏହି ମାଦଳା ପୃଷ୍ଠାରୁ ଜଣାପଡୁଥିବାରୁ ମାଦଳାର ଐତିହା-ସିକତା ପ୍ରମାଣ ସିଦ୍ଧ ବୋଲି କଣ୍ଠିତ ଭାବେ ଗ୍ରହଣ କରାଯାଇପାରେ । ମାଦଳାରେ ପୁଣି ଐତିହାସିକ କ୍ରମରେ ଆସୁଥିବା ରାଜରାଜଦେବ ୩ୟ ଙ୍କର ନାମୋଲ୍ଲେଖ ମିଳେ-ନାହିଁ, ଏହାକୁ ମାଦଳା ଲେଖକଙ୍କର ଏକଭ୍ରାନ୍ତି ଭାବରେ ଗ୍ରହଣ କରାଯାଇପାରେ ।୧୨୫। ମାଦଳା ଲେଖକ ତାଙ୍କର ପୁସ୍ତକରେ ଅନଙ୍ଗଭୀମଦେବଙ୍କୁ ଏକ ଶକ୍ତିଶାଳୀ ରାଜାଭାବେ ଗ୍ରହଣ କରିଛନ୍ତି । ଏହାଙ୍କର ରାଜତ୍ୱ ୨୮ ବର୍ଷ ବୋଲି ମାଦଳାରେ ଲିଖିତ ଅଛି । ଓଡ଼ିଶା ଇତିହାସ ମଧ୍ୟ ନିର୍ବିବାଦୀୟ ଭାବେ ଅନଙ୍ଗଭୀମଦେବ ୩ୟ ୨୮ ବର୍ଷ ରାଜତ୍ୱ କରିଥିବା କଥା ଲେଖନ୍ତି ।୧୨୬।

ବଙ୍ଗଳାର ରାଜା ଲକ୍ଷ୍ମଣ ସେନଙ୍କୁ ମୁସଲମାନମାନେ ଅନେକ ପୀଡ଼ା ଦେବାରୁ ସେ ଅନଙ୍ଗ ଭୀମଦେବ ୩ୟଙ୍କର ଶରଣାପନ୍ନ ହୋଇଥିଲେ ଏହି ତଥ୍ୟ ଐତିହାସିକ ପ୍ରମାଣ ସିଦ୍ଧ ଓ ଏଥିରେ ସନ୍ଦେହର ଅବକାଶ ନାହିଁ । ୧୨୭। ଅନଙ୍ଗଭୀମଦେବ ୩ୟଙ୍କ ପରେ ପ୍ରତାପ-ଭୀମଦେବଙ୍କର ବର୍ଣ୍ଣନା ଏହି ମାଦଳାରେ ରହିଛି । ଏହି ପ୍ରତାପଭୀମଦେବଙ୍କର କନ୍ୟାର ନାମ କୌଶଲ୍ୟା । ବୋଧହୁଏ ଏହି ପ୍ରତାପଭୀମଦେବଙ୍କୁ ଗଙ୍ଗେଶ୍ୱର ଭାବେ ଗ୍ରହଣ କରି ଓ ମାଦଳାପାଞ୍ଜି ବର୍ଣ୍ଣିତ କେତୋଟି ମିଥ୍ୟା ବିଷୟକୁ ଗ୍ରହଣ କରି ରାଧାନାଥ ତାଙ୍କର ପାର୍ବତୀକାବ୍ୟ ରଚନା କରିଛନ୍ତି । ଓଡ଼ିଶା ଇତିହାସ, ଅନଙ୍ଗଭୀମଦେବ ୩ୟଙ୍କର ପ୍ରତାପ-ଭୀମଦେବ ନାମରେ କୌଣସି ପୁତ୍ର ଥିବାର ଅସ୍ୱୀକାର କରନ୍ତି । ଇତିହାସ ମତରେ ଅନଙ୍ଗଭୀମ ଦେବଙ୍କର ଆଶୁ ଉତ୍ତରାଧିକାରୀ ଥିଲେ ଲାଙ୍ଗୁଳା ନରସିଂହ ଦେବ । (୧୨୮) ଏହା ମଧ୍ୟ ଏହି ମାଦଳା ଦ୍ୱାରା ସ୍ୱୀକୃତ । ଏହି ଲାଙ୍ଗୁଳା ନରସିଂହ ଦେବ ଇତିହାସରେ ନରସିଂହ ଦେବ ୧ମ ନାମରେ ପରିଚିତ । (୧୨୯) ଏହାଙ୍କ ରାଜତ୍ୱକାଳ ୧୨୩୮ ରୁ ୧୨୬୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ବୋଲି ଇତିହାସ ନିରୂପଣ କରିଛି । (୧୩୦) ମାଦଳାରେ

Digitized by srujanika@gmail.com

ସମୟ ସୀମାରେ ପାର୍ଥକ୍ୟ ଥିଲେହେଁ ଆନ୍ଧ୍ର, ମହାରଷ୍ଟ୍ର କଳବର୍ଣ୍ଣ ଓ ଚୌର୍ଣ୍ଣନ ବିଜେତା ରୂପରେ ରହିଥିବା ନରସିଂହ ଦେବଙ୍କର ବର୍ଣ୍ଣନା ଇତିହାସ ପ୍ରମାଣିକ ତଥ୍ୟ ସହିତ ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ରକ୍ଷା କରିଛି । [୧୩୧] ମାଦଳାରେ ନରସିଂହ ଦେବ ୧ମଙ୍କୁ ୩୬ ବର୍ଷ ଶାସନ କରିଥିଲେ ବୋଲି ଉଲ୍ଲେଖ କରଯାଇଛି । ମାତ୍ର ଐତିହାସିକ ତଥ୍ୟ ଦୃଷ୍ଟିକୋଣରୁ ସେ ୨୬ ବର୍ଷ ରାଜତ୍ୱ କରିଥିଲେ । [୧୩୨] ଏହି ଲାଙ୍ଗୁଳା ନରସିଂହ ଦେବ ୧୨୪୬ ସାଲରେ କୋଣାର୍କମନ୍ଦିର ନିର୍ମାଣ କରିଥିଲେ ବୋଲି ମାଦଳାରେ ଉଲ୍ଲେଖ ରହିଛି । ଇତିହାସ ମତରେ ମଧ୍ୟ କୋଣାର୍କ ମନ୍ଦିର ୧୨୪୬ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା ଓ ନରସିଂହ ଦେବ ୧୨୩୮ ରୁ ୧୨୬୪ ଯାଏଁ ରାଜତି କରିଥିଲେ ଅତଏବ ମାଦଳାରେ ନରସିଂହ ଦେବ ୧ମଙ୍କ ଉପରେ ଦିଆଯାଇଥିବା ବିବରଣୀର ପୂର୍ଣ୍ଣ ଐତିହାସିକତା ରହିଛି । [୧୩୩] ନରସିଂହ ଦେବଙ୍କ ପରେ ମହାଭାନୁ ଦେବ ରାଜତ୍ୱ କରିଥିଲେ ସେ ନରସିଂହ ଦେବଙ୍କର ରାଣୀ ସୀତାଦେବୀଙ୍କର ପୁତ୍ରଥିଲେ । (୧୩୪) ମାଦଳା ଅନୁସାରେ ଭାନୁଦେବ ୨୫ ବର୍ଷ ରାଜତ୍ୱ କରିଥିବା କଥା ଉଲ୍ଲେଖ ରହିଛି । ଇତିହାସ ମତରେ ସେ କିନ୍ତୁ ୧୫ ବର୍ଷ ରାଜତ୍ୱ କରିଥିଲେ । [୧୩୫] ଭାନୁ ଦେବଙ୍କ ପରେ ତାଙ୍କ ପୁତ୍ର ନରସିଂହ ଦେବ ୨ୟ ରାଜତ୍ୱ କରିଥିଲେ । ଶ୍ରୀକାକୁଲମ ଅଭିଲେଖରୁ ଜଣାପଡେ ଯେ ନରହରି ତୀର୍ଥଙ୍କର ପ୍ରଯତ୍ନରେ ସେ ଶ୍ରୀକାକୁଲମରେ ନୃସିଂହ ମନ୍ଦିର ନିର୍ମାଣ କରିଥିଲେ । (୧୩୬) ଶ୍ରୀକାକୁଳମ୍ ଅଭିଲେଖ ଗୁଡ଼ିକରେ ତାଙ୍କୁ ବର୍ଦ୍ଧିଭାନୁ ଦେବ ନାମରେ ନାମିତ କରଯାଇଛି । [୧୩୭] ଏହି ବର୍ଦ୍ଧିଭାନୁ ଦେବ ନାମଟି ମାଦଳାରେ ଥିବା ହେତୁ ମାଦଳାର ଐତିହାସିକତା ଉପରେ ସନ୍ଦେହ କରଯାଇ ନପାରେ । କିନ୍ତୁ ମାଦଳାକାର ବର୍ଦ୍ଧିଭାନୁ ଦେବ ଓ ୨ୟ ନୃସିଂହ ଦେବଙ୍କୁ ପୃଥକ୍ ବ୍ୟକ୍ତି ଭାବରେ ଗ୍ରହଣ କରିଥିବା ହେତୁ ଐତିହାସିକ କ୍ରମରେ ଭ୍ରାନ୍ତି ପ୍ରବେଶ କରିଥିବାର ଜଣାପଡେ । ମାଦଳା ବର୍ଣ୍ଣିତ ପରବର୍ତ୍ତୀ ଗଙ୍ଗ ନରପତି ଶଙ୍କର ଭାନୁ ଦେବ ଓ ଚିଲିକା ଭାନୁଦେବଙ୍କର ଐତିହାସିକତା ସମ୍ପୂର୍ଣ୍ଣ ଭାବେ ରହିଛି । [୧୩୮] ସେମାନେ ଇତିହାସରେ ଭାନୁଦେବ ୨ୟ ଓ ଭାନୁଦେବ ୩ୟ ନାମରେ ନାମିତ ହୋଇଛନ୍ତି [୧୩୯] ଗଙ୍ଗବଂଶର ନରପତିମାନଙ୍କ ମଧ୍ୟରେ ଶେଷରାଜା ଜଗନ୍ନାଥ ନାରାୟଣ ଦେବଙ୍କ ବିଷୟରେ କୌଣସି ପ୍ରମାଣିକ ତଥ୍ୟ ଇତିହାସରୁ ମିଳୁନାହିଁ । ମାତ୍ର ଗଙ୍ଗବଂଶର ଇତିହାସ ସ୍ୱୀକୃତି ଶେଷ ନରପତି ଚତୁର୍ଥ ଭାନୁଦେବ ଥିବା ହେତୁ । [୧୪୦] ଓ ଗଙ୍ଗବଂଶାନୁ ଚରିତରେ ତାଙ୍କୁ ଜଗନ୍ନାଥ ନାରାୟଣ ପାଦଭକ୍ତ ନାମରେ ନାମିତ କରଯାଇଥିବା ହେତୁ ବୋଧହୁଏ [୧୪୧] ମାଦଳାର ଲେଖକ ତାଙ୍କୁ ଜଗନ୍ନାଥ ନାରାୟଣ ଦେବ ନାମରେ ଗ୍ରହଣ କରିଥିବାର ଅନୁମେୟ । [୧୪୨]

ଗଙ୍ଗ ରାଜତ୍ୱପରେ ସୂର୍ଯ୍ୟବଂଶ ରାଜତ୍ୱର ପ୍ରାରମ୍ଭ ହେଲା । କପିଳେନ୍ଦ୍ର ଦେବଙ୍କ ବିଷୟରେ ଅନେକ କିମ୍ବଦନ୍ତୀ ଥିଲେହେଁ ଏବଂ ମାଦଳାପାଞ୍ଜିରେ ତାଙ୍କୁ ଜଣେ ଗୋପାଳ [୧୪୩]

Digitized by srujanika@gmail.com

ଅନ୍ୟତ୍ର ଜଣେ ଭିଯ୍ୟକ [ ୪୪ ] ଓ କେତେକଙ୍କ ଦ୍ୱାରା ତାଙ୍କୁ ଜଣେ ଘୋର [୧୪୫]
ଭାବରେ ବର୍ଣ୍ଣନା କରାଯାଇ ଥିଲେହେଁ ଅଭିଲେଖିକ ପ୍ରମାଣରୁ ଜଣାପଡେ ଯେ ସେ,
ନୀଚବଂଶଜାତ ନଥିଲେ । [୧୪୬] ଐତିହାସିକ ସମୀକ୍ଷା ଦୃଷ୍ଟିକୋଣରୁ ତାଙ୍କୁ ଜଣେ
ରାଜବଂଶଜ ସନ୍ତାନ ଭାବରେ ଗ୍ରହଣ କରାଯାଇ ପାରେ, ତାଙ୍କ ପିତାମହ ଗଙ୍ଗ ରାଜତ୍ୱ
କାଳରେ ଜଣେ ନାୟକ ଥିଲେ । [୧୪୭] ତାଙ୍କର ବାପା ଯେ ଶେଷର ଗଙ୍ଗବଂଶର
ଶେଷ ନରପତି ୪ର୍ଥ ଭାନୁଦେବଙ୍କର ସମୟରେ ମହାରାଜ ଓ ନୃପ ପଦବୀରେ ଭୂଷିତ
ହୋଇଥିଲେ । [୧୪୮] ଏହି କପିଳେନ୍ଦ୍ର ଦେବ ଗଙ୍ଗ ରାଜତ୍ୱ ଅବସାନର ସୁଯୋଗ
ନେଇ କେତେକ ମୁଷ୍ଟିମେୟ ସାମରୀକ କର୍ମଚାରୀଙ୍କର ସହାୟତାରେ ଉତ୍କଳ ରାଜ
ସିଂହାସନ ଅଧିକାର ଓ ଅଳଂକୃତ କରିଥିଲେ [୧୪୯] କପିଳେନ୍ଦ୍ର ଦେବଙ୍କ ପରେ
ପୁରୁଷୋତ୍ତମ ଦେବ ରାଜତ୍ୱ କରିଥିଲେ ମାତ୍ର କପିଳେନ୍ଦ୍ର ଦେବଙ୍କର ଜ୍ୟେଷ୍ଠପୁତ୍ର ଥିଲେ
ହମ୍ବୀର ଦେବ ବା କାହମ୍ବୀର । [୧୫୦] ପୁରୁଷୋତ୍ତମ ଦେବଙ୍କର ସିଂହାସନ ଆରୋ-
ହଣ ପରେ ହାମ୍ବୀର ଦେବ ଉତ୍କଳର ରାଜଶକ୍ତି ବିରୁଦ୍ଧରେ ବିଦ୍ରୋହ କରିଥିଲେ । [୧୫୧]
ଓ ତାଙ୍କୁ ଏହି ବିଦ୍ରୋହରେ କେତେକ ଆଦିବାସୀ ସାହାଯ୍ୟ କରିଥିଲେ ବୋଲି ଜଣା-
ପଡ଼ିଛି । [୧୫୨] ଐତିହାସିକ ସମୀକ୍ଷାମତେ କାଳ ହମ୍ବୀର ଦେବ ବିଜୟ ନଗରର
ରାଜଶକ୍ତିର ସାହାଯ୍ୟ ଭିକ୍ଷା କରିଥିଲେ ଏବଂ ବିଜୟ ନଗରର ବାହମନୀ ସୁଲତାନ
ମହମ୍ମଦ ସାହା ତାଙ୍କୁ ସାହାଯ୍ୟ କରିଥିଲେ ବୋଲି ଇତିହାସରୁ ଜଣାପଡ଼ିଛି । [୧୫୩]
ଏହି ସାହାଯ୍ୟ ଫଳରେ ହାମ୍ବୀର ଦେବ ପୁରୁଷୋତ୍ତମ ଦେବଙ୍କୁ ରାଜଗାଦୀରୁ ତଡ଼ି କିଛି
ଦିନ ପାଇଁ ଓଡ଼ିଶାର ରାଜା ହେଲେ କିନ୍ତୁ ୧୪୭୬ ଖ୍ରୀଷ୍ଟାବ୍ଦରେ ହମ୍ବୀର ଦେବଙ୍କ ବିରୁଦ୍ଧରେ
ପୁରୁଷୋତ୍ତମ ପୁଣି ଯୁଦ୍ଧଯାତ୍ରା କରିଥିବେ । (୧୫୪ ଏହି ଯୁଦ୍ଧଯାତ୍ରାରେ ହମ୍ବୀର ଦେବ
ପରାସ୍ତ ହୋଇଥିଲେ ଓ ସେ କଳାହାଣ୍ଡି ଓ ଖେମଡ଼ି ଅଞ୍ଚଳରେ କରଦରାଜ ରୂପେ ଅଭିଷେକ
ହୋଇଥିଲେ । (୧୫୫) କିମ୍ବଦନ୍ତୀ ଅନୁସାରେ କପିଳେନ୍ଦ୍ର ଦେବଙ୍କର ଅଠର ଜଣ ବୈଧ
ସନ୍ତାନ ଓ ପୁରୁଷୋତ୍ତମ ତାଙ୍କର ଅବୈଧ ସନ୍ତାନ ଥିଲେ ବୋଲି ଜଣାପଡ଼ିଛି । (୧୫୬
ମାଦଳାପାଞ୍ଜି ଅନୁସାରେ କପିଳେନ୍ଦ୍ର ଦେବଙ୍କର ତିନି ପୁଅଙ୍କର ନାମ ଜଣାପଡ଼ିଛି (୧୫୭)
ସେମାନେ ହେଲେ ହମ୍ବୀର, ପୁରୁଷୋତ୍ତମ ଓ ମଧୁସୂଦନ ରାଏ । ଯେହେତୁ ଆଲୋଚିତ
ମାଦଳାରେ କପିଳେନ୍ଦ୍ର ଦେବଙ୍କର ଅଠରଜଣ ପୁଅଙ୍କର ନାମ ସ୍ପଷ୍ଟଭାବେ ଉଲ୍ଲେଖ କରା-
ଯାଇଛି ଏବଂ କିମ୍ବଦନ୍ତୀରୁ ମିଳିଥିବା ସତ୍ୟକୁ ସମର୍ଥନ କରୁଛି ଏହି କାରଣରୁ ମାଦଳାର
ଐତିହାସିକତାକୁ ସମ୍ପୂର୍ଣ୍ଣଭାବେ ଖଣ୍ଡନ କରାଯାଇ ନପାରେ । ଖୀକାକୁଲମ୍ ଅଞ୍ଚଳରୁ ମିଳି-
ଥିବା କପିଳେନ୍ଦ୍ର ଦେବଙ୍କର ଏକ ତାମ୍ର ଶାସନରେ କପିଳେନ୍ଦ୍ର ଦେବଙ୍କର ଅନେକ ପୁତ୍ର
ଥିବା କଥା ଲିଖିତ ହୋଇଛି ଓ ସେ ଅନେକ ପୁତ୍ରଙ୍କ ଭିତରେ କାଇହାମ୍ବୀର, କଲ୍ୟାଣ
ହାମ୍ବୀର ଓ ଜୟ ହାମ୍ବୀରଙ୍କ ନାମ ଉଲ୍ଲେଖ ରହିଛି (୧୫୮) ଯେହେତୁ ଆଲୋଚ୍ୟ ମାଦଳାରେ

Digitized by srujanika@gmail.com

ପ୍ରଦତ୍ତ ହୋଇଥିବା କପିଳେନ୍ଦ୍ରଙ୍କର ପୁତ୍ରମାନଙ୍କର ବିବରଣୀରେ କାଳାହମ୍ବୀର ଓ କଲ୍ୟାଣ ହାମ୍ବୀର ଇତ୍ୟାଦିଙ୍କ ନାମରେ ଏହି ଦୃଷ୍ଟିକୋଣରୁ ଏହାର ଐତିହାସିକତା ଥିବାର ପୂର୍ଣ୍ଣ ବିଶ୍ୱାସ । ପୁରୁଷୋତ୍ତମ ଦେବଙ୍କ ଦ୍ୱାରା ପରାସ୍ତ ହେବାପରେ (୧୪୭୬ କାଳାହମ୍ବୀର ଖେମୁଣ୍ଡି ଅଞ୍ଚଳରେ ଶବର ରାଜାଙ୍କୁ ପରାସ୍ତ କରି ଏହି ଅଞ୍ଚଳକୁ ଦଖଲ କରିଥିବାର ଜଣାପଡେ ସେ ଏହି ଅଞ୍ଚଳର ଦେବୀ ବାଙ୍କେଶ୍ୱରୀଙ୍କୁ ପୂଜାକରି ଏହି ଅଞ୍ଚଳର ଲୋକ ସମାଜର ସମର୍ଥନ ଲାଭ କରିଥିବାର ଜଣାପଡେ [୧୫୯] ଖେମୁଣ୍ଡି ରାଜ୍ୟରୁ କାଳାହାମ୍ବୀର କଳାହାଣ୍ଡି ଜୟ କରିଥିବାର ଜଣାପଡେ ଓ ଏହି କ୍ରମରେ ସେ କଳାହାଣ୍ଡିର ମାଣିକେ-ଶ୍ୱରୀ ଦେବୀଙ୍କୁ ପୂଜା କରି ସମଗ୍ର ଦକ୍ଷିଣ କୋଶଳ ଜୟ କରିଥିବାର ଅବଧାରଣା ହୋଇଥାଏ । [୧୬୦] ମାଦଳାରେ ଏହି ପ୍ରକାର ସବୁ ବିବରଣୀ ଥିବାରୁ ମାଦଳାର ଐତିହାସିକତା ନିର୍ବିବାଦରେ ସ୍ୱୀକାର କରାଯାଇପାରେ । ଆଲୋଚିତ ମାଦଳା ଅନୁସାରେ କାଳାହାମ୍ବୀର କାରୁଣ୍ଡ ରାଜ୍ୟର କନ୍ଧରାଜାକୁ ପରାସ୍ତ କରି ସେ ଏହି ରାଜ୍ୟକୁ ଶାସନ କରୁଥିଲେ । ଏହି ଘଟଣାକୁ କେନ୍ଦ୍ରକରିହିଁ କଳାହାଣ୍ଡିର ନାମକରଣ ହୋଇଥିବା କଥା ମାଦଳାରେ କୁହାଯାଇଛି । କାଳାହାମ୍ବୀରଙ୍କ ରାଜତ୍ୱପରେ କଳାହାଣ୍ଡିରେ ଗଙ୍ଗବଂଶର ଯେଉଁ ନରପତିମାନେ ରାଜୁତି କରିଥିଲେ ସେମାନଙ୍କ ମଧ୍ୟରେ ନୃସିଂହ ରୁଦ୍ରଦେବ, ମଦନ ରୁଦ୍ରଦେବ, ନାରାୟଣ ରୁଦ୍ରଦେବ, ଅନନ୍ତ ରୁଦ୍ରଦେବ, ଜୟ ରୁଦ୍ରଦେବ, ନୃସିଂହ ଭାନୁଦେବ, ମଧୁକର୍ଣ୍ଣ ଦେବ, ମୃତ୍ୟୁଞ୍ଜୟ ଦେବ, ମାଧବ ଭାନୁଦେବ, ଚନ୍ଦ୍ରମୌଳି ଭାନୁଦେବ, ସ୍ୱର୍ଣ୍ଣଲିଙ୍ଗ ଭାନୁଦେବ, ଶିବଲିଙ୍ଗ ଦେବ, ମୁକୁନ୍ଦଇନ୍ଦ୍ର ନାରାୟଣ ଦେବ, ଅନନ୍ତ ପଦ୍ମନାଭ-ଦେବ, ସୁର୍ବଜ୍ଞ ଜଗନ୍ନାଥ ନାରାୟଣଦେବ, ବୀର ପଦ୍ମନାଭଦେବ, ବୀର ପ୍ରତାପଦେବ, ଖୁଣ୍ଡା ନାରାୟଣ ଦେବ, ଇତ୍ୟାଦିଙ୍କର ନାମ ଉଲ୍ଲେଖଯୋଗ୍ୟ । (୧୬୧) କାଳାହାମ୍ବୀରଙ୍କ ସମୟରେ ଦକ୍ଷିଣ କଳାହାଣ୍ଡିରେ କଲ୍ୟାଣ ହାମ୍ବୀର ରାଜୁତି କରୁଥିଲେ । ଆଲୋଚ୍ୟ ମାଦଳାରେ ଦକ୍ଷିଣ କଳାହାଣ୍ଡିର ଅଧୀଶ୍ୱର ରୂପରେ କଲ୍ୟାଣ ହାମ୍ବୀର ୧୪୭୬ ଖ୍ରୀଷ୍ଟା-ବ୍ଦରେ ସିଂହାସନ ଆରୋହଣ କରିଥିଲେ ବୋଲି ଉଲ୍ଲେଖ ଅଛି । [୧୬୨] ଏହି କଲ୍ୟାଣ ହାମ୍ବୀରଙ୍କ ସମୟରୁ ଏକ ବଳିଷ୍ଠ ଶାକ୍ତ ସଂସ୍କୃତି କଳାହାଣ୍ଡିରେ ଗଢି ଉଠିଥିବାର ଅନୁ-ମେୟ । ବାଙ୍କା ପାଇକମାନେ ବସ୍ତର ରାଜ୍ୟ ଜୟକରି ସେଠାକାର ଲଙ୍କେଶ୍ୱରୀଙ୍କୁ କଳା-ହାଣ୍ଡିକୁ ନେଇ ଆସିଥିଲେ । (୧୬୩) ଏଠାରେ ପ୍ରସଙ୍ଗକ୍ରମେ ସ୍ପଷ୍ଟ ଉଲ୍ଲେଖ କରାଯାଇ ପାରେ ଯେ, କୁମାର ସୋମେଶ୍ୱର ଦେବଙ୍କର ସୋନପୁର ତାମ୍ର ଶାସନରେ ସାଂପ୍ରତିକ ସୋନପୁର ଅଞ୍ଚଳ ପଶ୍ଚିମଲଙ୍କା ଭାବରେ ବର୍ଣ୍ଣିତ । [୧୬୪] ଛିନ୍ଦକ ନାଗ ଓ ତେଲୁଗୁ ଚୋଡ ରାଜାମାନଙ୍କର ତାମ୍ର ଶାସନରେ ମଧ୍ୟ ସୋନପୁର ଲଙ୍କା ବର୍ତ୍ତକ ନଗରୀ ନାମରେ ପରିଚିତ । [୧୬୫] ଓଡ଼ିଶାର ଐତିହାସିକମାନେ ଓ ସମାଲୋଚକମାନେ ସୋନପୁରକୁ ତାନ୍ତ୍ରିକ ବୌଦ୍ଧ ଲଙ୍କା ନାମରେ ଗ୍ରହଣ କରିଛନ୍ତି । [୧୬୬] ଲଙ୍କେଶ୍ୱରୀଙ୍କର ନାମନୁ-

Digitized by srujanika@gmail.com

ସାରେ ଏ ଅଞ୍ଚଳର ନାମ ପଶ୍ଚିମ ଲଙ୍କାଥିଲା । ଏଠାରେ ସ୍ପଷ୍ଟ କରି ଦିଆଯାଇପାରେ ଯେ ଏହି ଲଙ୍କେଶ୍ୱରୀଙ୍କର ସମ୍ପର୍କ ରାମାୟଣ ବର୍ଣ୍ଣିତ ଲଙ୍କେଶ୍ୱରୀଙ୍କର ସହିତ ନାହିଁ । [୧୬୭] କିମ୍ବା ସୋନପୁରକୁ ରାମାୟଣ ବର୍ଣ୍ଣିତ ଲଙ୍କା ହିସାବରେ ଗ୍ରହଣ କରଯାଇ ନପାରେ ତାନ୍ତ୍ରିକ ବୌଦ୍ଧ ସାହିତ୍ୟରେ ତାନ୍ତ୍ରିକ ସାଧନା ପାଇଁ ଏକ ଉପପୀଠ ରୂପେ ପରିଗଣିତ ହୋଇଥିବା ତାନ୍ତ୍ରିକ ଲଂକାହିଁ ଏହି ସୋନପୁର ଥିଲା । ଛିନ୍ଦକ ନାଗରଜବଂଶର ନରପତି କୁମାର ସୋମେଶ୍ୱର ଦେବଙ୍କର ନିର୍ଦ୍ଦେଶକ୍ରମେ ତେଲୁଗୁ ଚୋଡ ବଂଶର ନରପତି ଯଶୋରାଜ ଦେବ ପ୍ରଥମ ଚକ୍ରକୋଟ ମଣ୍ଡଳରୁ ସୋନପୁର ଓ ସମ୍ବଲପୁର ଅଞ୍ଚଳକୁ ଦଖଲକରି କାଳକ୍ରମେ ସମଗ୍ର ଦକ୍ଷିଣ କୋଶଳକୁ ଅଧିକାର କରିଥିଲେ । (୧୬୮ ସମ୍ବଲପୁରରେହିଁ ଯଶୋରାଜ ଦେବ ସର୍ବପ୍ରଥମେ କାଳଚକ୍ର ତନ୍ତ୍ରରେ ଦୀକ୍ଷିତ ହୋଇଥିଲେ ବୋଲି ଅଧ୍ୟାପକ ଡକ୍ଟର ରାମପ୍ରସାଦ ମିଶ୍ର ଲଘୁକାଳଚକ୍ର ତନ୍ତ୍ରରାଜଟୀକା ବା ବିମଳପ୍ରଭାକୁ ଭିତ୍ତିକରି ନିର୍ବି-ବାଦରେ ପ୍ରମାଣ କରିଛନ୍ତି । ୧୬୯) ଅତଏବ ସୋନପୁର ଅଞ୍ଚଳରୁ ତେଲନଦୀ ଉପତ୍ୟ-କାର ଗତିପଥ ଦେଇ ଏହି ତାନ୍ତ୍ରିକ ବୌଦ୍ଧ ସଂସ୍କୃତିର ଲଙ୍କେଶ୍ୱରୀ ଉପାସନ ସମଗ୍ର ଦକ୍ଷିଣକୋଶଳରେ ପରିବ୍ୟାପ୍ତ ହୋଇଥିଲା । ଯଶୋରାଜ ଦେବ ତାଙ୍କର ଦିଗ୍‌ବିଜୟ କାଳରେ ଏହି ଅଞ୍ଚଳର ଲଙ୍କେଶ୍ୱରୀଙ୍କୁ ଚକ୍ରକୋଟ ମଣ୍ଡଳକୁ ନେଇ ଯାଇଥିବାର ପ୍ରମାଣ ମଧ୍ୟ ତେଲୁଗୁ ଚୋଡ ରାଜାମାନଙ୍କର ତାମ୍ର ଶାସନରେ ଦେଖିବାକୁ ମିଳେ । (୧୭୦) କଲ୍ୟାଣ ହାମ୍ବୀର ଦକ୍ଷିଣ କୋଶଳରେ ଏକ ବଳିଷ୍ଠ ଶାକ୍ତ ସଂସ୍କୃତିର ଭିତ୍ତି ସ୍ଥାପନ କରି ତାଂକର ପାଟକ ସୈନ୍ୟବାହିନୀଙ୍କୁ ବସ୍ତରରୁ ଲଂକେଶ୍ୱରୀ ଦେବୀଙ୍କୁ ଫେରାଇ ଆଣିବାକୁ ନିର୍ଦ୍ଦେଶ ଦେଇଥିଲେ ବୋଲି ଏହି ମାଦଳାରେ ଉଲ୍ଲେଖ କରଯାଇଛି ଏହି ଲଙ୍କେଶ୍ୱରୀଙ୍କୁ ବାଙ୍କା ପାଇକମାନେ ନେଇ ଆସୁଥିବା ସମୟରେ ଭୟରେ ହାତ୍‌ନଦୀରେ ପକାଇ ଦେଇ ଥିଲେ । କଲ୍ୟାଣ ହାମ୍ବୀର ଠାକୁରାଣୀଙ୍କୁ ନିମଜ୍ଜି ଆଣି ଜୋନାପାଟଣା ଅର୍ଥାତ୍ କଳାହାଣ୍ଡିର ଜୁନାଗଡଠାରେ ସ୍ଥାପନ କରିଥିଲେ ॥୧୭୧॥ ଏହି ଠାକୁରାଣୀଙ୍କର ନାମ ପରବର୍ତ୍ତୀକାଳରେ କନକଦୁର୍ଗା ନାମରେ ପ୍ରସିଦ୍ଧ ଲାଭକରି ବର୍ତ୍ତମାନ ସୁଦ୍ଧା ଜୁନାଗଡ଼ରେ ଦେବୀ ଲଂକେଶ୍ୱରୀ ସ୍ୱର୍ଣ୍ଣଦୁର୍ଗା ରୂପରେ ପୂଜିତା ହେଉଛନ୍ତି ॥୧୭୨॥ ଏଥିରୁ ସ୍ପଷ୍ଟଭାବରେ ଜଣାପଡେ ଯେ, ଓଡ଼ିଶା ଇତିହାସର ମଧ୍ୟଯୁଗର ପ୍ରଥମ ପର୍ଯ୍ୟାୟରୁ ଦକ୍ଷିଣ କୋଶଳରୁ ମହାନଦୀ ଉପତ୍ୟ କାରେ ଗଢି ଉଠିଥିବା ସହର ଏବଂ ଗ୍ରାମ ଗୁଡ଼ିକର ଓ ମହାନଦୀ ଉପତ୍ୟକାର ସହିତ ସଂଯୁକ୍ତ ହୋଇଥିବା ତେଲନଦୀ ଉପତ୍ୟକାର ସହର ଓ ଗ୍ରାମଗୁଡ଼ିକର ସାଂସ୍କୃତିକ ସମ୍ପର୍କ ରହିଥିଲା । ସୋନପୁର ଓ ସମ୍ବଲପୁର ଅଞ୍ଚଳର ସ୍ତମ୍ଭେଶ୍ୱରୀ ଉପାସନା କଳାହାଣ୍ଡି ଅଞ୍ଚଳରୁ ନିଆଯାଇଥିବା ବେଳେ କଳାହାଣ୍ଡି ଓ ବସ୍ତର ଅଞ୍ଚଳର ଲଙ୍କେଶ୍ୱରୀ ଉପାସନା ସୋନପୁର ଅଞ୍ଚଳରୁ ଗୃହିତ ହୋଇଥିଲ ।୧୭୩।: ସ୍ତମ୍ଭେଶ୍ୱରୀ, ଲଙ୍କେଶ୍ୱରୀ ଓ ମାଣିକେ-ଶ୍ୱରୀ ଇତ୍ୟାଦି ଉପାସନା ଏଅଞ୍ଚଳର ଆଦିବାସୀ ସଂସ୍କୃତିର କୋଳରେ ଗଢି ଉଠିଥିଲା

Digitized by srujanika@gmail.com

ବୋଲି ଇତିହାସ ବକ୍ଷରେ ନିର୍ବିବାଦୀୟ ପ୍ରମାଣମାନ ରହିଛି ।୧୭୪। କଲ୍ୟାଣ ହାମ୍ବୀର ତାଙ୍କର ରାଜଧାନୀରେ କନକଦୁର୍ଗା ସ୍ଥାପନକରି ୪୫ ବର୍ଷ ରାଜୁତି କରିଥିଲେ ବୋଲି ମାଦଳାରେ ଉଲ୍ଲେଖ ରହିଛି । ବର୍ତ୍ତମାନ ସୁଦ୍ଧା କଳାହାଣ୍ଡିର ଯୋଡ଼ାଘର ଓ ଜୟପାଟଣା ଅଞ୍ଚଳରେ କନକଦୁର୍ଗାଙ୍କର ଉପାସନା ଲୋକପ୍ରିୟତା ଲାଭକରିଥିବରୁ ଏହି ଶାକ୍ତ ସଂସ୍କୃତିକୁ ତଦାଥନ୍ତନ ରାଜ ସଂସ୍କୃତିର ଲୋକପ୍ରିୟ ଅବଶେଷ ଭାବରେ ଗ୍ରହଣ କରଯାଇପାରେ । କଲ୍ୟାଣ ହାମ୍ବୀରଙ୍କ ପରେ ଦକ୍ଷିଣ କଳାହାଣ୍ଡିରେ ହରିଚନ୍ଦନ ଶିବପ୍ରସାଦ ମହେନ୍ଦ୍ରଦେବ ରାଜତ୍ୱ କରିଥିଲେ । ସେ ଜୁନାଗଡ ବା ଜେନାଗଡ ଅଞ୍ଚଳରେ ବୁଢ଼ାରଜା ଦେବତା ସ୍ଥାପନ କରି ।୧୭୫। ପୂଜା କରିଥିଲେ । ବୁଢ଼ାରଜା କନ୍ଧମାନଙ୍କର ସର୍ବାଧୀଶ୍ୱର ଦେବତାରୂପରେ ପରିଚିତ । କନ୍ଧମାନଙ୍କର ଢ଼ାପଗୀତରେ ରହିଛି :—

ଜୁଆର ଗୋମା ବୁଢ଼ାରଜା କମେବୁଢ଼ା...............
ଝଙ୍କନ ରିମିଙ୍କ ଭତା ..................... ୧୭୬॥

ଏହି ବୁଢ଼ାରଜା କନ୍ଧସମ୍ପ୍ରତିର ବୁଢ଼ାପେନ୍ ନାମରେ ପରିଚିତବୋଲି ନିର୍ମଳକୁମାର ବୋଷ ତାଙ୍କର ଆଦିବାସୀ ସଂସ୍କୃତି ପୁସ୍ତକରେ ଉଲ୍ଲେଖ କରିଛନ୍ତି (୧୭୭) ପାଶ୍ଚାତ୍ୟ ପଣ୍ଡିତ ଭେରିଅର ଏଲଉଇନ୍ ସାହେବ ମଧ୍ୟ ତାଙ୍କର ଦି ଟ୍ରାଇବାଲ ମିଥ ଅଫ ଓଡ଼ିଶା' ଗ୍ରନ୍ଥରେ ଏହାକୁ ବୁରାପେନ୍‌ଭାବରେ ଉଲ୍ଲେଖ କରିଛନ୍ତି (୧୭୮) ହରିଚନ୍ଦନ ଶିବ ପ୍ରସାଦଙ୍କପରେ ରାମଚନ୍ଦ୍ର କଲ୍ୟାଣ ସିଂହଦେବ ଶାସନ କରିଥିଲେ (୧୭୯) ମାଦଳାର ବିବରଣୀରୁ ଜଣାପଡେ ଯେ ସେ ତାଙ୍କର ରାଜଧାନୀର ଚତୁଃପାର୍ଶ୍ୱରେ ଏକ ଗଡ଼ଖାଇ ନିର୍ମାଣ କରିଥିଲେ । ଭବାନୀପାଟଣାର ଚତୁଃପାର୍ଶ୍ୱରେ ଏକ ଗଡ଼ଖାଇର ସନ୍ଧାନପାଇ ସ୍ୱର୍ଗତଃ କେଦାରନାଥ ମହାପାତ୍ର ଗଙ୍ଗରାଜତ୍ୱ କାଳରେ ଭବାନୀପାଟଣା ଓଡ଼ିଶାର ଏକ ପ୍ରଣ.ସନିକ କେନ୍ଦ୍ରଥିଲାବୋଲି ବିଶ୍ୱାସକରନ୍ତି ବା ବୋଧହୁଏ ଏହି ରାମଚନ୍ଦ୍ର କଲ୍ୟାଣ ସିଂହଙ୍କ ସମୟରେ ଅର୍ଥାତ ପଞ୍ଚଦଶ ଶତାବ୍ଦୀ ବେଳକୁ ଭବାନୀପାଟଣାରେ ଏହି ଗଡ଼ଖାଇ ରହିଥିଲା ବୋଲି ବିଶ୍ୱାସ କରିବା ସମୀଚୀନ । କିନ୍ତୁ ଏହି ମତର ପ୍ରତିଷ୍ଠା ବେଳେ ଟିକିଏ ଐତିହାସିକମତ ଦ୍ୱନ୍ଦ୍ୱ ଆସି ଉପୁଜୁଛି । ମାଦଳାରେ ଜେନାପାଟଣା'ରେ ଗଡ଼ଖାଇଥିବାର ଉଲ୍ଲେଖ ରହିଛି । କେଦାର ମହାପାତ୍ରଙ୍କ ମତଟିକୁ ସତ୍ୟ ସମର୍ଥନ କଲେ ଯେ, ଏହି ରାଜାଙ୍କ ସମୟରେ ଜୁନାଗଡରୁ ଭବାନୀପାଟଣାକୁ ରାଜଧାନୀ ପରିବର୍ତ୍ତନ ହୋଇସାରିଥିଲା ବୋଲି ଗ୍ରହଣ କରିବାକୁ ପଡ଼ିବ ମାଦଳା ଓ ମହାପାତ୍ରଙ୍କ ଦୁଇମତକୁ ସ୍ୱୀକାରକଲେ ଭବାନୀପାଟଣାହିଁ ଜେନାପାଟଣା ବୋଲି ସ୍ୱୀକାର କରିବାକୁ ହେବ । ଅବଶ୍ୟ ଭବାନୀପାଟଣା ସହର ଭିତରେ ମଧ୍ୟ ଜେନାଖାଇ ବୋଲି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ରହିଛି ଯେଉଁଠାରୁକି

Digitized by srujanika@gmail.com

ଦେବୀ ମାଣିକେଶ୍ୱରୀଙ୍କ ଛତରଯାତ୍ରା ବାହାରି ରାଜନଅରସ୍ଥିତ ମନ୍ଦିରକୁ ଆସିଥାଏ । କିନ୍ତୁ ବର୍ଗତଃ ଐତିହାସିକ ଡକ୍ଟର ନବୀନକୁମାର ସାହୁ ତାଙ୍କର ଆଶାକୁମାରୀ ଆଲୋଚନାରେ ସ୍ପଷ୍ଟ ଲେଖିଛନ୍ତି ଯେ, "-ହାତୀ ନଦୀ କୂଳସ୍ଥ ଜୁନାଗଡ଼ଥିଲା କଳାହାଣ୍ଡି ରାଜ୍ୟର ପ୍ରାଚୀନ ରାଜଧାନୀ । ୧୭୧୮ ଖ୍ରୀଷ୍ଟାବ୍ଦର ଏକ ଅଭିଲେଖରୁ ଜଣାପଡେଯେ ସେକାଳରେ ତାହାର ନାମଥିଲା କଲହାଣ୍ଡି ନଗର । ରାଜା ଫତେ ନାରାୟଣଙ୍କ ରାଜତ୍ୱ ବେଳେ ୧୮୪୯ ଖ୍ରୀ ରେ ଜୁନାଗଡ଼ରେ ବିସୂଚିକା ରୋଗର ପ୍ରାବଲ୍ୟ ଦେଖାଦେଲା । ସେହି ରୋଗରେ ରାଜପରିବାର କେତେକ ବ୍ୟକ୍ତି ମୃତ୍ୟୁମୁଖରେ ପଡ଼ିଲେ ଏବଂ ରାଜାଙ୍କର ତୃତୀୟ ପୁତ୍ର କୃଷ୍ଣଚନ୍ଦ୍ରଦେବ ଆକ୍ରାନ୍ତ ହୋଇ ବହୁ ଚେଷ୍ଟା ସତ୍ତ୍ୱେ ପ୍ରାଣତ୍ୟାଗ କଲେ । ତାହାଫଳରେ ରାଜପରିବାର ମଧ୍ୟରେ ଆତଙ୍କ ସୃଷ୍ଟି ହେଲା ଏବଂ ଫତେ ନାରାୟଣ ଜୁନାଗଡ଼ ରାଜ ପ୍ରସାଦ ତ୍ୟାଗକରି ଭଣ୍ଡେଶ୍ୱର ପାଟରେ ସପରିବାର ଅବସ୍ଥାନ କଲେ । ତାହାପରେ କଳାହାଣ୍ଡି ରାଜପରିବାର ଜୁନାଗଡ଼କୁ ଆଉ ଲେଉଟି ନାହାନ୍ତି ।" (୧୮୧) ଏପରି ସ୍ଥଳେ କୁହାଯାଇପାରେ ଯେ, ଭବାନୀପାଟଣା ବା ଭଣ୍ଡେଶ୍ୱର ସ୍ଥିତ ଚଉଖାଇ ହେଉଛି ତାକାଳିନ ଜେନାପାଟଣାର ପରିସୀମାର ଶେଷରେ ଥିବା ସୁରକ୍ଷା ବ୍ୟବସ୍ଥା । ଭବାନୀପାଟଣାରୁ ଜୁନାଗଡ ଦୂରତ୍ୱ ସେତେବେଶି ନଥିବାରୁ ଓ ଭବାନୀପାଟଣା ଭିତରେ ମଧ୍ୟ ଏକ ଜେନାଖାଲର ସନ୍ଧାନ ମିଳୁଥିବାରୁ ଏହି ଭୂଖଣ୍ଡକୁ ଜେନାପାଟଣାର ପରିସୀମାମଧ୍ୟରେ ରଖିଲେ ଅଯୌକ୍ତିକଣ କିଛି ନାହିଁ । ରାମଚନ୍ଦ୍ର କଲ୍ୟାଣ ଦେବଙ୍କ ପରେ ଜଗନ୍ନାଥଦେବ ରାଜତ୍ୱ କରିଥିଲେ । ଜଗନ୍ନାଥ ଦେବଙ୍କ ସମୟରେ ମଧ୍ୟ ପ୍ରଶାସନିକ କ୍ଷେତ୍ରରେ କନ୍ଧମାନଙ୍କର ପ୍ରାଧାନ୍ୟ ରହିଥିଲା ବୋଲି ମାଦଳାରୁ ଜଣାପଡେ । ଜଗନ୍ନାଥ ଦେବଙ୍କପରେ ଗଙ୍ଗାଧରଦେବ, ବିଶ୍ୱନାଥଦେବ, ଥୂଆମୂଳ ରାମପୁର ଦଖଲକରି ରାଜତ୍ୱ କରିଥିଲେ (୧୮୨) ତାଙ୍କପରେ ବସୁଦେବ, ବଳଦେବ, ଆନନ୍ଦଦେବ, ଇତ୍ୟାଦି ରାଜାମାନେ ରାଜତ୍ୱ କରିଥିଲେ ।

ଗଜପତି ପୁରୁଷୋତ୍ତମ ଦେବଙ୍କ ପରେ ଗଜପତି ପ୍ରତାପରୁଦ୍ରଦେବ ଓଡ଼ିଶାରେ ରାଜତ୍ୱ କରିଥିଲେ । ଏହାଙ୍କ ରାଜତ୍ୱ କାଳରେ କଳାହାଣ୍ଡି ଉତ୍କଳ ସାମ୍ରାଜ୍ୟର ଅଧୀନରେ ଥିଲା ବୋଲି ପ୍ରତାପରୁଦ୍ର ଦେବଙ୍କର କେନ୍ଦୁପାଟଣ ତାମ୍ର ଶାସନରୁ ଜଣାପଡ଼ିଥାଏ (୧୮୩) ହୁସେନ ସାହାଙ୍କର ଆକ୍ରମଣ କାଳରେ ଗଜପତି ପ୍ରତାପରୁଦ୍ରଦେବଙ୍କୁ କଳାହାଣ୍ଡିର ଆଦିବାସୀ କନ୍ଧମାନେ ସାହାଯ୍ୟ କରିଥିଲେ ବୋଲି ମୁସଲମାନ ଇତିହାସରୁ ଜଣାପଡ଼ିଥାଏ (୧୮୪) ପ୍ରତାପରୁଦ୍ରଦେବଙ୍କ ପରେପରେ ଓଡ଼ିଶାରେ ଗୋବିନ୍ଦ ବିଦ୍ୟାଧର ରାଜତ୍ୱ କରିଥିଲେ (୧୮୫) ଏହାଙ୍କ ସମୟରେ କଳାହାଣ୍ଡିର କିଛି ସଠିକ୍ ଇତିହାସ ଜଣାପଡୁନାହିଁ କିନ୍ତୁ ଗୋବିନ୍ଦ ବିଦ୍ୟାଧରଙ୍କର ପୁଅ ରାଜା ଚକ୍ର ପ୍ରତାପଙ୍କ ସମୟରେ କଳାହାଣ୍ଡି

Digitized by srujanika@gmail.com

ସେଇ ରାଜତ୍ୱର ଅଧୀନସ୍ଥ ଥିଲା (୧୮୬) (୧୫୪୯–୧୫୫୭) ମୁକୁନ୍ଦଦେବଙ୍କର ରାଜତ୍ୱରେ (୧୫୬୦–୧୫୬୮) କଳାହାଣ୍ଡି ଉତ୍କଳ ସାମ୍ରାଜ୍ୟର ଅଧୀନଥିଲା (୧୮୭) ମୁକୁନ୍ଦଦେବ କଳାହାଣ୍ଡିରେ ଜଣେ ପରିଛାଙ୍କୁ ପ୍ରଶାସନିକ ତତ୍ତ୍ୱାବଧାନପାଇଁ ନିଯୁକ୍ତି କରିଥିଲେ ବୋଲି ଇତିହାସ ପୃଷ୍ଠାରୁ ପ୍ରମାଣ ମିଳିଥାଏ (୧୮୮)

ଆଲୋଚ୍ୟ ମାଦଳାରେ ଭ୍ରମବଶତଃ ସୂର୍ଯ୍ୟବଂଶୀରାଜାଙ୍କୁ ମଧ୍ୟ ଗଙ୍ଗବଂଶୀ ବୋଲି ଉଲ୍ଲେଖ କରଯାଇଛି । କଳାହାଣ୍ଡିରେ ନାଗରାଜତ୍ୱର ସୂଚନା ଦେବାକୁଯାଇ କୁମାରସାହେବ ଯୋଗେଶଚନ୍ଦ୍ର ସିଂହ ଦେଓ କହିଛନ୍ତି, ଗଙ୍ଗବଂଶ ରାଜତ୍ୱପରେ ନାଗବଂଶୀୟ ରାଜା ମାନେ କ୍ରମାଗତ ଭାବରେ କଳାହାଣ୍ଡିର ବିଭିନ୍ନ ଗଡ଼ରେ ୧୦୬୦ ଖ୍ରୀଷ୍ଟାବ୍ଦରୁ ଶାସନକରି ଆସୁଥିଲେ (୧୮୯) ଉପରେ ଆମେ ଗଙ୍ଗବଂଶପରେ କଳାହାଣ୍ଡିର ସୂର୍ଯ୍ୟବଂଶର ହସ୍ତକ୍ଷେପ ଉପରେ ପାଞ୍ଚଟି ପ୍ରମାଣ ପ୍ରଦାନ ପୂର୍ବକ କିଛି ଆଲୋଚନା କରିଛୁ । ଏହି ଦୃଷ୍ଟିରୁ କୁମାର ସାହେବଙ୍କର ମତରେ ଭ୍ରାନ୍ତି ରହିଥିବାର ଅନୁମେୟ, ଅବଶ୍ୟ ଅନ୍ୟାନ୍ୟ ସୂତ୍ରରୁ ଆଲୋଚନାକଲେ ପାକ୍‌ଗଙ୍ଗକାଳର ଆହୁରି ପ୍ରାଚୀନ ଯୁଗରେ ମଧ୍ୟ କଳାହାଣ୍ଡିର ଇତିହାସରେ ନାଗବଂଶୀ ମାନଙ୍କର ଭୂମିକା ରହିଛି । କିନ୍ତୁ ତାହା ଆମର ଈପ୍ସିତ ବର୍ତ୍ତମାନର ରାଜବଂଶର ପୂର୍ବ ପୁରୁଷ ସତେନାରାୟଣ ଦେବଙ୍କର ବଂଶ ଇତ ନୁହେଁ ଏପରିକି ନଳ, ବାକାଟକ ଆଦି ରାଜବଂଶମାନେ ମଧ୍ୟ ନାଗଙ୍କ ସହିତ ସମ୍ପର୍କୀ (ଶାଖା) ବୋଲି ଡକ୍ଟର ସତ୍ୟନାରାୟଣ ରାଜଗୁରୁ କହନ୍ତି(୧୯୦)ମାଦଳାରେ ଗଙ୍ଗବଂଶଠାରୁନାଗବଂଶକୁ କ୍ଷମତା ହସ୍ତାନ୍ତର ଉଲ୍ଲେଖ ରହିଛି ଓ ଏହା କଳାହାଣ୍ଡିରେ ଏକ ଲୋକକଙ୍କର ରୂପମଧ୍ୟ ନେଇ ସାରିଲାଣି ତାହା ଏହିପରିଜଗନ୍ନାଥ ଦେବଙ୍କର ପ୍ରଥମରାଣୀ ଚଉରଗଡ଼ ରାଜାଙ୍କର କୁମାରୀ ଦେବୀଙ୍କର ଗର୍ଭରୁ ସୁରେଖାପ୍ରଭାର ନାମ ସୁସିଲାଜନ୍ମ ହୋଇଥିଲା । ପୁତ୍ରନହେବାରୁ ସେନଗଡ଼ ରାଜାଙ୍କର କୁମାରୀ ଲୀଳାବତୀଙ୍କୁ ଦ୍ୱିତୀୟରେ ବିଭାହେଲେ । ଏହାଙ୍କ ଗର୍ଭରୁ ମଧ୍ୟ ପୁତ୍ର ନହେଲେ । ପ୍ରଥମ ରାଣୀ ଗର୍ଭରୁ ଜନ୍ମ ସୁଶିଳା ଉପଯୁକ୍ତ ହୋଇ ରହିଥିଲେ । ଏହି ସମୟରେ ଛୋଟ ନାଗପୁର ରାଜବଂଶର ରଘୁନାଥ ସାଏ । ନାମକ ଏକଭାଇ ନିଜମଧ୍ୟରେ ବିଦ୍ରୋହୀ ହୋଇ କଳାହାଣ୍ଡି ମିଳିକି ତାଲୁକାଜଙ୍ଗଲ ଦ୍ୱାରରେ ଆସି ରହିବାରୁ କନ୍ଧ ପ୍ରଜାମାନେ ତାଙ୍କର ପରିଚୟ ନେଲେ । ପରିଚୟ ନେଲାପରେ ଉକ୍ତ ରଘୁନାଥସାଏଙ୍କୁ ସାଙ୍ଗେ ନେଇ ଗଙ୍ଗବଂଶ ରାଜା ଜଗନ୍ନାଥଦେବଙ୍କୁ ଜୋନାପାଟଣାରେ ପରିଚୟ କରାଇ ସୁଶିଳା ରାଜଜେମାକୁ ଘରଜ୍ୱାଇଁ ରଖିବାକୁ ଶପଥକରାଇଲେ । ” ଏହି ରଘୁନାଥ ସାଏ ଘର-ଜୋଇଁ ହୋଇ ରହିବାପରେ ଚକ୍ରାନ୍ତକ୍ରମେ କଳାହାଣ୍ଡିକୁ କରାୟତକରି ନାଗବଂଶ ରାଜତ୍ୱ ପ୍ରତିଷ୍ଠାକରିଥିଲେ” (୧୯୧) କୁମାର ସାହେବଙ୍କର ସନ୍ଦର୍ଭରେମଧ୍ୟ ଏହାର ସମାର୍ଥକ ସମର୍ଥନରହିଛି ସେ ଲେଖିଛନ୍ତି, '' ଦଶମ ଶତାବ୍ଦୀର ମଧ୍ୟମ ଭାଗରେ ଗଙ୍ଗବଂଶ

Digitized by srujanika@gmail.com

ରାଜାମାନଙ୍କ ବଂଶ ଲୋପ ହେବାରୁ ଆଦିବାସୀମାନେ କିପରି ରାଜ୍ୟକୁ ଅରାଜକ
ତାରୁ ରକ୍ଷାକରିବେ ତାଙ୍କ ସର୍ଦ୍ଦାର ମାନଙ୍କ ସହିତ କଳ୍ପନା ଜଳ୍ପନା ସଭା ସମିତି କରିଥି
କଲେ । ମୋର ମତରେ ହୁଏ ଛୋଟନାଗପୁର ଆଦିବାସୀ ମାନଙ୍କ ସହିତ ଏ ଅଞ୍ଚଳର ଆଦି-
ବାସୀମାନଙ୍କ ଯୋଗସୂତ୍ରଥିଲା । ଏଠିକା ଆଦିବାସୀମାନେ ଛୋଟନାଗପୁରେ ନାଗବଂଶ
ରାଜକୁମାର ମାନଙ୍କୁ ଆଣିଥିଲେ । ପ୍ରବାଦ ଅଛି ପାଞ୍ଚଜଣଭାଇ ନାଗପୁତ୍ରଙ୍କୁ ଆସିଥିଲେ"
(୧୯୨) କୁମାର ସାହେବ ଙ୍କର ଐତିହାସିକ ଜ୍ଞାନ କିନ୍ତୁ ଭ୍ରାନ୍ତିବୋଲି ମନେହୁଏ (୧୯୩)
ଯେଯାହା ହେଉ ସ୍ୱାଧୀନଭାରତର ସାମନ୍ତିକ କଳାହାଣ୍ଡିର ନୃପତିରାଜବଂଶ ବା ନାଗ
ବଂଶ ଯଦି ଛୋଟନାଗପୁରରୁ ଆସିଥିବାର ସତ୍ୟ, ତେବେ ଏମାନେ ଯେ ମୂଳତଃ ଏକ
ଆଦିବାସୀ ରାଜବଂଶ ଏହା ଇତିହାସ ପ୍ରମାଣିତ । ଛୋଟନାଗପୁରରୁ ନାଗରାଜବଂଶ
ବିଶାଳ 'ମୁଣ୍ଡା' ଜାତିର ଗୋଟିଏ ଶାଖାବୋଲି କେତେକ ନୃତତ୍ତ୍ୱବିତ୍‌ମାନେ ପ୍ରମାଣ
ଦେଇଛନ୍ତି [୧୯୪] ଡ଼ାଲଟନ୍ ସାହେବ ଏହି ନାଗବଂଶର ବଂଶଧରମାନେ "କୋହୁ"
ଶ୍ରେଣୀୟ ବୋଲି କହିଛନ୍ତି (୧୯୫ ଛୋଟନାଗପୁର ରାଜ ଙ୍କର ଜଣେ ଭୂତପୂର୍ବ ମ୍ୟାନେ-
ଜର ମିଷ୍ଟର ଜି: କେ: ଓ୍ୱେବଷ୍ଟର ମଧ୍ୟ ଏମାନଙ୍କୁ ମୁଣ୍ଡା' ଜାତିରୁ ଉତ୍ପନ୍ନ ବୋଲି
କହିଛନ୍ତି [୧୯୬] ଓଡ଼ିଶାର ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱ ବିଦ୍ ଓ ଐତିହାସିକ ଡକ୍ଟର ସତ୍ୟନାରା-
ୟଣ ରାଜଗୁରୁ ଏ ସମ୍ପର୍କରେ କହନ୍ତି " ଏମତ ଗ୍ରହଣ କରିବା ପାଇଁ ବହୁ କାରଣ
ବିଦ୍ୟମାନ । ତନ୍ମଧ୍ୟରୁ ନାଗ ରାଜବଂଶର କୌଳିକ ଇତିବୃତ୍ତରେ ଲିଖିତ ଫଣିମୁକୁଟ
ରାୟଙ୍କର ପାଳକ କର୍ତ୍ତା ମଦରା ମୁଣ୍ଡା ଓ ସାଙ୍ଗରମୁଣ୍ଡା ସେହି ମୁଣ୍ଡା ଶ୍ରେଣୀର ଅନ୍ତର୍ଭୁକ୍ତ ।
ଏକାରଣରୁ ବିଶାଳ ମୁଣ୍ଡା ଜାତିର ଗୋଟିଏ ବିଶିଷ୍ଟ ଶାଖା ରୂପେ ନାଗଜାତିକୁ ଗ୍ରହଣ
କରାଯାଇପାରେ [୧୯୭] ସମ୍ମାନୀୟ ରାଜଗୁରୁ ମଧ୍ୟ ବହୁଗ୍ରନ୍ଥରୁ ପ୍ରମାଣମାନ ଦେଇ
ଭାରତ ଓ ଭାରତ ବାହାରର ପ୍ରାୟ ସମସ୍ତ ଆଦିମ ଓ ଆଦିବାସୀ ଜାତିକୁ 'ନାଗ' କୁଳ
ମଧ୍ୟରେ ଅବସ୍ଥିତ କରାଇଛନ୍ତି (୧୯୮) ଭାରତର ସମସ୍ତ ଆଦିମ ଅଧିବାସୀମାନଙ୍କ
ମଧ୍ୟରେ ପୂଜିତା ହେଉଥିବା ଭୂଦେବୀଙ୍କର ମସ୍ତକୋପରି ଅନେକ ଫଣାଯୁକ୍ତ ଏକ
ନାଗର ଛବି ଦେଖାଯାଏ, ଅତଏବ ଆଦିମ ସଂସ୍କୃତି ମୁଖ୍ୟତଃ ନାଗ ସହିତ ସମ୍ପର୍କିତ ।

ଅଷ୍ଟାଦଶ ଶତାବ୍ଦୀରେ କଳାହାଣ୍ଡି ମରହଟ୍ଟା ଶାସନର ଅଧୀନସ୍ଥ ହେଲା । ସେତେବେଳେ
ଏହାଥିଲା ନାଗରାଜା ରାଏସିଂ ଦେବଙ୍କର ପରବର୍ତ୍ତୀ କାଳ । ରାଏସିଂ ଦେବଙ୍କର ଅନ୍ତେ
ତାଙ୍କପୁତ୍ର ପୁରୁଷୋତ୍ତମ ଦେବ ଓ କେଶରୀ ସିଂଙ୍କ ମଧ୍ୟରେ ସିଂହାସନ ଦଖଲପାଇଁ ଗୃହ
ବିବାଦ ଲାଗିବାରୁ ଏହାରି ସୁଯୋଗରେ ମରହଟ୍ଟାମାନେ କଳାହାଣ୍ଡି ଅଧିକାର କରି
ନେଲେ [୧୯୯] ରଘୁଜୀ ଭୋନ୍‌ସଲା ଦ୍ୱିତୀୟ ପୁରୁଷୋତ୍ତମ ଦେବଙ୍କୁ ରାଜାରୂପେ ଗ୍ରହଣ
କରି ତାଙ୍କୁ ବାର୍ଷିକ ୫୩୩୦ ଟଙ୍କା କର ଦେବାପାଇଁ ବାଧ୍ୟ କରିଥିଲେ । ପୁରୁଷୋତ୍ତମ
ଦେବଙ୍କର ବଂଶରେ ରାଜା ଫତେ ନାରାୟଣ ଦେବଙ୍କର ଆବିର୍ଭାବ ଘଟିଥିଲା (୨୦୦)

Digitized by srujanika@gmail.com

ଆଲୋଚ୍ୟ ମାଦଳାରେ ଏହି କାଳ ସହ ସମ୍ବନ୍ଧିତ ଅନେକ ନୂତନ କଥାମାନ ରହିଛି ଏଥିରେ ଫତେ ନାରାୟଣ ଦେବଙ୍କର କଥା ମଧ୍ୟ ରହିଛି, କିନ୍ତୁ ପୁରୁଷୋତ୍ତମଙ୍କର ପ୍ରସଙ୍ଗ ନାହିଁ ସେହି ପରିପ୍ରେକ୍ଷୀରେ ନାଗବଂଶ ଯୁବରାଜଙ୍କର ବିଷୟରେ ରହିଛି । ଫତେ ନାରାୟଣ ଦେବଙ୍କର ସମୟରେ କଳାହାଣ୍ଡି ଇଂରେଜ ସାମ୍ରାଜ୍ୟବାଦର ଷଡଯନ୍ତ୍ରର ଶରଣ୍ୟ ହେଲା । ଫତେ ନାରାୟଣ ଦେବଙ୍କର ପୁତ୍ର ଉଦିତ ପ୍ରତାପ ଦେବଙ୍କ ସମୟରେ ୧୮୫୩ ଖ୍ରୀଷ୍ଟାବ୍ଦରେ କଳାହାଣ୍ଡି ବ୍ରିଟିଶ ଶାସନାଧୀନ ହେଲା (୨୦୧ ଫତେ ନାରାୟଣ ଦେବଙ୍କର ପୁତ୍ର ଏହି ଉଦିତ ପ୍ରତାପ ସମ୍ବଲପୁରର ଶେଷ ଚୌହାଣରାଜା ନାରାୟଣ ସିଂଙ୍କର କନ୍ୟା ଆଶାକୁମାରୀଙ୍କୁ ବିବାହ କରିଥିଲେ [୨୦୨] ଉଦିତ ପ୍ରତାପ ନିଃସନ୍ତାନ ଥିବା କଥା କଳାହାଣ୍ଡି ଶାସନରେ ମହାରାଣୀ ଆଶାକୁମାରୀଙ୍କର ଭୂମିକା, ରଘୁକେଶରୀ ଦେଓଙ୍କୁ ଦ୍ୱିତୀୟରେ ପର୍ଯ୍ୟାୟରେ ପୌଷ୍ୟରୂପେ ଗ୍ରହଣ ଓ ସମ୍ବଲପୁରଙ୍କୁ ଏହି ସମୟରେ କଳାହାଣ୍ଡିକୁ କୋଲତାଗୋଷ୍ଠୀ ଜାତିର ଆଗମନ ସର୍ବୋପରି ଆଶାକୁମାରୀଙ୍କ କାଳରେ କଳାହାଣ୍ଡିର କନ୍ଧମେଳି ସମ୍ପର୍କରେ ଆଲୋଚନା କଲେ ବେପାରୀକନ୍ଧ ସମ୍ପ୍ରଦାୟର ବିଦ୍ରୋହ–ଇତିହାସର ଏକ ରକ୍ତରଞ୍ଜିତ ଅଧ୍ୟାୟର ଉଦ୍‌ଘାଟନ ହୁଏ । [୨୦୩] ଏହି ସମୟରେ କଳାହାଣ୍ଡିରେ ଆଦିବାସୀମାନଙ୍କର ପ୍ରତାପ ଫଳରେ ବହୁ ପରିମାଣରେ ଶାସନବ୍ୟବସ୍ଥା ଅଚଳ ରହୁଥିଲା ଫଳରେ ଇଂରେଜମାନେ ରାଜତନ୍ତ୍ର ଉପରେ ଆହୁରି ଆହୁରି ପ୍ରଭାବ ପକାଉଥିନ୍ତି । ନାଗରାଜ ବଂଶର ରଘୁକେଶରୀ ଦେଓ ଛତିଶଗଡ କଟଦେଗଜ୍ୟର ପୋଲିଟିକାଲ୍ ଏଜେଣ୍ଟଙ୍କ ତତ୍ତ୍ୱାବଧାନରେ ରହିଲେ । [୨୦୪] ୧୮୫୭ ଖ୍ରୀଷ୍ଟାବ୍ଦରେ ସମଗ୍ର ଭାରତରେ ଯେତେବେଳେ ସିପାହୀ ବିଦ୍ରୋହର ସୂତ୍ରପାତ ହେଲା, ସେତେବେଳେ ଏହି ରାଜ୍ୟରେ ମଧ୍ୟ କନ୍ଧମାନେ ବୀର ସୁରେନ୍ଦ୍ର ସାଏଙ୍କର ପଦାଙ୍କ ଅନୁସରଣ କରି ବିଦେଶୀ ଶାସନ ବିରୁଦ୍ଧରେ କନ୍ଧମେଳି, ଧରଣୀମେଳି ଓ ରନ୍ନାମେଳିର ସୂତ୍ରପାତ କରିଥିଲେ । [୨୦୫] କନ୍ଧମେଳିର ଆଭିମୁଖ୍ୟଥିଲା କଳାହାଣ୍ଡିରେ ପରଂପରାକ୍ରମେ ଶାସନ କରି ଆସୁଥିବା ରାଜବଂଶର ପ୍ରତିଷ୍ଠା ଜାହିର କରିବା [୨୦୬] ଧରଣୀମେଳି ଇଂରେଜ ଶାସନ ବିରୁଦ୍ଧରେ, ଇଂରେଜ ଶାସନର ମେରିଆବଳୀ ପ୍ରଥା ବିରୋଧୀ ମନୋବୃତ୍ତିର ବିପକ୍ଷରେ ସ୍ୱର ଉତ୍ତୋଳନ କରିଥିଲା । [୨୦୭] ରନ୍ନାମେଳି କନ୍ଧ ସଂସ୍କୃତିରେ ଏକ ଅଭୂତ-ପୂର୍ବ ଘଟଣା । ଉନବିଂଶ ଶତାବ୍ଦୀର ଶେଷପାଦରେ ଏହି ବିଦ୍ରୋହ ଦେଖା ଦେଇଥିଲା । ରାଜନୈତିକ, ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ କନ୍ଧ ସଂସ୍କୃତିର ମହାନତା ବଜାୟ ରଖିବା ପାଇଁ କଳାହାଣ୍ଡିର ରତନକନ୍ଧ ନାମରେ ଜଣେବ୍ୟକ୍ତି ଏହି ବିଦ୍ରୋହର ନେତୃତ୍ୱ ନେଇଥିଲେ [୨୦୮] ଓମେଲି ସାହେବଙ୍କ ମତରେ ଏହି କନ୍ଧ ବିଦ୍ରୋହ ଏକ ଭୟଙ୍କର ରୂପଧାରଣ କରିଥିଲା ଓ ସର୍ବଶେଷରେ ଦେଶୀୟ ରାଜାଙ୍କର ଅନୁମୋଦନକ୍ରମେ କନ୍ଧମାନଙ୍କୁ ରାଜାଙ୍କର ସିଂହାସନ ଆରୋହଣ ବେଳେ ଓ ଅନ୍ୟାନ୍ୟ ରାଜନୈତିକ ଉତ୍ସବ ଆଡ଼ମ୍ବର

Digitized by srujanika@gmail.com

ସମୟରେ ପ୍ରାଧାନ୍ୟ ଦିଆଯାଇଥିଲା [୨୦୯] ଯାହାକି ବହୁଆଗରୁ କଳାହାଣ୍ଡିର କନ୍ଧ ମାନଙ୍କର ଅଧିକାର ଭୁକ୍ତଥିଲା [୨୧୦] ଇଲିଏଟ୍ ସାହେବଙ୍କମତରେ ଏହି ସମୟରେ ଚକ୍ର ବିଷୋଇ ମଧ୍ୟ ଆସି କନ୍ଧମାନଙ୍କୁ ଉଦ୍‌ବୋଧନ ଦେଇଥିଲେ [୨୧୧] ରଘୁକେଶରୀ ଦେଓଙ୍କ ପରେ ପରେ କଳାହାଣ୍ଡିରେ ବ୍ରଜମୋହନ ଦେଓ ରାଜାହେଲେ । ସେ ବ୍ରିଟିଶ ଦରବାରର ଅନୁଜ୍ଞାଅନୁସାରେ ୧୬, ୧୦, ୧୯୨୬ ଖ୍ରୀଷ୍ଟାବ୍ଦରେ ଭବାନୀପାଟଣାରେ ସିଂହାସନ ଆରୋହଣ କଲେ । [୨୧୨] ଏହି ରାଜାଙ୍କର ସମୟରେ ଜମିଜମାର ବ୍ୟବସ୍ଥା, କଟକର ଲଘୁକରଣ ଏବଂ ପ୍ରଶାସନିକ କ୍ଷେତ୍ରରେ ସଂଗଠନ ଆଦି ଅନେକ ଜନହିତକର କାର୍ଯ୍ୟମାନ ହୋଇଥିଲା । [୨୧୩] ବ୍ରଜମୋହନ ଦେଓଙ୍କ ପରେ ତା ୧୧-୮-୧୯୩୯ରେ ପ୍ରତାପ କେଶରୀ ଦେଓ ସିଂହାସନ ଆରୋହଣ କଲେ [୨୧୪] ରାଜ୍ୟରେ ସ୍ଥାୟୀ ଶାସନର ପ୍ରତିଷ୍ଠାପାଇଁ ଗ୍ରାମପଞ୍ଚାୟତ ଆଇନ ଓ କରଣ୍ଡ ପ୍ରଜା ସଭାଆଇନ ୧୯୭୧ ମସିହାର ଜନଗଣନା ଅନୁସାରେ ଏହି ଜିଲ୍ଲାର ସମୁଦାୟ ଜନସଂଖ୍ୟା ମଧ୍ୟରୁ ଶତକଡ଼ା ୨୯.୨୬ ହେଉଛନ୍ତି ଆଦିବାସୀ । କନ୍ଧ, ଗଣ୍ଡ, ମିର୍ଦ୍ଧା, ମୁଣ୍ଡା, ପରଜା, ଝରିଆ, ସଅଁରା, ଶବର, ଭୁଞ୍ଜିଆ ବିଞ୍ଝାଲ୍, ଦଲ୍, ବଞ୍ଜାର ଓ ଭତ୍ରା ଏପରି ତେରଟି ମୁଖ୍ୟ ଆଦିବାସୀଙ୍କ ସମେତ ଏହି ଜିଲାରେ ପ୍ରାୟ ୪୮ ପ୍ରକାର ଆଦିବାସୀ ଗୋଷ୍ଠୀ ରହିଛନ୍ତି । ୧୯୭୧ ଜନଗଣନା କ୍ରମରେ ନିର୍ଦ୍ଧାରିତ ଏହି ଆଦିବାସୀ ଗୋଷ୍ଠୀମାନଙ୍କର ଜନସଂଖ୍ୟା ଏହିପରି, କନ୍ଧ–୧, ୧୪, ୭୪୪, ଗଣ୍ଡ–୧୨୪୭୧୮, ଦଲ–୭୦୨୦, ମୁଣ୍ଡା–୨, ୬୯୫, ମିର୍ଦ୍ଧା–୧୧୨୫, ସହର–୪୧୪୮, ଶବର–୪୦, ୯୫୦, ପରଜା ୧୨ ୮୫୩ ଭୁଞ୍ଜିଆ–୫ ୬୨୫, ବିଞ୍ଝାଲ–୫୦୯୫, ଭତରା–୩୮୫୩, ବଞ୍ଜାରା–୩୩୬୨ (ସମଗ୍ର ଓଡ଼ିଶାରେ ଏମାନଙ୍କର ସଂଖ୍ୟା ୬, ୨୮୩) [୨୧୫] କଳାହାଣ୍ଡିର ଆଦିବାସୀ ନାମରେ ଏକ ସ୍ୱତନ୍ତ୍ର ପ୍ରବନ୍ଧରେ ଏହି ଲେଖକ ଆଲୋଚ୍ୟ ଆଦିବାସୀ ମାନଙ୍କର ଆଦିମତ୍ୱ ଓ ସଂସ୍କୃତିକ ମୌଳିକତା ସମ୍ପର୍କରେ ଯଥାପରୋନାସ୍ତି ଆଲୋଚନା କରିସାରିଛି । ଆହୁରି ଆଶ୍ଚର୍ଯ୍ୟଜନକ ବିଷୟ ହେଉଛି କଳାହାଣ୍ଡିର କୋକସରା ବ୍ଲକରେ ଭଳୁଆ ନିକଟସ୍ଥ ନୂଆପଡାରେ ଆଦିମବନ୍ୟ ଜାତିର ପ୍ରାୟ ସମସ୍ତ ପ୍ରକୃତି ଓ ପ୍ରବୃତ୍ତିର ସାକ୍ଷ୍ୟ ବହନ କରି 'ମଗ୍ଲି' ବୋଲି ଏକ ଉପଜାତି ରହିଛନ୍ତି, ଯେଉଁମାନେକି ଏପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କର ଆଦିବାସୀ ତାଲିକା ଭୁକ୍ତ ହୋଇନାହାନ୍ତି । [୨୧୬] ନାମରେ ଦୁଇଟି ଆଇନ ଏହାଙ୍କ ସମୟରେ ପ୍ରଣୟନ କରଯାଇ ଥିଲା । ଏହାଙ୍କ ସମୟରେ ଓଡ଼ିଆ ଭାଷାର ଲବ୍‌ଧ ପ୍ରତିଷ୍ଠା ଲେଖକଙ୍କୁ ପ୍ରତିବର୍ଷ ଏକ ହଜାର ଟଙ୍କା ମିଳିବାର ବ୍ୟବସ୍ଥାଥିଲା । [୨୧୭] ଏ ସମୟରେ କଳାହାଣ୍ଡିର ଏକ ପ୍ରତ୍ନତାତ୍ତ୍ୱିକ ବିଭାଗ ଖୋଲିଥିଲା ଓ ବେଲଖଣ୍ଡିର ଖନନ କାର୍ଯ୍ୟ ସମ୍ପାଦିତ ହୋଇଥିଲା ତତ୍ ସଙ୍ଗେସଙ୍ଗେ କଳିଙ୍ଗ ହିଷ୍ଟୋରିକାଲ୍ ରିସର୍ଚ୍ଚ ଜର୍ନାଲ ନାମରେ ଏକ ଚତୁଃମାସିକ ପତ୍ରିକା ପ୍ରକାଶ ପାଉଥିଲା । [୨୧୮]

Digitized by srujanika@gmail.com

ପ୍ରଥମ ଜାନୁଆରୀ ୧୯୪୮ରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଡକ୍ଟର ହରେକୃଷ୍ଣ ମହତାବ ଓ ଶ୍ରୀ ସାରଙ୍ଗଧର ଦାସ ଇତ୍ୟାଦିଙ୍କର ନେତୃତ୍ୱରେ କଳାହାଣ୍ଡି ଭାରତ ପ୍ରଦେଶରେ ସାମିଲ ହୋଇଗଲା । [୨୧୯]

ବ୍ରିଟିଶ ଶାସନ କାଳରେ କଳାହାଣ୍ଡିର କନ୍ଧମାନେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ବୋଲି ଜଣାପଡେ । କଳାହାଣ୍ଡିରେ ଏକ ରେକୋର୍ଡ ରହିଛି,–"ଗଣ୍ଡରଭାଇ । ଗାଁଗାଲା କନ୍ଧଫାରସି କାଏଁକରସି ? [୨୨୦] ଭାଇ ହେଉଛି ଆଦିବାସୀ ଯୋଦ୍ଧା ଗଣ୍ଡମାନଙ୍କର ପ୍ରିୟ 'ଅସ୍ତ୍ର' ଏହା ସାହାଯ୍ୟରେ ସେମାନେ ଆତ୍ମରକ୍ଷା ଓ ପ୍ରତିଆକ୍ରମଣ ଆଦି କରନ୍ତି, ଏହାହିଁ ତାଙ୍କ ପ୍ରତାପର ପ୍ରତୀକ କ୍ରମେକ୍ରମେ ଗଣ୍ଡ ଗଡ଼ଜାତ୍ ଓ କନ୍ଧ ଗଡ଼ଜାତ୍ ଆଦିର ବିଳ-ମ୍ବିତ ମୁହୂର୍ତ୍ତ ଆସି ପହଞ୍ଚିବାରୁ ଏମାନଙ୍କର ପତିପତ୍ତି ଅବକ୍ଷୟତା ଆଡ଼କୁ ଗତିକଲା ଇଂରେଜ ହସ୍ତକ୍ଷେପ ଫଳରେ ଗଣ୍ଡମାନଙ୍କର ଭାଲ ବ୍ୟବହାର ମଧ୍ୟ ପୁରପୁରି ପରାଜୟ ସ୍ୱୀକାର କରିଛି ।" ଫଳରେ ଗଣ୍ଡରଭାଇ । ଗାଁଗାଲା ସମୟକ୍ରମେ କଳାହାଣ୍ଡିର କନ୍ଧମାନେ ବାରବାର ଧରଣୀପେନୁଙ୍କର ଅସ୍ତ୍ର ଫାରସି ଧରି ଇଂରେଜ ସରକାର ବିରୁଦ୍ଧରେ ସ୍ୱର ଉତ୍ତୋଳନ ପୂର୍ବକ ମେଳି କରିଛନ୍ତି ଫଳରେ କନ୍ଧମାନଙ୍କ ଅପେକ୍ଷା ନିଜକୁ ବଡ଼ ଓ ବୀର ବୋଲି ଭାବୁଥିବା ଗଣ୍ଡମାନଙ୍କର ଭାବ ନାହିଁ ଏହି ରେକୋର୍ଡ ଅର୍ଥାତ କନ୍ଧଫାରସି କାଏଁକରସି ?......ଗଣ୍ଡରଭାଇ ଯାହାକୁ ହାତମାରିଛି ସେଇଠୁ କନ୍ଧର ଫାରସିର ଅସ୍ତ୍ରାଳନ ବା କେତେ କ୍ୟାପ୍ଟେନ୍ ଏସ୍ ସି ମ୍ୟାକ୍‌ଫରସନ୍‌ଙ୍କ ପ୍ରଶାସନିକ ବିବରଣୀ ଅନୁସାରେ କନ୍ଧମାନଙ୍କ ବିଦ୍ରୋହ ଜନିତ ହିଂସାତ୍ମକ କାର୍ଯ୍ୟକଳାପ କେବଳ ଧର୍ମଭିତ୍ତିକ ହୋଇନଥିଲା (୨୨୧) ଏ ସମୟର କମଲଲୋଚନ ଦୋରା ବିଷୋଇ ଓ ଚକ୍ର ବିଷୋଇଙ୍କର ଆର୍ଦ୍ଦ ସ୍ଥାନ ଘୁମସର ଅଞ୍ଚଳ ହୋଇଥିଲେ ହେଁ ବିଶେଷତଃ କୁଲଡଗଡ ଦୁର୍ଗ ହୋଇଥିଲେ ହେଁ ଏମାନଙ୍କର ନେତୃତ୍ୱରେ କଳାହାଣ୍ଡି, କୋରାପୁଟ ପାଟଣାଝେମୁଣ୍ଡା ଇତ୍ୟାଦି ବହୁ ଅଞ୍ଚଳକୁ ଏମାନଙ୍କର ବିଦ୍ରୋହ ପରିବ୍ୟାପ୍ତ ହୋଇଥିଲା ବୋଲି ଡକ୍ଟର ଦଣ୍ଡପାଣି ବେହେରା ଙ୍କର ସନ୍ଦର୍ଭରେ ପ୍ରକାଶ କରିଛନ୍ତି (୨୨୨) ଡକ୍ଟର ପ୍ରସନ୍ନ କୁମାର ମହାପାତ୍ରଙ୍କ ମତରେ ଚକ୍ର ବିଷୋଇ ଘୁମସର ଚଉଦ, ବଉଦରୁ କଳାହାଣ୍ଡି ଓ କଳାହାଣ୍ଡିରୁ କୋରାପୁଟକୁ ଆସିଥିଲେ ୨୨୩) ଏହି ସମୟରେ କଳାହାଣ୍ଡିର ଅନେକ କନ୍ଧ ରାଜନୈତିକ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ସେମାନଙ୍କ ମଧ୍ୟରେ ରତନବୀର କୁଣ୍ଡେଲବୀର ଇତ୍ୟାଦିଙ୍କ ନାମ ଉଲ୍ଲେଖ ଯୋଗ୍ୟ (୨୨୩) ଚକ୍ର ବିଷୋଇଙ୍କ ନେତୃତ୍ୱରେ ଘୁମସର ଓ କଳାହାଣ୍ଡିର କନ୍ଧମାନେ ବ୍ରିଟିଶ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ବାଲିଗୁଡ଼ା କୋରି-କିଆ, ପୁଷୁଙ୍ଗ, ବୋଡେର୍କିଆ, ବୋଦେଲିଙ୍ଗ୍ୟା, ଉର୍ଲଦାନୀ ଓ କୋଟଭସା ପରଗଣା ଅଞ୍ଚଳର କନ୍ଧମାନଙ୍କର ନାମ ଏହି ବିଦ୍ରୋହୀମାନଙ୍କ ମଧ୍ୟରେ ଅନ୍ୟତମ (୨୨୪) ଉର୍ଲ-ଦାନୀକୁ ଚକ୍ର ବିଷୋଇ ମଦନପୁରକୁ ଆସିଥିଲେ ଓ ମଦନପୁରର ଜମିଦାର ହରିହର ସିଂ

Digitized by srujanika@gmail.com

ମର୍ଦ୍ଦଗଡଙ୍କ ସହିତ ମିତ୍ରତା ସ୍ଥାପନ କରିଥିଲେ । ୨୨୫॥ ଏମାନଙ୍କ ନେତୃତ୍ୱରେ କେବଳ ବ୍ରିଟିଶ ଶାସନ ବିରୁଦ୍ଧରେ ନୁହେଁ ତଦାନୀନ୍ତନ ରଜାମାନଙ୍କ ବିରୁଦ୍ଧରେ ମଧ୍ୟ ବିଦ୍ରୋହ ହୋଇଥିଲା । ଡଃ ପ୍ରସନ୍ନ କୁମାର ମହାପାତ୍ରଙ୍କ ମତରେ କନ୍ଧ ବିଦ୍ରୋହ ଇତିହାସର ଏକ ସଂକୀର୍ଣ୍ଣବାଦୀ ଘଟଣା ନୁହେଁ ବରଂ ଦେଶର ସାର୍ବଭୌମତ୍ୱକୁ ନଷ୍ଟ କରୁଥିବା ବ୍ରିଟିଶ ଶାସନ ବିରୁଦ୍ଧରେ ଏକ ଅଶିକ୍ଷିତ ଆଦିବାସୀ ଗୋଷ୍ଠୀର ସାହସିକ ସମର ସଜ୍ଜା ।୨୨୬॥ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ସୁରେନ୍ଦ୍ର ସାଏଙ୍କର ବିଦ୍ରୋହରେ ମଧ୍ୟ କନ୍ଧ, ଗଣ୍ଡ ବିଂଝାଲମାନେ ସକ୍ରୀୟ ଭୂମିକା ଗ୍ରହଣ କରିଥିଲେ । ସୁରେନ୍ଦ୍ର ସାଏଙ୍କର ଲୁଦୋ-ପାଲି ଓ ପାହାଡ ସିରଗଡା ଅବସ୍ଥାନ କାଳରେ କନ୍ଧମାନେହିଁ ତାଙ୍କୁ ବିଶେଷ ସହାୟତା କରିଥିଲେ । ୨୨୭॥

ଉପରୋକ୍ତ ବିଶ୍ଳେଷଣ ଗୁଡ଼ିକରୁ ଜଣାପଡ଼େ ଯେ, କଳାହାଣ୍ଡି ପ୍ରାକ୍-ଐତିହାସିକ କାଳରୁ କନ୍ଧ, ଗଣ୍ଡ, ଶବର ଆଦି ପୋଟୋ-ଅଷ୍ଟ୍ରାଲଏଡ ବା ପ୍ରୋ ଅଷ୍ଟ୍ରିକ ଜାତିମାନଙ୍କର ବାସ-ଭୂମୀ ଥିଲା ୨୨୮॥ ଏହାକୁ ଆହୁରି ବଳିଷ୍ଠ ପ୍ରମାଣ ଯୋଗାଏ ମାଣଗଡ଼ା ଉପତ୍ୟକା । କନ୍ଧଜାତିର ଧରଣୀପେନୁଙ୍କର ଯେଉଁ ଭୂଦେବୀ ମୂର୍ତ୍ତି ସିନ୍ଧୁ ଉପତ୍ୟକାରୁ ଆବିଷ୍କାର କରାଯାଇଛି ଠିକ୍ ସେହି ପ୍ରକାର ମୂର୍ତ୍ତିଟିଏ ଅର୍ଥାତ ଭୂଦେବୀ ପ୍ରାଚୀନ ମୂର୍ତ୍ତିଟିଏ ମାଣ-ଗଡ଼ରୁ ମଧ୍ୟ ବାହାରିଛି । ଡ଼ଃ ରାମ ପ୍ରସାଦ ମିଶ୍ରଙ୍କର ମତରେ ଏହା ସିନ୍ଧୁ ସଭ୍ୟତାରୁ ମିଳୁଥିବା ଭୂଦେବୀଙ୍କର ମୂର୍ତ୍ତି ଓ କନ୍ଧଜାତିର ଧରଣୀପେନୁଙ୍କର ମୂଳ ମୂର୍ତ୍ତିରୂପ ୨୨୯॥ ଭାରତର ଆଦିବାସୀ ବା ଆଦିମାନବ ମାନଙ୍କ ମଧ୍ୟରେ ବିଶିଷ୍ଟଭାବେ ପରିଗଣିତ ହେଉ-ଥିବା ଏହି ଆଦିବାସୀମାନେ ବହୁ ଦିନତଳେ ଯେ, ଉନ୍ନତ ସଭ୍ୟତା ଗଢ଼ିବାକୁ ସଚେଷ୍ଟ ହୋଇଥିଲେ ତାହା ଭ୍ରାନ୍ତିହୀନ । ଯୋଗୀମଠ ଓ ବିକ୍ରମ ଖୋଲର ପ୍ରାକ୍ ଐତିହାସିକ ଚିତ୍ରାବଳୀ ଏହାର ନିର୍ଭର ଯୋଗ୍ୟ ମୂକସାକ୍ଷ୍ୟ ୨୩୦॥ ଏହି ଆଦିବାସୀମାନଙ୍କର ଅଭ୍ୟୁଦୟରୁହିଁ ପରବର୍ତ୍ତୀ କାଳର ବୈଦେଶିକ ସାମ୍ରାଜ୍ୟ ଗଢ଼ି ଉଠିଥିବାର ଅନୁମେୟ । ରାଜନୈତିକ ଦୃଷ୍ଟିକୋଣରୁ କନ୍ଧମାନେ ଓ ତାଙ୍କର ସମସ୍ପ୍ରଦାୟୀ ଆଦିବାସୀମାନେ କାଳକ୍ରମେ ଏକ ପରାକ୍ରମଶାଳୀ ଜାତିଭାବେ ଏହି ଅଞ୍ଚଳରେ ବିକାଶଲାଭ କରିଥିଲେ ଓ ସେମାନଙ୍କର ନେତାହିଁ ପରବର୍ତ୍ତୀ କାଳରେ ଏ ଅଞ୍ଚଳରେ 'ରଜା' ଭାବରେ ରାଜତ୍ୱ କରୁ-ଥିଲେ । ଯଦିଓ ପରବର୍ତ୍ତୀ କାଳରେ ରଜାମାନେ ଏହି ଅଞ୍ଚଳରେ ଆର୍ଯ୍ୟାୟନ ପ୍ରଭାବରେ ନିଜକୁ କ୍ଷତ୍ରୀୟ ବୋଲି ପରିଚିତ କରାଇବା ପାଇଁ ଅନେକ ଲୋକ ବିଶ୍ୱାସ ଜନିତ ଜଟିଳ-ତତ୍ତ୍ୱ ସୃଷ୍ଟିକଲେ ତଥାପି ଐତିହାସିକ ସତ୍ୟତା ଦୃଷ୍ଟିକୋଣରୁ ସେମାନଙ୍କ ଧମନୀରେ ମଧ୍ୟ ଯେ ପ୍ରଚ୍ଛନ୍ନ ଆଦିବାସୀ ରକ୍ତ ପ୍ରବାହିତ ଏଥିରେ ସନ୍ଦେହ ନାହିଁ । ସେଇଥି ପାଇଁ ବୋଧହୁଏ ଅଦ୍ୟାବଧି କଳାହାଣ୍ଡିର ରାଜାଭିଷେକ ଉତ୍ସବରେ କନ୍ଧ ପ୍ରାଧାନ୍ୟ ଓ

Digitized by srujanika@gmail.com

ଯଥେଷ୍ଟମାନ୍ୟ ରହିଛି । କେବଳ ଏହି ଦୃଷ୍ଟିକୋଣରୁ ନୁହେଁ ଅନ୍ୟାନ୍ୟ ରାଜନୈତିକ ଘଟଣା ପ୍ରବାହରେ ମଧ୍ୟ କଳାହାଣ୍ଡିର ଇତିହାସରେ କନ୍ଧମାନଙ୍କର ଭୂମିକା ଅତିସୁସ୍ପଷ୍ଟ । କଳାହାଣ୍ଡି ଜିଲ୍ଲାର ଉତ୍‌କେଲଠାରୁ ଆରମ୍ଭକରି ଘାଟପଡା ବିନେକେଲ ଦେଇ ତେଲନଦୀ ଓ ପୁଣି ତେଲନଦୀଠାରୁ ଜଙ୍ଗଲ ଖେରମଗ, ଗୁଯୁରୁଙ୍ଗ, ଡୁବାପଡା ଆଦି ଅଞ୍ଚଳକୁ ମିଶାଇ ଉପରଟାଁକା ଓ ତଳଟାଁକା କନ୍ଧତାଲୁକା ବା ପ୍ରଗଣାର ବିଭକ୍ତିକରଣ କରଯାଇଥିଲା । ଏହା ହେଉଛି ଟାଁକାକନ୍ଧ (କନ୍ଧମାନଙ୍କର ଏକ ଉପବର୍ଗ) ମାନଙ୍କର ରାଜ୍ୟ ।୨୩୧।। ଟାଁକାକନ୍ଧମାନେ ନାଗବଂଶୀ ହୋଇଥିବାରୁ ଏମାନଙ୍କୁ ଏକଦା ବୌଦ ଅଞ୍ଚଳରେ ଶାସନ କରୁଥିବା ଆଦିବାସୀ ନାଗବଂଶୀ ରଜା ଗୋଣ୍ଡ ରାଜାଙ୍କର ଦାୟାଦ ଆଦିବାସୀ କନ୍ଧଜାତି ଭାବରେ ଗ୍ରହଣ କରଯାଇପାରେ । ୨୩୨।। କନ୍ଧମାନଙ୍କର ସହାୟତାରେହିଁ ଏ ଅଞ୍ଚଳରେ ନଳ, ପର୍ବତଦ୍ୱାରକ ଓ ଅନ୍ୟାନ୍ୟ ରାଜବଂଶମାନେ ରାଜତ୍ୱ କରିପାରିଥିଲେ । ସାମାଜିକ ଦୃଷ୍ଟିକୋଣରୁ କନ୍ଧସଂସ୍କୃତି ଯେ ଏହି ଅଞ୍ଚଳର ସଂସ୍କୃତିକୁ ଜନ୍ମ ଦେଇଥିଲା ଏହା ନିଃସନ୍ଦେହ । ଏ ଅଞ୍ଚଳର ସାମାଜିକ ସଂସ୍କୃତିରେ ଆର୍ଯ୍ୟ ସଂସ୍କୃତିର ପ୍ରକ୍ଷେପ ପରିବର୍ତ୍ତେ ଆଦିବାସୀ ସଂସ୍କୃତିର ପ୍ରକ୍ଷେପହିଁ ଦେଦୀପ୍ୟମାନ ।

ଓଡ଼ିଶା ମୂଳତଃ ଆର୍ଯ୍ୟେତର ସଂପ୍ରଦାୟର ଭୂମି । ଓଡ଼ିଶାକୁ ବାଦ୍‌ଦେଲେ ଅନ୍ୟ କୌଣସି ଅଞ୍ଚଳରେ ହୁଏତ ଏପ୍ରକାର ଆର୍ଯ୍ୟେତର ସଂସ୍କୃତିର ବଳିଷ୍ଠ ସ୍ୱାକ୍ଷର ଦେଖିବାକୁ ମିଳେ ନାହିଁ । ଓଡ଼ିଶାରେ ବ୍ରାହ୍ମଣେତର ଜାତିମାନେହିଁ ଥିଲେ ଦେବଦେବୀ ଲିଙ୍ଗ ଯୋନିର ଉପାସକ ।୨୩୩।। ଅଦ୍ୟାବଧି ମଧ୍ୟ କଳାହାଣ୍ଡି, ବଲାଙ୍ଗୀର ଓ ସମ୍ବଲପୁର ଆଦିର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସାମାଜିକ କ୍ଷେତ୍ରରେ ବ୍ରାହ୍ମଣମାନଙ୍କର ପ୍ରଭୁତ୍ୱକୁ ସ୍ୱୀକାର କରଯାଇ ନାହିଁ । ଏହି ଜିଲ୍ଲା ଗୁଡ଼ିକର ଅନେକ ଅଞ୍ଚଳରେ ଜମିଦାରମାନେ କନ୍ଧ, ଗଣ୍ଡ, ଓ ବିନ୍‌ଝାଲ । ଅଞ୍ଚଳର ଧର୍ମ ଏକ ଆଦିବାସୀ ସଂସ୍କୃତିର ଧର୍ମ । ଏହି ସଂସ୍କୃତିର ଦେବଦେବୀ ବିଶେଷ ଭାବରେ ତଥାକଥିତ ଅନାର୍ଯ୍ୟ ସଂସ୍କୃତିରୁହିଁ ଆନିତ, ମାନେଶିରୀ ସୁରସୁରୀ, ସମଲେଇ, ଦ୍ୱାରସୁନୀ, ଘଟାସୁନୀ, ମାଉଲି, ଡ଼ହକା, ଠେଙ୍ଗା, ଖଳିବୁଲି, ଲୁଲି, ମଟିଆ, ଡୁକ୍‌ରୀ, ଘୁର୍ଙ୍ଗି, ଭରକୁଲି, କୁରକୁଲୀ, ଗବଡ଼ାସୁନୀ, ଜାଲିଆ ମଠଖାଇ, କୁଡ଼ାରଜା, ଡାଙ୍ଗୁଆ, ଭଏଁଲେ, ଲଷ୍ଟପାର, କେରମେଲ, ସିକେଲ ପାଟ ଆଦି ଏପରି ଶତଶତ ଦେବଦେବୀ ଇତ୍ୟାଦି ଅର୍ଯ୍ୟେତର ସଂସ୍କୃତିର ନାମ ।୨୩୪।। ଏମାନେ ପରବର୍ତ୍ତୀ କାଳରେ ଅଧିକାଂଶରେ ଆର୍ଯ୍ୟାୟିତ ହୋଇଛନ୍ତି । ମାନେଶିରୀ (ମାନିକ୍‌ସାଇରେ) ମାଣିକେଶ୍ୱରୀରେ, ସୁରସୁରୀ, ସୁରେଶ୍ୱରୀରେ ଓ ସମଲେଇ ସମଲେଶ୍ୱରୀରେ ରୂପାନ୍ତରିତ ହୋଇଛନ୍ତି । କଳାହାଣ୍ଡିର ପ୍ରସିଦ୍ଧ ଦେବୀ ମାଣିକେଶ୍ୱରୀ ମେରିଆବଳୀ ସମୟରେ କେନ୍ଦ୍ରରେ ଉପାସିତା ହେଉଥିବା ମାନିକ୍‌ସାଇରେ ଦେବୀଙ୍କରହିଁ ଆର୍ଯ୍ୟ ନାମ ।

Digitized by srujanika@gmail.com

ଅର୍ଥନୈତିକ ଦୃଷ୍ଟିକୋଣରୁ ମଧ୍ୟ କନ୍ଧମାନଙ୍କର ସ୍ଥାନ ବିଶେଷ ଉଚ୍ଚରେ ଥିଲା । ଭାରତ ଇତିହାସର ମଧ୍ୟଯୁଗରୁ ବିଶେଷ ଭାବରେ ବଳବତ୍ତର ହୋଇଥିବା ସାମନ୍ତବାଦହିଁ ଏମାନଙ୍କର ଅର୍ଥନୈତିକ ମାନଦଣ୍ଡକୁ ନଷ୍ଟକରି ଦେଇଛି । ୨୩୫।। କ୍ୟାପ୍‌ଟେନ୍ ଗେଟେ ତାଙ୍କର ଟ୍ରାଭେଲସ୍ ଇନ୍ ଟ୍ରାଇବାଲ ଓଡ଼ିଶା ପୁସ୍ତକରେ କନ୍ଧମାନଙ୍କର ସଂସ୍କୃତିର ଅନ୍ତଃସ୍ଥଳ ଆର୍ଯ୍ୟ ସଂସ୍କୃତିର ପ୍ରତିପଦକ୍ଷେପରେ ମର୍ମେମର୍ମେ ଅନୁରଣିତ ହେଉଛି ବୋଲି ଉଲ୍ଲେଖ କରିଛନ୍ତି । ୨୩୬।। ଏହି କନ୍ଧ ସଂସ୍କୃତି ଉପରେ ପ୍ରଣୀତ ହୋଇଥିବା ଅଧିକାଂଶ ଗ୍ରନ୍ଥର ଆଧାର ଭୂମି ହେଉଛି କଳାହାଣ୍ଡି ଓ କୋରାପୁଟ (ଏହା ସର୍ବଭାରତୀୟ ପରିପ୍ରେକ୍ଷୀରେ ବୋଲି ବୁଝିବାକୁ ହେବ) ଅତଏବ ଏହିସବୁ ସମାଲୋଚନାରୁ ଏହା ନିର୍ବିବାଦରେ କୁହାଯାଇପାରେ ଯେ କଳାହାଣ୍ଡି ଏକ ସମୁନ୍ନତ ରାଜ୍ୟଥିଲା । ସମୟର କଳନାତ୍ମକ କଳା ଦୃଷ୍ଟିକୋଣରୁ ଅନ୍ୟାନ୍ୟ ଆର୍ଯ୍ୟଜାତିଙ୍କ ତୁଳନାରେ ସମସାମୟିକ କନ୍ଧମାନେ ଅସଭ୍ୟ ନଥିଲେ, ତାଙ୍କର ଏକ ବଳିଷ୍ଠ ସଂସ୍କୃତିଥିଲା ଓ ସେହି ସଂସ୍କୃତିକୁ କେନ୍ଦ୍ରକରିହିଁ ଦର୍ଶନ କୌଶଳ ତଥା ପଶ୍ଚିମ ଓଡ଼ିଶାର ସଂସ୍କୃତି ଗଢ଼ି ଉଠିଥିଲା, ଏହି କନ୍ଧମାନଙ୍କର ବିଭାଷାର ମର୍ମଭେଦ କରିନପାରି ଅନେକ ଗବେଷକ ଭ୍ରାନ୍ତିମୂଳକ ଭାବରେ ସମ୍ବଲପୁର, ବଲାଙ୍ଗୀର ଓ କଳାହାଣ୍ଡି କେତେକ ଅଞ୍ଚଳର କଥିତ କନ୍ଧମାନଙ୍କର କନ୍ଧାନ ଭାଷାକୁ ସମ୍ବଲପୁରୀ ବା ଓଡ଼ିଆର ଏକ ଉପଭାଷା ବୋଲି ଗଣନା କରିଥାନ୍ତି । ଅବଶ୍ୟ କୋରାପୁଟ ଅଞ୍ଚଳର କନ୍ଧକୁଇ ଭାଷା ଏ କ୍ଷେତ୍ରରେ ସ୍ୱତନ୍ତ୍ର ମର୍ଯ୍ୟାଦା ଲାଭ କରିଛି । ଏହି ଭାଷାର ମୂଳତତ୍ତ୍ୱ ଇଣ୍ଡୋ ଇଉରୋପୀୟ ଭାଷାଗୋଷ୍ଠୀର ପରିଧିଭିତରେ ନିହିତ । ତାମିଲ ତେଲୁଗୁ ଭାଷାକୁ ଅନାର୍ଯ୍ୟ ଭାଷାରୂପେ ଗ୍ରହଣ କରାଯାଉଥିଲେ ମଧ୍ୟ ଏହି ଭାଷା ଗୁଡ଼ିକରେ ଅନେକ ସଂସ୍କୃତି ଶବ୍ଦ ଦେଖିବାକୁ ମିଳେ ।୨୩୭।। ତାହା ପରବର୍ତ୍ତୀ କାଳର ସଂସ୍କୃତର ପ୍ରକ୍ଷେପ । ଅଣ ସଂସ୍କୃତ ଶବ୍ଦ ଗୁଡ଼ିକ ଅନାର୍ଯ୍ୟ ଭାଷାର ସମଧର୍ମୀ କହିଲେ ଚଳେ । କଳାହାଣ୍ଡିର କନ୍ଧମାନଙ୍କର ଢ଼ାନଗୀତରେ ବ୍ୟବହୃତ ବହୁଭାଷାର ହେତୁଶବ୍ଦ ଯଦିଓ ସଂସ୍କୃତି ଭିତ୍ତିକ ବ୍ୟୁତ୍ପତ୍ତିକୁ ଅପେକ୍ଷା କରେ ତଥାପି ମଧ୍ୟ ଏଥିରେ କୁଇ ପ୍ରଭାବ ସହିତ କୁଇ ପରି ବହୁ ମୌଳିକ ନିଜସ୍ୱ ଶବ୍ଦ ସଂପଦ ଦୃଷ୍ଟିଗୋଚର ହୋଇଥାଏ । ୨୩୮।। ଭାରତ ଇତିହାସର ଭାଷାକାଳରେ କେବଳ ଯେ ସଂସ୍କୃତଥିଲା ଏହା କୁହାଯାଇନପାରେ ।୨୩୯।। ଆଇରେଲ୍, କୁର୍‌ମୁଟା ଇତ୍ୟାଦି ଅନେକ କନ୍ଧଜାତିର ଶବ୍ଦ ଯାହାକି 'ଟା'ଙ୍ଗ, ଙ୍ଗା, ଇତ୍ୟାଦି ପ୍ରତ୍ୟୟରେ ଶେଷହୁଏ ସେପରି ଶବ୍ଦ ଗୁଡ଼ିକ ସିନ୍ଧୁ ସଭ୍ୟତାର ପିକ୍‌ଟୋ ଫୋନୋଗ୍ରାଫିକ ଇନ୍‌ସ୍କ୍ରିପସନ୍ ତଥା ଛବି ଓ ଧ୍ୱନିବ୍ୟଞ୍ଜକ ତଥା କଥିତ ଅନାର୍ଯ୍ୟ ଅଭିଲେଖ ଗୁଡ଼ିକରେ ଦେଖିବାକୁ ମିଳିଥାଏ । ୨୪୦।। ଏହି ଦୃଷ୍ଟିକୋଣରୁ ଏହି କନ୍ଧ ଭାଷା ଓ ବହୁଭାବରେ ଆଦିବାସୀ ପ୍ରଭାବିତ ପଶ୍ଚିମ ଓଡ଼ିଶାର ଭାଷାର ସ୍ୱୀୟ ସ୍ୱାତନ୍ତ୍ର୍ୟ ରହିଛି ।୨୪୧।। ବହୁ ପ୍ରାଚୀନକାଳର ପ୍ରାଚୀନତାକୁ ରକ୍ଷାକରି ଏହା ହୋଇପାରେ ଏକ

Digitized by srujanika@gmail.com

ଅଶିକ୍ଷିତ ଗୋଷ୍ଠୀର ବିଭାଷା (କନ୍ଧଭାଷା) ଯାହାକି ଅନେକ ବିକୃତି ଓ ଅପଭ୍ରଂଶ ଦେଇ ଏକ ସାହିତ୍ୟ ସମନ୍ୱିତ ବିକାଶୋନ୍ମୁଖୀ ଭାଷା ଭାବରେ ମୌଳିକତା ରକ୍ଷା କରିପାରିଛି । ଏହି ଆଲୋଚିତ ମୂଳଭାଷାରେ ଯେଉଁ ଢ଼ାପଗୀତମାନ ମିଳିଛି ତହିରେ ହିଁ ଆଲୋଚ୍ୟ କନ୍ଧଜାତିର ବହୁ ସାଂସ୍କୃତିକ ଆଲେଖ୍ୟ ରହିଛି । ଏହାର ମୌଳିକତା ତେଣୁ ଗବେଷଣା ସାପେକ୍ଷ, କିନ୍ତୁ ଉପେକ୍ଷଣୀୟ ନୁହେଁ । ଏହି ଦିଗରେ ଉପେକ୍ଷାହିଁ ଭ୍ରାନ୍ତି ଓ ଗବେଷଣାହିଁ ସତ୍ୟପଥରେ ଅଗ୍ରଗତି ।

ଅତଏବ କଳାହାଣ୍ଡି ଯେ ଆଦିବାସୀ ଅଧ୍ୟୁଷିତ ଏକ ଆଦିବାସୀ ଭୂମିଥିଲା ଓ ଏହାର ସନ୍ତାନ ସନ୍ତତିବର୍ଗ ରାଜନୈତିକ, ସାମାଜିକ, ଧର୍ମଭିତ୍ତିକ ଓ ଅର୍ଥନୈତିକ ସର୍ବୋପରି ସାଂସ୍କୃତିକ ଦୃଷ୍ଟିକୋଣରୁ ଆର୍ଯ୍ୟମାନଙ୍କ ଅପେକ୍ଷା ତତ୍‌କାଳିନ ତୁଳାଦଣ୍ଡରେ କୌଣସି ଗୁଣରେ ନ୍ୟୁନ ନଥିଲେ, ପୁନଶ୍ଚ ଏହି ଅଞ୍ଚଳରେ ଆଦିବାସୀ ସଂସ୍କୃତିର କନ୍ଧମାନଙ୍କର ବୈଶିଷ୍ଟ୍ୟ ଓ ଭୂମିକା ଏକ ଅନବହେଳିତ ସ୍ଥାନ ଅଧିକାର କରିପାରିଥିଲା ଏହା ବଳିଷ୍ଠତର ଯୌକ୍ତିକତାର ସହ କୁହାଯାଇପାରେ ।



ଲେଖକଙ୍କ– (କଳାହାଣ୍ଡିର ଲୋକଗୀତ ଢ଼ାପର
ସଂଗ୍ରହ ଓ ସମୀକ୍ଷା (୧୯୮୮) ସନ୍ଦର୍ଭର କିୟଦଂଶ)

Digitized by srujanika@gmail.com

# କଳାହାଣ୍ଡିର ସ୍ରଷ୍ଟା ଓ ସୃଷ୍ଟି

ଡ଼କ୍ଟର ମହେନ୍ଦ୍ର କୁମାର ମିଶ୍ର

ଅଷ୍ଟାଦଶ ଶତାବ୍ଦୀରୁ ଏ ଅବଧି ଏହି ଅଞ୍ଚଳର ଅଗଣିତ କବି, ଲେଖକ ଓ ସାହିତ୍ୟିକ ଓଡ଼ିଆ ସାହିତ୍ୟ ସାଧନା କ୍ଷେତ୍ରରେ ବ୍ରତୀ ହୋଇଥିଅଛନ୍ତି । ଆଭିମୁଖ୍ୟ ଓ ଆଦର୍ଶ ଦୃଷ୍ଟିରୁ ଏହି ଅଞ୍ଚଳର ରଚନାବଳୀ ଅନେକାଂଶରେ ପାରଂପରିକ । ଗୁଣ ମୂଳ ଦିଗରୁ ଏହି ଅଞ୍ଚଳର କେତେକ ସାହିତ୍ୟ କାରଙ୍କ ରଚନା ଓଡ଼ିଆ ସାହିତ୍ୟରେ ଶୀର୍ଷ ସ୍ଥାନର ଅଧିକାରୀ । ଏହି ତାଲିକାରେ କଳାହାଣ୍ଡିର ଅନେକ କବି ଲେଖକଙ୍କ କାଳାନୁକ୍ରମିକ ସୃଷ୍ଟିକୁ ନେଇ ପ୍ରସ୍ତୁତ କରଯାଇଛି । ଏହି ତାଲିକାରେ ଏହି ଲେଖକର ଅଜ୍ଞାତ କୌଣସି ସାହିତ୍ୟକାର ଛାଡ଼ିଯାଇ ଥାଇ ପାରନ୍ତି । ଯେଉଁମାନେ ଏଥିପାଇଁ ଲେଖକଙ୍କୁ ଜଣାଇଲେ ପରବର୍ତ୍ତୀ କାଳେ ଏ ଜିଲ୍ଲାର ପୂର୍ଣ୍ଣ କବି ତାଲିକା ପ୍ରସ୍ତୁତ କରିବାରେ ସମର୍ଥ ହୋଇ ପାରିବ । ଲେଖକ ।।

**କବି ଚୈତନ୍ୟ ଦାସ:-** ଅଷ୍ଟାଦସ ଶତାବ୍ଦୀର ସନ୍ଥକବି । ଖଡ଼ିଆଳ ରାଜ୍ୟ ଅନ୍ତର୍ଗତ ବଡମୁଣ୍ଡା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଖଡ଼ିଆଳ ରାଜା ପ୍ରତାପରୁଦ୍ର ଦେବ [ଖ୍ରୀ୧୭୯୩ ୧୮୧୮] ଙ୍କ ସମସାମୟିକ ଥିଲେ ବୋଲି ଜଣାଯାଏ । ତାଙ୍କ ରଚନାରେ ବୌଦ୍ଧ ଶୂନ୍ୟବାଦୀ ଦର୍ଶନ ପ୍ରତିଫଳିତ । ସେ ବିଷ୍ଣୁଗର୍ଭ ପୁରାଣ, ଦେବଦର୍ଶନ ପୁରାଣ ଓ ନିର୍ଗୁଣ ମହାତ୍ମ୍ୟ ପୁରାଣ ରଚନା କରିଥିଲେ ।

**ଗୋପାଳ ତେଲେଙ୍ଗା:-** ଅଷ୍ଟାଦଶ ଶତାବ୍ଦୀର କବି । ପ୍ରଥମେ କଳାହାଣ୍ଡି ରାଜାଙ୍କ ପାଖରେ ଥାଇ ଓଡ଼ିଆ ଶିକ୍ଷା କରିଥିଲେ । ପରେ ସମ୍ବଲପୁର ରାଜା ଅଜିତ୍ ସିଂହଙ୍କ ଠାରେ ରହିଥିଲେ । ସେ ଆଧ୍ୟାତ୍ମ ରାମାୟଣ ରଚନା କରିଥିଲେ ।

**କବି ପୀତାମ୍ବର ଦାସ:-** ଅଷ୍ଟଦଶ ଶତାବ୍ଦୀର କବି । ସେ "ଚନ୍ଦ୍ରହାସ କେଳି ଅଭିଳାଷ" କାବ୍ୟ ରଚନା କରିଥିଲେ । ଏ ପୋଥିଟି ସଂପ୍ରତି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସୁରକ୍ଷିତ ।

**କବି ହରିଦାସ ଜଉତଷ:-** ଊନବିଂଶ ଶତାବ୍ଦୀର ଶେଷ ଭାଗର କବି । ଜନ୍ମ ଲଦ୍‌ଗାଁ । ସେ ସୁଲୋଚନା ହରଣ ସୁଆଙ୍ଗ ତଥା 'ଚନ୍ଦ୍ରାବତୀ ବିଳାସ' କାବ୍ୟ ରଚନା କରିଥିଲେ

Digitized by srujanika@gmail.com

ତାଙ୍କ କାବ୍ୟ ଗୁଡ଼ିକ ଛନ୍ଦନାଟ୍ୟ ଓ ସୁଆଙ୍ଗ ରୂପେ କଳାହାଣ୍ଡିର ଲୋକ ନାଟ୍ୟକାର ମାନଙ୍କ ଦ୍ୱାରା ଅଭିନୀତ ହେଉଅଛି । ତାଙ୍କ 'ଚନ୍ଦ୍ରାବତୀ ବିଳାସ' ପୋଥି ସଂପ୍ରତି ଏହି ଲେଖକ ପାଖରେ ଅଛି ।

**ଦାମୋଦର ପାତ୍ରଃ–** (୧୮୬୯–୧୯୩୭) ସମ୍ବଲପୁର ଜିଲ୍ଲାର ଜନାପଡ଼ା ଗ୍ରାମରୁ ଆସି କଳାହାଣ୍ଡିର ସିନାପାଲି ଗ୍ରାମରେ ଅବସ୍ଥାନ କରିଥିଲେ । ସେ ଚଣ୍ଡୀମାଳଶ୍ରୀ, ଦୁର୍ଗା-ମାଳଶ୍ରୀ, କାଳିକା ମାଳଶ୍ରୀ, ମଙ୍ଗଳା ମାଳଶ୍ରୀ, ହିଙ୍ଗୁଳା ମାଳଶ୍ରୀ ତଥା ଯଗର ଭଜନ ଦାର୍ଯିକା ଗୀତ ଓ ଶ୍ରୀହରି ଜଣାଣ ଚଉତିଶା ରଚନା କରିଥିଲେ । କବିଙ୍କ ରଚନାବଳୀ ଏହି ଲେଖକ ଦ୍ୱାରା ସଂପାଦିତ ହୋଇ ଓଡ଼ିଆ ଗବେଷଣା ପରିଷଦ, କଟକର ମୁଖପତ୍ର ଏଷଣା–୧୬ ଖଣ୍ଡରେ ପ୍ରକାଶିତ ।

**ରତନ ସିଂହଦେବ** [୧୮୧୮–୧୮୪୨] ଖଡ଼ିଆଳରଜା । ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ପ୍ରକାଶିତ ଖଡ଼ିଆଳ କୁସୁମ ଗୀତିମଞ୍ଜୁଷା (୧୯୫୫) ରେ ତାଙ୍କର ୭ଟି ଗୀତ ପ୍ରକାଶିତ । ଖଡ଼ିଆଳ ରାଜବଂଶର ପ୍ରଥମ କବି ।

**କୃଷ୍ଣଚନ୍ଦ୍ର ସିଂହଦେଓଃ-** ଖଡ଼ିଆଳ ରଜା । ସୁରେନ୍ଦ୍ର ସାଏଙ୍କ ବିପ୍ଳବରେ ଭାଗ ନେଇ ଥିଲେ । ଖଡ଼ିଆଳ କୁସୁମରେ ତାଙ୍କର ୪ଟି କବିତା ପ୍ରକାଶିତ ।

**ପଦ୍ମନ ସିଂହଦେଓଃ–** (୧୮୭୪–୧୮୯୯) ଖଡ଼ିଆଳର ରଜା । ରାଜକବି ବ୍ରଜରାଜଙ୍କ ପିତା । ସେ କବିତାଦି ରଚନା କରିଥିଲେ । ସେସବୁ ଖଡ଼ିଆଳ କୁସୁମରେ ପ୍ରକାଶିତ ।

**ଉଦିତ ପ୍ରତାପ ଦେବଃ–** (୧୮୫୩–୧୮୮୧) କଳାହାଣ୍ଡି ରାଜ୍ୟର ମହାରଜା । ସେ ବ୍ରାହ୍ମଣ ପଣ୍ଡିତଙ୍କୁ ତାଙ୍କ ରାଜ୍ୟ ଓ ରାଜ ସଭାରେ ସ୍ଥାନ ଦେଇଥିଲେ । ନିଜେ ଜଣେ ବିଦ୍ୱାନ ଥିଲେ । ସଂସ୍କୃତ ଭାଗବତର ଚତୁର୍ଦ୍ଦଶାକ୍ଷରୀ ଅନୁବାଦ କରିଥିଲେ । ଏହାର ଅସମ୍ପୂର୍ଣ୍ଣ ଅଂଶକୁ ତାଙ୍କ ରାଣୀ ଆଶାକୁମାରୀ ଦେବୀ ସଂପୂର୍ଣ୍ଣ କରିଥିଲେ । ରାଣୀ ନିଜେ ସୂର୍ଯ୍ୟବନ୍ଦନା ଚଉତିଶା ରଚନା କରିଥିଲେ ।

**ବ୍ରଜରାଜ ସିଂହଦେବଃ–** (୧୮୫୧–୧୯୦୭) ଖଡ଼ିଆଳର ରଜା ଓ ବିଶିଷ୍ଟ ରୀତି-ଯୁଗୀୟ କବି । ଗଙ୍ଗାଧର ଉତ୍କଳ ଲକ୍ଷ୍ମୀ କାବ୍ୟରେ ତାଙ୍କୁ ଦ୍ୱିତୀୟ ଉପେନ୍ଦ୍ର ଭଞ୍ଜ ରୂପେ ଅଭିହିତ କରିଛନ୍ତି । ୧୮୮୦ ରୁ ୧୮୮୯ ପର୍ଯ୍ୟନ୍ତ ଯୁବରାଜ ଥିଲାବେଳେ ସାହିତ୍ୟ ସାଧନା ରତ । ୧୮୮୩ ରେ ଖଡ଼ିଆଳ ସାହିତ୍ୟ ସମିତିର ପ୍ରତିଷ୍ଠାତା । ଏହି ସମିତିରେ

Digitized by srujanika@gmail.com

ଭୁବନେଶ୍ୱର ବଡପଣ୍ଡା, ହରେକୃଷ୍ଣ ପ୍ରହରାଜ, ଶଙ୍କର ଶାସ୍ତ୍ରୀ (ପୁରୀ) କାଳିଆ ବୈଦ୍ୟ ଯଶୋବନ୍ତ ରଓ ମୋଦକ, ଜଗଦାନନ୍ଦ ଠାକୁର, ଗଙ୍ଗାଧର ମହାପାତ୍ର, ରତନସିଂହ ବାରିକ, ଚନ୍ଦ୍ରଶେଖର ପଟ୍ଟଯୋଷୀ, ମଦନ ମୋହନ ପାଣିଗ୍ରାହୀ, ମଧୁସୂଦନ ପଟ୍ଟନାୟକ ପ୍ରମୁଖ ସଦସ୍ୟ ଓ କବି ଥିଲେ ।

କବି ବ୍ରଜରାଜ ଭଞ୍ଜୀୟ ରୀତି ଯୁଗୀୟ କାବ୍ୟାଦର୍ଶର ଅବଲମ୍ବନରେ ବ୍ରଜବଧୂ ବିଳାସ (୧୮୮୧) ରୂପମଞ୍ଜରୀ, ରନ୍ଧୁରା ଓ ଶୋଭବଲ୍ଲରୀ (୧୮୮୫) ପ୍ରବନ୍ଧ ଚିତ୍ରକାବ୍ୟ (୧୮୮୬) ବାଳାହକ ଚଉତିଶା, କ୍ଷମାନିଧି ଚଉତିଶା ଓ ମାନଭଙ୍ଗ ଚଉତିଶା ; ସଙ୍ଗୀତ ଗୁଚ୍ଛ ରଚନା କରିଥିଲେ । ସେ ସ୍କନ୍ଦ ପୁରାଣ ର ସତ୍ୟନାରାୟଣ ବ୍ରତକଥା ଓଡ଼ିଆରେ ଅନୁବାଦ କରିଥିଲେ । ତାଙ୍କର ଜୀବନୀ ଓ ସୃଷ୍ଟିକର୍ମ ରାଜ୍ୟ ସଂସ୍କୃତି ବିଭାଗ ଦ୍ୱାରା ବ୍ରଜରାଜ ଗ୍ରନ୍ଥାବଳୀ ରୂପେ ୧୯୯୫ ରେ ପ୍ରକାଶିତ । ଖଡ଼ିଆଳ ସାହିତ୍ୟ ସମିତି ଓଡ଼ିଶାର ଏକ ଶତାୟୁ ସାହିତ୍ୟାନୁଷ୍ଠାନ ।

**ଶିବ ପ୍ରସାଦ ପ୍ରହରାଜ:-** (୧୮୬୯–୧୯୬୦) କବି ଶିବପ୍ରସାଦ ରାଜକର୍ମଚାରୀ ଥିଲେ ତଥା କବି ରୂପେ ଖ୍ୟାତି ଅର୍ଜନ କରିଥିଲେ । ସେ ମହାଲକ୍ଷ୍ମୀ ଚଉତିଶା, ବସନ୍ତ କୋଇଲି ଚଉତିଶା ଓ ଚଉପଦୀ ମାଳା ରଚନା କରିଥିଲେ । ଖ୍ରୀ: ୧୯୮୩ରେ ତଦୀୟ ପ୍ରପୌତ୍ର ଶ୍ରୀ ମୋହିତ ମୋହନ ମହାପାତ୍ରଙ୍କ ଦ୍ୱାରା କବିଙ୍କ ସମସ୍ତ ରଚନା ସଙ୍କଳିତ ହୋଇ " କବି ଶିବପ୍ରସାଦ : ଏକ ବିସ୍ମୃତ ପ୍ରତିଭା " ପୁସ୍ତକ ରୂପେ ପ୍ରକାଶିତ ।

**ରାମଚନ୍ଦ୍ର ରାଜଗୁରୁ:-** ବ୍ରଜରାଜ ଓ ବୀରବିକ୍ରମଙ୍କ ସମସାମୟିକ । ଖଡ଼ିଆଳ ତଥା କଳାହାଣ୍ଡି ରାଜ ଦରବାରରେ ସଭାକବି । ବାମଣ୍ଡା ରାଜସଭାରେ ବାଣୀଭୂଷଣ ଉପାଧିପ୍ରାପ୍ତ ଖଡ଼ିଆଳର ରାଜକବି ବୀରବିକ୍ରମଙ୍କ ସଂଗୀତ କୁସୁମାଞ୍ଜଳିର ପ୍ରକାଶକ । ତାଙ୍କ କବିତା ଖଡ଼ିଆଳ କୁସୁମରେ ପ୍ରକାଶିତ । ଅପ୍ରକାଶିତ ରଚନାବଳୀ : ଜଳାମେଘ ଚଉତିଶା, କାମକଳା ଚଉତିଶା, ମୋହନ ଚଉତିଶା, ସୀତା ବିଳାପ, ରାମ ବିଳାପ ପ୍ରମୁଖ ।

**ବୀରବିକ୍ରମ ଦେଓ:-** (୧୮୬୪–୧୯୧୧) ଖଡ଼ିଆଳର ରାଜକବି ବ୍ରଜରାଜଙ୍କ ଜ୍ୟେଷ୍ଠ କୁମର, ଓଡ଼ିଆ ନାଟକର ଉନ୍ମେଷ କାଳୀନ ନାଟ୍ୟକାର । ୧୮୯୫ ମସିହାରେ ଖଡ଼ିଆଳ ଠାରେ ବିକ୍ରମ ଥିଏଟର ପ୍ରତିଷ୍ଠା । ୧୮୯୭ ଠାରୁ ୧୯୧୧ ପର୍ଯ୍ୟନ୍ତ ଚଉଦ ଖଣ୍ଡ ନାଟକ ରଚନା ଓ ବିକ୍ରମ ଥିଏଟରରେ ମଞ୍ଚାୟନ । ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ କବିଙ୍କର

Digitized by srujanika@gmail.com

ରାଧାନାଥ ରାୟ, ସ୍ୱଭାବ କବି ଗଙ୍ଗାଧର, ନୀଳମଣି ବିଦ୍ୟାରତ୍ନ, ଚିନ୍ତାମଣି ମହାନ୍ତି, ରାମଶଙ୍କର ରାୟ, ଗୋପବନ୍ଧୁ, ମଧୁସୂଦନ ଦାସ, ବିଶ୍ୱନାଥ କର, ମୟୁରଭଞ୍ଜ ତଥା ପାରଳା ମହାରାଜାଙ୍କ ସହ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ସହଯୋଗ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ନାଟକର ବିକାଶ ପାଇଁ ତାଙ୍କ ଅବଦାନ ଅତୁଳନୀୟ । ଖ୍ରୀ ୧୯୦୪ ର ଉତ୍କଳ ସମ୍ମିଳନୀରେ ଗଙ୍ଗାଧର ମେହେରଙ୍କ ପ୍ରସ୍ତାବକ୍ରମେ "ଉତ୍କଳୀୟ ବୈଷୟିକ ଉନ୍ନତି ସମିତି" ତଥା ଉତ୍କଳଭାଷୀ ଅଞ୍ଚଳର କୃଷିଶିଳ୍ପ ଉନ୍ନତି ସମିତିର ସଭ୍ୟଥିଲେ । ମେଧାବୀ ଛାତ୍ର ଦୁର୍ଗା ସମିତିରେ ମଧ୍ୟ ସେ ସଭ୍ୟଥିଲେ । ତତ୍କାଳୀନ ସାହିତ୍ୟ ପତ୍ରିକା ଉତ୍କଳ ଦୀପିକା, ଓଡ଼ିଆ ଓ ନବସମ୍ବାଦ ଆଦିରେ ତାଙ୍କର ନାଟ୍ୟକୃତିର ଆଲୋଚନା ହୋଇଅଛି । ନିଜେ ବୀରବିକ୍ରମ ଉତ୍କଳ ସମ୍ମିଳନୀ ୧୯୦୩ ର ଦ୍ୱିତୀୟ ଅଧିବେଶନରେ 'ଉତ୍କଳ ଦୁର୍ଦ୍ଦଶା' ନାଟକ ୬୦୦ କପି ଛପାଇ ବଣ୍ଟାଇଥିଲେ । ତାଙ୍କ ରଚିତ ନାଟକ ଗୁଡ଼ିକ ଯେମିତି [୧୯୦୨] ଉତ୍କଳ ଦୁର୍ଦ୍ଦଶା, ଅମ୍ବିକା ଦେବୀ ଓ କୁସୁମ ସୁନ୍ଦରୀ ୧୯୦୪, ବୃଦ୍ଧବିବାହ ୧୯୦୫, ବ୍ୟଭିଚାର ଦୋଷ ପ୍ରଦର୍ଶନ ୧୯୦୬, 'ବାଲ୍ୟବିବାହ' ଓ 'ସୁହାସିନୀ ପ୍ରହସନ' ୧୯୦୭, ଶୈଳବାଳା ୧୯୦୮, ଭାତୃସ୍ନେହ ୧୯୦୯, ହରିଶ୍ଚନ୍ଦ୍ର ୧୯୧୧, ପ୍ରମୁଖ । ସେ 'ପଞ୍ଜାବ ପତନ' ନାମକ ଏକ ନାଟକ ଲେଖି ଛପାଇ ଥିଲେ । ଏହା ମୟୁର ଭଞ୍ଜର ପ୍ରଭା ପ୍ରେସ୍‌ରେ ଚିନ୍ତାମଣି ମହାନ୍ତିଙ୍କ ଦ୍ୱାରା ମୁଦ୍ରିତ ହୋଇଥିଲା । କିନ୍ତୁ ନାଟକଟିରେ ଇଂରେଜ ବିରୋଧୀ ପ୍ରସଙ୍ଗ ଥିବା ହେତୁ ତାକୁ ବାଜ୍ୟାପ୍ତ କରି ଦିଆଯାଇଥିଲା ।

ସେ 'ନାଟକ ରଚନା ପ୍ରଣାଳୀ' ନାମକ ଏକ ନାଟ୍ୟ ଆଲୋଚନା ମୂଳକ ପୁସ୍ତକ ଭାରତୀୟ ନାଟ୍ୟଶାସ୍ତ୍ର ଓ ଗ୍ରୀକ୍ ନାଟ୍ୟ ଶାସ୍ତ୍ରର ଅନୁକରଣରେ ଲେଖିଥିଲେ । ଏହା ଓଡ଼ିଆରେ ପ୍ରଥମ ନାଟ୍ୟ ଆଲୋଚନା ମୂଳକ ପୁସ୍ତକ । 'ଅଭିନୟ ପ୍ରକାଶିକା' ତାଙ୍କ ଓଡ଼ିଶୀ ନୃତ୍ୟ ସମ୍ପର୍କୀୟ ଏକ ସଚିତ୍ର ପୁସ୍ତକ । ଏହାଛଡ଼ା ବୀରବିକ୍ରମ କପର୍ଦ୍ଦି ଜଣାଣ ୧୮୯୭ ପ୍ରବଳରାଜ ଜଣାଣ, ଜନକ ଗୌରୀ କୋଇଲି, ବସନ୍ତ କୋକିଳ ଚଉତିଶା, ସଭାପ୍ର ସାଗର ୧୯୦୬ କୃପାମୟୀ ଜଣାଣ, ସଙ୍ଗୀତ କୁସୁମାଞ୍ଜଳି ୧୯୦୬ ଅଶ୍ୱଶାସ୍ତ୍ର ଓ ଗଜଶାସ୍ତ୍ର ୧୯୦୯ ରାଜକୁମାର ଶିକ୍ଷା (ହିନ୍ଦୀ) ପ୍ରଶ୍ନମାଳା ଓ ୬୧ ପ୍ରକାର ହସ୍ତୀର ଚିତ୍ର ସହିତ ବିବରଣୀ ମୂଳକ ପୁସ୍ତକ ଟିଏ ରଚନା କରିଥିଲେ । ସେ ତୁଳସୀ ରାମାୟଣର ଓଡ଼ିଆ ଅନୁବାଦ କରିଥିଲେ । ବୀରବିକ୍ରମଙ୍କ ସମଗ୍ର ନାଟ୍ୟକୃତି ୧୯୭୭ରେ ଡ. ଭୂପେନ୍ଦ୍ର ମହାନ୍ତିଙ୍କ ଦ୍ୱାରା ସଂପାଦିତ ହୋଇ "ବୀରବିକ୍ରମ ନାଟକାବଳୀ" ରୂପେ ପ୍ରକାଶିତ ।

Digitized by srujanika@gmail.com

**ବୀରବର ସିଂହନ୍ନନା** :– ୧୮୭୪ ମସିହାରେ ମଦନପୁର ରାମପୁର ରାଜ ବଂଶରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ କୁମୁଦ ସିଂହ । ଖଡ଼ିଆଳ ରାଜା ପଦ୍ମନ ସିଂହଙ୍କ ରାଜତ୍ୱ ସମୟରେ କୁମୁଦ ସିଂହ ଖଡ଼ିଆଳ ଆସି ସ୍ଥାୟୀ ଭାବେ ସେଠାରେ ବସବାସ କଲେ । ବୀରବର ସିଂହନିନା ବ୍ରଜରାଜ ସିଂହ ଦେବଙ୍କ ସମ ସାମୟିକ । ତାହାଙ୍କ ରଚିତ ସ୍ତୁତି କଥା ତଥା ଅନ୍ୟାନ୍ୟ କେତେକ କବିତା ୧୯୫୫ ମସିହାରେ ଖଡ଼ିଆଳ କୁସୁମ ୧ମ ଭାଗ ଆକାରରେ ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ପ୍ରକାଶିତ । ତାହାଙ୍କ ପାତାଳଗଙ୍ଗା କାବ୍ୟର ଶୈଳୀ ରାଧାନାଥଙ୍କ ଶୈଳୀ ଅନୁରୂପ ।

**ଶିବନାରାୟଣ ଦେବ** :– (୧୮୭୬–୧୯୫୭) କବି ବ୍ରଜରାଜଙ୍କ କନିଷ୍ଠ କୁମର ତଥା ଖଡ଼ିଆଳ ଯୁବରାଜ ନାଟ୍ୟକାର ବୀରବିକ୍ରମଙ୍କ ଅନୁଜ । ଜଣେ ବିଶିଷ୍ଟ କବି ଓ ସଂଗଠକ । ଖ୍ରୀ ୧୯୦୨ ରେ ରାଧାନାଥ ଗ୍ରନ୍ଥାବଳୀର ପ୍ରଥମ ପ୍ରକାଶକ ରୂପେ ଦାୟିତ୍ୱ ତୁଲାଇଥିଲେ । ଶଶୀଭୂଷଣ ରାୟଙ୍କ ସହିତ ମୈତ୍ରୀ ବନ୍ଧନରେ ଆବଦ୍ଧଥିଲେ । ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ପାଇଁ ଆର୍ଥିକ ସାହାଯ୍ୟ ତଥା ଖଡ଼ିଆଳ ଅଞ୍ଚଳର ଭାଷା ସଂଗ୍ରହକରି ଦେଇଥିଲେ । ଖଡ଼ିଆଳକୁ ଓଡ଼ିଶାରେ ମିଶାଇବା ପାଇଁ ଗୋପବନ୍ଧୁଙ୍କ ପ୍ରେରଣାରେ ସଂଗଠନାତ୍ମକ କାର୍ଯ୍ୟରେ ଅଗ୍ରଣୀଥିଲେ । ସେ ଆଞ୍ଚଳିକ ଭାଷାରେ କବିତାଦି ଓ ନାଟକାଦି ରଚନା କରିଥିଲେ । କୌତୁକ କୋଳାହଳ ବା ମଧୁମାଳତୀ ନାଟକ ଖଡ଼ିଆଳ ଅଞ୍ଚଳର ଲୋକଭାଷାରେ ଲିଖିତ । ଏହା ଓଡ଼ିଆ ଗବେଷଣା ପରିଷଦର ମୁଖପତ୍ର ଏଷଣାରେ ପ୍ରକାଶିତ । ପ୍ରକାଶିତ ରଚନା- ଜାତି ଜାତି ଫୁଲ (୧୯୫୫) । ଖଡ଼ିଆଳ କୁସୁମରେ କବିତାବଳୀ ପ୍ରକାଶିତ । "ରାବଣେ ଇଦୋ ବାଘ" ନାଟକଟି ରାଜ୍ୟ ସଂଗ୍ରହାଳୟରେ ସୁରକ୍ଷିତ ।

**ଲକ୍ଷ୍ମଣ ପଟ୍ଟନାୟକ** :– ୧୯୨୦–୧୯୪୦ ମଧ୍ୟରେ ଖଡ଼ିଆଳର ରାଜକର୍ମଚାରୀ ରୂପେ ଥିଲାବେଳେ ସାହିତ୍ୟ କର୍ମରେ ନିୟୋଜିତ ଥିଲେ । ସେ ତତ୍କାଳୀନ ବିଶିଷ୍ଟ ଓଡ଼ିଆ ନାଟ୍ୟକାର ତଥା କବିଥିଲେ । ଉତ୍କଳ ସାହିତ୍ୟ ପତ୍ରିକାରେ ତାଙ୍କ ରଚନାବଳୀ ପ୍ରକାଶିତ । ଖଡ଼ିଆଳର ବିକ୍ରମ ଥିଏଟର ଓ ବଲାଙ୍ଗୀରର ଜର୍ଜଲିଟରାରୀ କ୍ଲବ୍‌ରେ ନାଟକ ମଞ୍ଚସ୍ଥ କରିଥିଲେ । ଖଡ଼ିଆଳରେ ଇଂରେଜ ବିରୋଧୀ କାର୍ଯ୍ୟକଳାପ ଯୋଗୁଁ ବହିଷ୍କୃତ ହୋଇ ବଲାଙ୍ଗୀରରେ ଆଶ୍ରୟ ନେଇଥିଲେ । ତାଙ୍କ ନାଟକ ଭୟଙ୍କର ପୁରସ୍କାର (୧୯୧୯) ଓ ବିଷାକ୍ତ ପ୍ରଣୟ ୧୯୨୮) ତଥା ଐତିହାସିକ ନାଟକ ଯଯାତି କେଶରୀ ଉଲ୍ଲେଖଯୋଗ୍ୟ । ବଙ୍ଗଳା ନାଟକ ସତ୍ୟ ମଙ୍ଗଳ ଓ ଦୁର୍ଗେଶ ନନ୍ଦିନୀର ଓଡ଼ିଆ ଅନୁବାଦ କରିଥିଲେ ।

Digitized by srujanika@gmail.com

**ଦାମୋଦର ମିଶ୍ର ପଦ୍ୟାଳଙ୍କାର** :— ଖଡ଼ିଆଳର କବି ଦାମୋଦର ମିଶ୍ର ବାମଣ୍ଡା ଯାଇ ସେଠାରେ ରାଜସଭାରେ ପଦ୍ୟାଳଙ୍କାର ଉପାଧି ପ୍ରାପ୍ତ । ଶିକ୍ଷକତା କରି ବାମଣ୍ଡା ପ୍ରେସ୍‌ରେ ସହ ସମ୍ପାଦକ ରୂପେ ଥିଲେ ।

**ଦୁର୍ଗାମାଧବ ପ୍ରସାଦ ସିଂହ ଦେଓ** :— ମଦନପୁର ରାମପୁର ରାଜା ତଥା ବିଶିଷ୍ଟ ନାଟ୍ୟକାର । ୧୯୨୫ ରେ ରାମପୁର ଠାରେ ଚନ୍ଦ୍ରମଣି ଥିଏଟର ପ୍ରତିଷ୍ଠା । ସେ 'ଜ୍ୟୋତ୍ସ୍ନା-ବାଈ' (ସତ୍ୟବାଦୀ ପ୍ରେସ୍ କଟକ ୧୯୩୩) ଓ 'ଅନୁତପ୍ତ' (ଉତ୍କଳ ସାହିତ୍ୟ ପ୍ରେସ୍, କଟକ ୧୯୩୩) ତଥା ଗୃହସ୍ଥ ଚିତ୍ର (ଅପ୍ରକାଶିତ) ନାଟକ ରଚନା କରିଥିଲେ । ଦୁର୍ଗା-ମାଧବ ବର୍ଣ୍ଣମାଳା ଜଣାଣ ଚଉତିଶା ରଚନା କରିଥିଲେ ।

**ଧର୍ମାନନ୍ଦ ତ୍ରିପାଠୀ** :— ବ୍ରଜମୋହନ ହାଇସ୍କୁଲର ପ୍ରାକ୍ତନ ପ୍ରଧାନ ଶିକ୍ଷକ । ତାଙ୍କ ରଚିତ "ପ୍ରକୃତ ବନ୍ଧୁ" ୧୯୨୫) ନାଟକ କଟିଙ୍କ ମଞ୍ଚସ୍ଥ ହେଇ ଲଞ୍ଜିଗଡ଼ ପୁରସ୍କାର ପ୍ରାପ୍ତ ।।

**ରଘୁମଣି ବିଶ୍ୱାଳ** :— ନାଟ୍ୟକାର ଦୁର୍ଗାମାଧବଙ୍କ ସହଚର । କବି ଓ ନାଟ୍ୟକାର । ଶୋଭାଳକ୍ଷ୍ମୀ ଓ ରତ୍ନପ୍ରଭା କାବ୍ୟର ରଚୟିତା ତଥା ତାଙ୍କ ଜଳନ୍ଧର ବଧ ନାଟକ ଚନ୍ଦ୍ର-ମଣି ରଙ୍ଗମଞ୍ଚରେ ଅଭିନୀତ ।

**ମନୋହର ମେହେର** :— (୧୮୮୫–୧୯୬୯) ସିନାପାଲିରେ ଜନ୍ମ ଗ୍ରହଣ କରି-ଥିଲେ । ଶତାଧିକ ଗୀତି କବିତା, ଚଉତିଶା, ସ୍ତବ, ସ୍ତୁତି, ମାଳିକା, ସଙ୍କୀର୍ତ୍ତନ, ଲୀଳା, ସୁଆଙ୍ଗ, ଆଦିର ରଚୟିତା । ତାଙ୍କ ରଚନାବଳୀ ୧୯୨୯ ରୁ କଟକ ଅରୁଣୋଦୟ ପ୍ରେସ୍, ଦାଶରଥି ପୁସ୍ତକାଳୟ, ମହାଲକ୍ଷ୍ମୀ ଭଣ୍ଡାର, ଧର୍ମଗ୍ରନ୍ଥ ଷ୍ଟୋର, ଚଣ୍ଡୀ ପୁସ୍ତକାଳୟ ଆଦିରେ ପ୍ରକାଶିତ । କବିଙ୍କ ୩୧ଟି ଭଜନ, ୧୨ଟି ଅବକାଶ ମାଳିକା, ୧୨ଟି ସଙ୍କୀର୍ତ୍ତନ ମାଳିକା, ୧୬ଟି ବନ୍ଦନା ଓ ସଂଗୀତ ତଥା ୩ ଗୋଟି କୋଇଲି ଚଉତିଶା ଉଦୀୟ ପ୍ରପୌତ୍ର ଡ଼: ହରେକୃଷ୍ଣ ମେହେରଙ୍କ ଦ୍ୱାରା "ମନୋହର ପଦ୍ୟାବଳୀ" ରୂପେ କବିଙ୍କ ଜନ୍ମ ଶତ-ବାର୍ଷିକୀ ଶ୍ରୀରାମ ନବମୀ ୧୯୮୫ ଦିନ ଉଦ୍‌ଘାଟିତ । ପ୍ରକାଶିତ ପୁସ୍ତକ ଗୁଡ଼ିକ ସ୍ତବ ଓ ସ୍ତୁତି: ଅହଲ୍ୟାସ୍ତବ, ଜଗନ୍ନାଥସ୍ତବ, ଦୁର୍ଗାସ୍ତୁତି, ମହାଦେବସ୍ତୁତି, ରବିନାରାୟଣସ୍ତବ, ବିଘ୍ନରାଜସ୍ତବ, ଦଶାବତାରସ୍ତବ, ମହାଲକ୍ଷ୍ମୀସ୍ତବ, ଶୀତଳାମାତାସ୍ତବ, ସରସ୍ୱତୀସ୍ତୁତି, ବ୍ରହ୍ମାସ୍ତୁତି, ମହାବୀର କବଚ ଚଉତିଶା : ଲକ୍ଷ୍ମୀକାନ୍ତ ଚଉତିଶା, ଚିନ୍ତାମଣି ଚଉତିଶା, କୃତ୍ତିବାସ ଚଉତିଶା, ମାନ ଉଦ୍ଧାରଣ ଚଉତିଶା, ରମାକାନ୍ତ ଚଉତିଶା ଅଙ୍ଗଦ ଚଉତିଶା, କମଳ ଲୋଚନ ଚଉତିଶା, ମୋହାଇମନ ଚଉତିଶା, ରାଧାମୋହନ ଚଉତିଶା, ଭବାନୀ-ଶଙ୍କର ଚଉତିଶା, ସମଲେଶ୍ୱରୀ ଚଉତିଶା ।

Digitized by srujanika@gmail.com

ବ୍ରତ ଓ ମେଳା :– ସୁଦଶାବ୍ରତ, ତ୍ରିନାଥ [illegible] ଚନ୍ଦ୍ରଶେଖର ବ୍ରତ ମନ୍ଦିର [illegible]ର-ବୋଲି ମାଳିକା– (୧୦ଟି ବୋଲିର ସମାହାର) [illegible] ଜାଇଫଳ ଗମ୍ଭୀ [illegible] ଫୁଲ-ଦୋଳା ଗୀତ, ବାରମାସୀ ସଜନୀ ଗୀତ, ଗୁଣ୍ଡିଚ୍ଚ ଯାତ୍ରା [illegible] ପ୍ରଦକ୍ଷିଣ [illegible] ଦଣ୍ଡନାଟ କପଟ ପାଶା, ରଘୁ ଅରକ୍ଷିତ ଚରିତ୍ର, ରସକେଳି, ଦୀନାକଣ୍ଠ [illegible], ସହୀବସା ଗୀତ, କଳିଯୁଗ ଚରିତ, ଗୋବିନ୍ଦଚନ୍ଦ୍ର ଲୀଳା ନାଟକ (୧୯୨୯)

ଜ୍ୟୋତିଷ ବିଷୟକ :– ଯାତ୍ରା ପ୍ରକରଣ, ସ୍ତ୍ରୀ ପୁଷ୍ପବତୀ ଫଳ ବିବାହ ଦଶମେଳକ, ଦୃଷ୍ଟି ବିଜ୍ଞାନ, ସ୍ୱପ୍ନ ପରୀକ୍ଷା ଫଳ ।

ଅପ୍ରକାଶିତ :– ଘମୁରା ପଟଳ ମାଳିକା, ପ୍ରଶ୍ନମାଳା, ଜ୍ୟୋତିଷ ପଦ୍ୟାବଳୀ, ଖଡ଼ିଆଳ-ଦୃଶ୍ୟ, ସିନାପାଲି ଦୃଶ୍ୟ, ଉଦନ୍ତୀ ଦୃଶ୍ୟ, ପାତାଳଗଙ୍ଗ ଦୃଶ୍ୟ, ସୀତାବାର୍ତ୍ତା ଗୀତ, ହୀରବତୀ ହରଣ ସୁଆଙ୍ଗ, ବିଲଙ୍କା ରମଲୀଳା, କାଳିଆଭୂଞ୍ଜ ଚରିତ୍ର ଆଦି ।

୧୯୩୪ ମସିହାରେ ଖଡ଼ିଆଳ ରାଜଦରବାରରେ ରାଜା ଆର୍ତ୍ତତ୍ରାଣ ଦେବଙ୍କ ଦ୍ୱାରା କବି ଉପାଧିରେ ଭୂଷିତ ।

**ମଦନ ମୋହନପାତ୍ର** :– (୧୯୦୧–୧୯୬୫) କବି ଦାମୋଦରଙ୍କ ପୁତ୍ର । ସୋମ-ନାଥ ମାହାତ୍ମ୍ୟ ଓ ଦୁର୍ଗାମାହାତ୍ମ୍ୟ ତଥା କେତେକ ଗୀତି କବିତାର ରଚୟିତା ।

**ଗଣେଶ୍ୱର ରଥ ବାଚସ୍ପତି** :– (୧୯୯୭-୧୯୮୫) ପଣ୍ଡିତ ଗଣେଶ୍ୱର ରଥ ବାଚସ୍ପତି ଏକାଧାରରେ ଜଣେ ବିଦ୍ୱାନ, ଜ୍ୟୋତିଷ, କବି, ଦାର୍ଶନିକ, ସାଧକ, ଶିକ୍ଷକ ଓ ସାହି-ତ୍ୟିକ । ସଂସ୍କୃତ ସାହିତ୍ୟକୁ ତାଙ୍କର ଅନବଦ୍ୟ ଅବଦାନ ଦ୍ୱାଦଶ ସର୍ଗ ବିଶିଷ୍ଟ ସଟୀକ ସଂସ୍କୃତ କାବ୍ୟ ପୁରୁଷୋତ୍ତମ ଚରିତ ତଥା ଏକାମ୍ର କାନନବାସୀ ଲିଙ୍ଗରାଜଙ୍କ ଚରିତକୁ ନେଇ ରଚିତ ଲିଙ୍ଗରାଜାୟନ । ଏହା ଛଡ଼ା ତାଙ୍କର ସକଳେଶ୍ୱର ଶତକ, ଭକ୍ତିଶତକ, ଶକ୍ତି ମହିମ୍ନସ୍ତବ, ଆଦି ସଂସ୍କୃତରେ ରଚିତ । କବିଙ୍କ ଓଡ଼ିଆ ରଚନା ମଧ୍ୟରେ ପଦ୍ମାବତୀ ପରିଣୟ ; କଲ୍ୟାଣୀ ଆଦି । ତାଛଡ଼ା ବ୍ରତ ବିଧାନ ପଦ୍ଧତି, ଚଣ୍ଡିବିଧାନ ପଦ୍ଧତି, ଓ ବ ଚସ୍ପତି କର୍ମକାଣ୍ଡ ଆଦି ସଙ୍କଳନ ଉଲ୍ଲେଖଯୋଗ୍ୟ । କଳାହାଣ୍ଡି ଦରବାରରେ 'ବାଚସ୍ପତି' ଉପାଧି ଦ୍ୱାରା ଭୂଷିତ ତଥା ଓଡ଼ିଶା ସାହିତ୍ୟ ଏକାଡେମୀ, ଉତ୍କଳପାଠକ ସଂସଦ ଦ୍ୱାରା ସମ୍ମାନିତ ।

**ଆର୍ତ୍ତତ୍ରାଣ ଦେବ** :– (୧୯୦୦–୧୯୪୭) ନାଟ୍ୟକାର ବୀର ବିକ୍ରମଙ୍କ କୁମର । କବି ଓ ନାଟ୍ୟକାର । ବୀରବିକ୍ରମଙ୍କ ପ୍ରତିଷ୍ଠିତ ବିକ୍ରମ ଥିଏଟରର ପ୍ରଯୋଜକ । ସାହିତ୍ୟ

Digitized by srujanika@gmail.com

ସଙ୍ଗୀତ କଳା ଓ ନାଟକ ଶିକ୍ଷାଦି କ୍ଷେତ୍ରରେ ଖଡ଼ିଆଳର ନବନିର୍ମାତା । ସେ ଲେଖିଥିବା ନାଟକ ୨ଟି ବିଜୟ ଝଙ୍କାର ଓ ଗଡବନ୍ଧ ଦାସ । ତାଙ୍କ ଗୀତି କବିତା ଖଡ଼ିଆଳ ହସ୍ତ-ମରେ ପ୍ରକାଶିତ । ଖଡ଼ିଆଳକୁ ଓଡ଼ିଶାରେ ମିଶାଇବା ପାଇଁ ଓଡନେଲ କମିଟୀଠାରେ ସ୍ୱୀକୃତି ପ୍ରଦାନ କରିଥିଲେ ।

**ଲାଲ ରୁଦ୍ରମାଧବ ଦେଓ :** (୧୯୦୨-୧୯୬୦) ରାଜ ଶିବନାରାୟଣଙ୍କ ପୁତ୍ର । ଜଣେ ବିଶିଷ୍ଟ ନାଟ୍ୟକାର ଓ ଅନୁବାଦକ, କବି ରୂପେ ସୁପରିଚିତ । ସେ ଓମାର ଖୈୟାମର ଓଡ଼ିଆ ଅନୁବାଦ କରିଛନ୍ତି । ବଙ୍ଗଳା ନାଟକ ନରନାରାୟଣ, ପରପାରେ, ପାଷାଣୀ, କର୍ଣ୍ଣାର୍ଜୁନ ଆଦିର ଓଡ଼ିଆ ଅନୁବାଦ କରି ବିକ୍ରମ ଥିଏଟରରେ ମଞ୍ଚସ୍ଥ କରିଥିଲେ ।

**୰ ବାସୁଦେବ ବେହେରା :-** ୧୯୧୩-୧୯୭୫- ଭବାନୀପାଟଣା ଜଣେ ପ୍ରତିଷ୍ଠିତ କଳାକାର ଓ ମଞ୍ଚ ନିର୍ଦ୍ଦେଶକ ଭାବରେ କଳାହାଣ୍ଡି ଷ୍ଟେଟ, ପାଟଣା ଷ୍ଟେଟ, ବାମଣ୍ଡା ଏବଂ କଲିକତାରେ ପ୍ରଶଂସିତ ଏବଂ ପୁରସ୍କୃତ । ତାଙ୍କର 'ବ୍ରଜମୋହନ' 'ଋଷିର ଡାକ' 'ବିଧବା ବିବାହ' ଗଣତନ୍ତ୍ର', ପ୍ରକାଶିତ ଏବଂ ଅନୁବାଦ ନାଟକ ଗୁଡ଼ିକ ଅପ୍ରକାଶିତ । ମହାବୀର ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ମରଣୋତ୍ତର ପୁରସ୍କାର ପ୍ରାପ୍ତ ।

**ଗଦାଧର ମିଶ୍ର :-** (୧୯୦୬- ) ଜନ୍ମସ୍ଥାନ ଜୋମନା । ଜଣେ ସିଦ୍ଧ ଓଡ଼ିଆ କବି ରୂପେ ସୁପରିଚିତ । ସେ ସତୀଶ୍ରୀ (୧୯୫୭) ମହାନଦୀ (୧୯୫୮) ଯୌତୁକ (୧୯୫୫) ଅର୍ଦ୍ଧ ନୋଉର (୧୯୮୫) ରମରଜ୍ୟ (୧୯୮୪) ଜୀବନ୍ୟାସ (୧୯୮୫) ପୁସ୍ତକ ଓ ସୀତାରମ (୧୯୮୬) ସୂର ସୌଭଦ୍ର ପ୍ରେମାୟନ, କବିତାବଳୀ, ଚିନ୍ତାଧାରା, ମୋ ପରିଚୟ ଆଦିର ରଚୟିତା ମହାନଦୀ ଓ ସତୀଶ୍ରୀ ତାଙ୍କର ଜାତୀୟ ବାଦୀ କାବ୍ୟ । ୧୯୭୮ ରେ ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ସମ୍ମାନିତ, ୧୯୮୪ ରେ ଯଦୁମଣି ସାହିତ୍ୟ ସଂସଦ ତରଫରୁ ସମ୍ମାନିତ । ସମ୍ବଲପୁରର ରାଘବ ମିଶ୍ରଙ୍କ ଅନ୍ତରଙ୍ଗ ବନ୍ଧୁଥିଲେ ।

**ଦୀନବନ୍ଧୁ ପଟ୍ଟନାୟକ :-** (୧୯୦୭- ) ବୌଦର ନଇକୁଳ ଗାଁରେ ଜନ୍ମ, ଆଜୀବନ ଖଡ଼ିଆଳରେ ରହଣି । ୧୯୩୧ ରେ ଓଡନେଲ୍ କମିଟୀ ସମ୍ମୁଖରେ ଖଡ଼ିଆଳ ଓଡ଼ିଆ ଅଞ୍ଚଳ ବୋଲି କବିରାଜ ପ୍ରୟୋଗଦତ୍ତ ଯୋଷୀଙ୍କ ସହ ରାୟପୁର ଠାରେ ସାକ୍ଷ୍ୟ-ପ୍ରଦାନ । ୧୯୩୪ ରେ ଯୁଗବାଣୀ ପତ୍ରିକାରେ "ଖଡ଼ିଆଳ ଓ ଓଡ଼ିଆ ସାହିତ୍ୟ" ପ୍ରବନ୍ଧ ପ୍ରକାଶ । ସବୁଜ ଯୁଗୀୟ କବିତାର ରଚନା, କବିତା ସଙ୍କଳନ "ଧାରା" ୧୯୮୫ ରେ ପ୍ରକାଶିତ । ମିଲଟାରୀ ଡ଼ାକ୍ତର ରୂପେ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜ ଯାତ୍ରା ।

**କବିରାଜ ପ୍ରୟୋଗଦତ୍ତ ଯୋଷୀ :-** (୧୯୧୩- ) ଖଡ଼ିଆଳରେ ଜନ୍ମ । କାଶୀରେ କବିରାଜୀ ଶାସ୍ତ୍ର ଅଧ୍ୟୟନ । ସାର୍ଙ୍ଗଧର ସଂହିତାର ଟୀକା, ବୈଦ୍ୟକ ପରିଭାଷା

Digitized by srujanika@gmail.com

ପ୍ରଦୀପ, ନାଡ଼ି ବିଜ୍ଞାନ ଓ ରସେନ୍ଦ୍ର ସାର ସଂଗ୍ରହ ପ୍ରଭୃତି ଆୟୁର୍ବେଦ ଗ୍ରନ୍ଥର ପ୍ରଣୟନ ଓ ପ୍ରକାଶ । 'କପଟ ବିବାହ' ନାଟକ ରଚନା । ଖଡ଼ିଆଳ ସାହିତ୍ୟ ସମିତିରେ ପଞ୍ଚାଶ ବର୍ଷ-କାଳ ସାହିତ୍ୟ ସାଧନାରତ । ସଂପ୍ରତି କୋଶଲୀ ଭାଷାର ପ୍ରବୀଣ ଗବେଷକ । ୧୯୮୭-ରେ ଖଡ଼ିଆଳ ଠାରେ କୋଶଲୀ ଭାଷା ସାହିତ୍ୟ ପରିଷଦ ଗଠନକରି 'କୋଶଲ ଭାରତୀ' ପତ୍ରିକା ପ୍ରକାଶନ । ଲେଖକ ସାମ୍ମୁଖ୍ୟ ତଥା ଓଡ଼ିଶା ସାହିତ୍ୟ ଏକାଡେମୀ ଓ ଯଦୁମଣି ସାହିତ୍ୟ ସମିତି, ମହାବୀର ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ।

**କୈଳାସ ଚନ୍ଦ୍ର ଦଣ୍ଡସେନା** :- (୧୯୧୭- ) ନେହେନା ଗ୍ରାମ (ଖଡ଼ିଆଳ)ରେ ଜନ୍ମ । ରଚନାବଳୀ- ନେହେରୁ ପ୍ରୟାଣ, ୯୬ ଆଳି ଗୀତ, ତତ୍ତ୍ୱ ତରଙ୍ଗିଣୀ, ଅଷ୍ଟୋତ୍ତରୀ ଓ ବିଂଶୋତ୍ତରୀ ଭଜନମାଳା, ବାଲିବନ୍ଧ, ଖଡ଼ିଆଳ ବର୍ଣ୍ଣନା, ପ୍ରମୁଖ ।

**ରାମକୃଷ୍ଣ ରଥ** :- ପ୍ରଥମେ ଭବାନୀପାଟଣା ଠାରେ ଓ ପରେ ଜଳତାମୁଣ୍ଡା ଗ୍ରାମରେ ଅବସ୍ଥାନ । ସେ 'ଭାଗ୍ୟଲିପି' ଓ 'ଉଚ୍ଛ୍ୱାସ' ନାମକ ଦୁଇଖଣ୍ଡି ଉପନ୍ୟାସ ରଚନା କରିଛନ୍ତି । 'ବିବିଧ ଭାବନା' କବିତା ସଂକଳନ ତାଙ୍କ କବିତ୍ୱର ସାର୍ଥକ ସମ୍ବାହକ ।

**ପରଶୁରାମ ମୁଣ୍ଡ** :- (୧୯୦୮-୧୯୮୫) ମଣ୍ଡଳ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ପରେ ଖାଶୀବାହାଲ ଓ ଭବାନୀପାଟଣା ଠାରେ ଅବସ୍ଥାନ କରିଥିଲେ । କଳାହାଣ୍ଡିର ସାମାଜିକ, ରାଜନୈତିକ ଓ ସଂସ୍କୃତିକ ଜୀବନ ସହିତ ଓତପ୍ରୋତ ଭାବେ ଜଡ଼ିତ । କଳାହାଣ୍ଡିର ଭୂଇଁଫୋଡ ସଂସ୍କୃତିକୁ ଅବଲମ୍ବନରେ ବାରଯୋଚି ଉପନ୍ୟାସର ସଫଳ ସ୍ରଷ୍ଟା । ୧୯୫୧ ରେ ମୂଲିଆପିଲା ଉପନ୍ୟାସ ଓ ୧୯୮୨ ରେ ବସୁନ୍ଧରାର ମାଟି ତଥା ୧୯୮୩ ରେ 'ମିରନିନା' ଗଳ୍ପ ସଂକଳନ ପ୍ରକାଶିତ । ଏହା ଛଡ଼ା ମୁକ୍ତି ପଥର ଦୁଇଟି ଯାତ୍ରୀ ଉପନ୍ୟାସ ପ୍ରକାଶିତ । ଉହଲେ ସାରଳା, ରଜମୋହନ ଦେଓ, ସାବ୍ୟସାଚୀଗାନ କବିତା ସଂକଳନ ପ୍ରକାଶିତ । ଏହା ଛଡ଼ା ଜଣେ କବି, ପ୍ରାବନ୍ଧିକ ଓ ସମାଲୋଚକ ରୂପେ ଓଡ଼ିଶାରେ ସୁପରିଚିତ । ଅପ୍ରକାଶିତ ଉପନ୍ୟାସ- ରାଇଚସିଂହ, ଚିନ୍ତାଜାନି, ମହାରାଣୀ ନେମଞ୍ଜରୀ, ପାଟରାଣୀ ଅମ୍ଳାନଫୁଲ, ସ୍ୱର୍ଣ୍ଣମୃଗ, ଗାଂଧୀ ବାବା, ମାଧୁରୀ, ଅଭ୍ୟୁଦୟ, ଓ ଦିଗ୍‌ବିଜୟୀ ନାଦିର ଅନ୍ୟତମ । କଳାହାଣ୍ଡିର ଆରଣ୍ୟକ ସଂସ୍କୃତିର ନିଛକ ଚିତ୍ର ତାଙ୍କ ଲେଖନୀରେ ଜୀବନ୍ତ । ନାନା ଦୃଷ୍ଟିରୁ ତାଙ୍କ ରଚିତ 'ମୂଲିଆପିଲା' ଏକ ବିଶିଷ୍ଟ ଉପନ୍ୟାସ । ଶ୍ରୀ ମୁଣ୍ଡଙ୍କର ସର୍ବଶ୍ରେଷ୍ଠ କୃତି ରୂପେ ଏହା ସ୍ୱୀକୃତ । ସେ ଦସ୍ୟୁ ମୋବାରକ ନାମକ ଏକ ନାଟକ ତଥା କବିତା ଶତଦଳ ରଚନା କରିଛନ୍ତି । କଳାହାଣ୍ଡିର ୬୦୦୦ ଶବ୍ଦାବଳୀର ସଂଗ୍ରହ କରି ଶବ୍ଦ କୋଷ ସଂକଳନ କରିଛନ୍ତି । ଏହା ଅଦ୍ୟାପି ଅପ୍ରକାଶିତ ।

Digitized by srujanika@gmail.com

କଳାହାଣ୍ଡି ଲେଖକ କଳା ପରିଷଦ, ଖଡ଼ିଆଳ ସାହିତ୍ୟ ସମିତି, ଯଦୁମଣି ସାହିତ୍ୟ ସଂସଦ ଓଡ଼ିଶା ସାହିତ୍ୟ ଏକାଡେମୀ, ମହାବୀର ସାଂସ୍କୃତିକ ଅନୁଷ୍ଠାନ, ହାଗଖଣ୍ଡ–ବସନ୍ତ ମିଳନ ଉତ୍ସବରେ ଶ୍ରୀ ମୁଣ୍ଡ ସମ୍ବର୍ଦ୍ଧିତ । କଳାହାଣ୍ଡିର ଘୁମୁରାନୃତ୍ୟ ଦଳର ପୁନରୁଦ୍ଧାର କରି ସେ ଘୁମୁରା ଗାତିକାର ରୂପେ 'ସାବ୍ୟସାଚୀ' ଉପାଧିପ୍ରାପ୍ତ ।

**ଭୁବନେଶ୍ୱର ବେହେରା :**– (୧୯୧୯–)ଜନ୍ମ ମୁଣ୍ଡଗଗୁଡ଼ା ଗ୍ରାମରେ । ଜଣେ ବିଶିଷ୍ଟ ଶିକ୍ଷାବିତ୍, ଇଞ୍ଜିନିୟର ତଥା ଦକ୍ଷ ପ୍ରଶାସକ ରୂପେ ତାଙ୍କର ଯେତିକି ଖ୍ୟାତି ରହିଛି ଜଣେ ବିଶିଷ୍ଟ କଥାକାର ରୂପେ ଓଡ଼ିଆ ସାହିତ୍ୟରେ ସେ ଉଚ୍ଚାସନରେ ସମାସୀନ । ଓଡ଼ିଆ ଗଳ୍ପ, ପ୍ରବନ୍ଧ ଓ ରମ୍ୟରଚନା କ୍ଷେତ୍ରରେ ତାଙ୍କ ସୃଷ୍ଟିର ଏକ ସ୍ୱାତନ୍ତ୍ର୍ୟ ଓ ମୌଳିକତା ରହିଅଛି । ତାଙ୍କ ରଚିତ ଋଣ ପରୀକ୍ଷା (୧୯୭୬) ସାମ୍ପ୍ରତିକ ସମାଜର ଶିକ୍ଷା, ସମ୍ପତ୍ତିକୁ ଭିତ୍ତିକରି ରଚିତ କେତେକ ଲଳିତ ନିବନ୍ଧର ସମାହାର । ତାଙ୍କର କଥା ଓ ଲଥା (୧୯୭୮) ସହାବସ୍ଥାନ (୧୯୭୯), ଘର ଘର ଉଡେ ପନତକାନି (୧୯୮୧) ତଥା ଆନସାରୀ ଘୁଘୁ ଓ ଅନ୍ୟାନ୍ୟ ଗଳ୍ପ (୧୯୮୬) ଆଦି ଗଳ୍ପ ସଂକଳନ ତାଙ୍କ ଜୀବନାନୁଭୂତିର ଶିଳ୍ପସିଦ୍ଧ ରୂପାୟନ । ବାସ୍ତବ ଘଟଣା ଓ ଅନୁଭୂତି ତାଙ୍କ ଲେଖନୀରେ ଚିରନ୍ତନ ସୃଷ୍ଟିରୂପେ ପ୍ରତିଭାତ ହୋଇଥାଏ । ପଶ୍ଚିମ ଆଫ୍ରିକାରେ ଓଡ଼ିଆ ଡ୍ରେଙ୍କି ଏକ ସାର୍ଥକ ଭ୍ରମଣ କାହାଣୀ ରୂପେ ବେଶ୍ ଉପଭୋଗ୍ୟ ।

ପ୍ରଂଫେସର ଡ଼: ବେହେରା ସାହିତ୍ୟିକ ରୂପେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ । ସାରଳା ପୁରସ୍କାର କମିଟି ଦ୍ୱାରା ସମ୍ବର୍ଦ୍ଧିତ । ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ତଥା କେନ୍ଦ୍ର ପବ୍ଲିକ ସର୍ଭିସ କମିଶନର ସଭ୍ୟ ଭାବରେ ଡକ୍ଟର ବେହେରଙ୍କର କାର୍ଯ୍ୟ ଉଲ୍ଲେଖନୀୟ ଖଡ଼ିଆଳ ସାହିତ୍ୟ ସମିତି, ଉତ୍କଳ ପାଠକ ସଂସଦ, (୧୯୮୪) ମହାବୀର ସାଂସ୍କୃତିକ ଅନୁଷ୍ଠାନ ତରଫରୁ ସମ୍ବର୍ଦ୍ଧିତ ତଥା ସମ୍ପ୍ରତି ୧୯୮୯ ରେ ନନ୍ଦିଘୋଷ ପୁରସ୍କାର ପ୍ରାପ୍ତ ।

**ପ୍ରତାପ କେଶରୀ ଦେଓ :**– ପୂର୍ବତନ ମହାରାଜ । ଓଡ଼ିଶାର ଜଣେ ପ୍ରଖ୍ୟାତ ଐତିହାସିକ । ତାହାଙ୍କ ପୃଷ୍ଠପୋଷକତାରେ ବେଲଖଣ୍ଡି ଠାରେ ପ୍ରତ୍ନତାତ୍ତ୍ୱିକ ଖନନକାର୍ଯ୍ୟ କରାଯାଇଥିଲା ଓ ଓଡ଼ିଶାରେ ବିଧିବଦ୍ଧ ଇତିହାସ ଗବେଷଣା ନିମନ୍ତେ ପ୍ରକାଶ ପାଉଥିବା Kaling Historical Research Journal ର ଅନ୍ୟତମ ପୃଷ୍ଠପୋଷକ । ଜଣେ ଦକ୍ଷ ପାର୍ଲିଆମେଣ୍ଟାରିଆନ । ଭାରତର ପାର୍ଲିଆମେଣ୍ଟରେ ତାଙ୍କର ଅନୁଭୂତି ତଥା କାର୍ଯ୍ୟନିର୍ବାହଣ ଉପରେ my humbleconti bution ଗ୍ରନ୍ଥ ପ୍ରକାଶିତ ।

ତାଙ୍କର ବହୁ ଗବେଷଣାତ୍ମକ ପ୍ରବନ୍ଧ Orissa historical research Journal ଓ Numesmetic socioty of India ର Journal ରେ ପ୍ରକାଶିତ ।

Digitized by srujanika@gmail.com

**କବିସୌରଭ ଅନୂପସିଂହ ଦେଓ** :– (୧୯୨୦–) ଖଡ଼ିଆଳରଗଡ଼ । ଓଡ଼ିଶାର ବରିଷ୍ଠ ରାଜନୈତିକ ନେତା ତଥା ସମକାଳୀନ ବିଶିଷ୍ଟ ଭାବବାଦୀ କବି ରୂପେ ସେ ସୁପରି-ଚିତ । ତାଙ୍କ ଉମୋଉରିତ କାବ୍ୟ ଚେତନାର ଅମଳିନ ସ୍ୱାକ୍ଷର ନିମ୍ନୋକ୍ତ କବିତା ସଙ୍କଳନରେ ନିହିତ । ଆରତି (୧୯୪୨) ଉର୍ମି (୧୯୪୫) ଇଚିକା (୧୯୪୮), ମୂର୍ଚ୍ଛନା (୧୯୫୭) ତ୍ରିପତ୍ରୀ [୧୯୬୯], ସମୁଚ୍ଚୟ [୧୯୭୮] ବିରହ ବାରିଧି [୧୯୮୫] ପ୍ରକାଶିତ । ଅପ୍ରକାଶିତ ରଚନା ସ୍ପନ୍ଦନ, କବିତାଗୁଚ୍ଛ, ହିଲ୍ଲୋଳ, ଶେଷାର୍ଘ୍ୟ, ରସମଞ୍ଜୁଷା ପ୍ରମୁଖ ।

ତାଙ୍କ ରଚନାବଳୀରେ ଶାଶ୍ୱତପ୍ରେମ, ମାନବୀୟ ପ୍ରେମ-ରହସ୍ୟବାଦ, ବାସ୍ତବ ବାଦ, ଜାତୀୟବାଦ ତଥା ମୃତ୍ୟୁଚେତନାର ବିଚିତ୍ର ମର୍ଚ୍ଛନା ଅନୁରଣିତ ।

ଓଡ଼ିଶାର ବହୁ ଅନୁଷ୍ଠାନ ଦ୍ୱାରା ସେ ସମ୍ମାନିତ । ୧୯୭୧ ରେ ବ୍ରଜମୋହନ ସାହିତ୍ୟ ସମିତି ଦ୍ୱାରା କବି ସୌରଭ ଉପାଧିରେ ଭୂଷିତ । ୧୯୭୨ ରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା, ୧୯୭୯ ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତଥା ୧୯୮୭ ରେ ଉତ୍କଳ ପାଠକ ସଂସଦ ଦ୍ୱାରା ସମ୍ମାନିତ ଓ ଉପାୟନ ପ୍ରାପ୍ତ ।

**ଈଶ୍ୱର ଦାସ** :– ଏହାଙ୍କ ରଚିତ ରାମାୟଣ ଚରିତ ତଥା ଅନ୍ୟାନ୍ୟ କେତେକ କାବ୍ୟ ଜେଲ୍ଲ ଅଞ୍ଚଳରେ ରହିଅଛି ।

**ଚନ୍ଦ୍ରମଣି ପଟ୍ଟନାୟକ** :– ପ୍ରଖ୍ୟାତ କବି । ✓ପଟ୍ଟନାୟକଙ୍କ ଅନେକ କବିତା ଉତ୍କଳ ସାହିତ୍ୟରେ ପ୍ରକାଶିତ ।

**କନ୍ଦର୍ପ ପଣ୍ଡା** :– ସାଗୁନଭଡ଼ି । ଘମୂର ଜନ୍ମ ବିଧାନ [୧୯୫୪] ତଥା ଅନ୍ୟାନ୍ୟ ୧୪-ଗୋଟି ସଙ୍ଗୀତାବଳୀ ପ୍ରକାଶିତ ।

**ଡ଼ଃ ସୋଟମେଶ୍ୱର ବେହେରା** :– [୧୯୧୧-୧୯୮୫] ଗଡ଼ାବନ୍ଧ ଗ୍ରାମରେ ଜନ୍ମ । ସଂସ୍କୃତ ବାଲ୍ମିକୀ ରାମାୟଣର ଚତୁର୍ଦ୍ଦଶାକ୍ଷରୀ ଅନୁବାଦ କରିପ୍ର କାଶ କରିଥିଲେ । ମହାତ୍ମା ଗାନ୍ଧୀଙ୍କୁ ଦେବଦୂତ ରୂପେ କଳ୍ପନା କରି ଜାତିର ଜନକ [୧୯୬୧] କାବ୍ୟରଚନା କରି-ଥିଲେ । ତାଙ୍କର ଯୁଗଜ୍ୟୋତି ଜବାହର, ପୁଷ୍ପପରାଗ, ସରୋଜ ସୁନ୍ଦରୀ, ମେଘଦୂତ, ସମୁଖ ଏକ ଏକ ମନୋଜ୍ଞ କାବ୍ୟ ସଂକଳନ । 'ଅନ୍ଧାରିଘର' ତାଙ୍କ ରଚିତ ଏକ ସାର୍ଥକ ଉପନ୍ୟାସ । ସମକାଳୀନ ପତ୍ର ପତ୍ରିକାରେ ତାଙ୍କ ରଚନାବଳୀ ଉପଲବ୍ଧ । ତାଙ୍କ ରଚିତ ଭ୍ରମଣ କାହାଣୀ ବଦ୍ରିନାଥ ଯାତ୍ରା । ୧୯୭୬ ରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ବର୍ଦ୍ଧିତ ।

Digitized by srujanika@gmail.com

ଆନନ୍ଦ ମୋହନ ବାରିକ :– [୧୯୨୭–୧୯୮୩] ଚଲନ ପଡ଼ାରେ ଜନ୍ମ । ''ଭକ୍ତି-ଭକ୍ତି'' କାବ୍ୟ ରଚନା ଓ ପ୍ରକାଶ । ଏହାଛଡ଼ା ପ୍ରାୟ ଦଶଗୋଟି କାବ୍ୟ ଅପ୍ରକାଶିତ ।

ମୋହିନୀ ମୋହନ ମହାପାତ୍ର :– [ଖଡ଼ିଆଳ । କବି ଶିବ ପ୍ରସାଦ ପ୍ରହରାଜଙ୍କ ପ୍ରପୌତ୍ର । କବି ଶିବ ପ୍ରସାଦ ଏକ ବିସ୍ମୃତ ପ୍ରତିଭା ସଂକଳନର ସଂପାଦନା ଓ ପ୍ରକାଶ [୧୯୮୩], ଅନୂପ ସାହିତ୍ୟ ପରିକ୍ରମା ପୁସ୍ତକ ରଚନା, ବିଭିନ୍ନ ପତ୍ର ପତ୍ରିକାରେ ଇଂରାଜୀ ଓ ଓଡ଼ିଆରେ ପ୍ରବନ୍ଧ ପ୍ରକାଶିତ ୧୯୮୫ ରେ ରାଜ୍ୟପାଳଙ୍କ ଦ୍ୱାରା କୃତୀ ଶିକ୍ଷକ ରୂପେ ରାଜ୍ୟ ପୁରସ୍କାର ପ୍ରାପ୍ତ । ବୋର୍ଡ ଅଫ୍ ସେକେଣ୍ଡାରୀ ଏଡୁକେସନ ଓଡ଼ିଶାର ସଦସ୍ୟ, ଓଡ଼ିଶାର ବହୁ ଅନୁଷ୍ଠାନ ସହ ସଂପୃକ୍ତ । ମହାବୀର ସାଂସ୍କୃତିକ ଅନୁଷ୍ଠାନ, ଖଡ଼ିଆଳ ସାହିତ୍ୟ ସମିତି ତଥା ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ।

ନାଟ୍ୟରଶ୍ମି ପ୍ରଫୁଲ୍ଲକୁମାର ରଥ :– [୧୯୩୬– ] ଭବାନୀପାଟଣାର ମନ୍ଦାର-ବଗିଚା ପଡ଼ାରେ ବାସସ୍ଥାନ । ଓଡ଼ିଶା ବିଖ୍ୟାତ ପ୍ରୟୋଗବାଦୀ ଓ ମୁକ୍ତକ ନାଟ୍ୟକାର ରୂପେ ସୁପରିଚିତ । ପ୍ରଥମେ ରହସ୍ୟ ଉପନ୍ୟାସ ଜଙ୍ଗଲ ସିରିଜ୍, କଳାବଜାର ସିରିଜ୍ ଲେଖିଥିଲେ । ୧୯୫୪ ମସିହାରେ ପ୍ରଥମେ ଦୁଃଖିନୀ ନାଟକ ରଚନା କଲେ । ତାଙ୍କ ପ୍ରଥମ ପ୍ରକାଶିତ ନାଟକ 'ରାଜମାଳ' । ଗତ କୋଡ଼ିଏ ବର୍ଷଧରି ତାଙ୍କ ପାରଂପରିକ ଓ ପ୍ରୟୋଗବାଦୀ ନାଟକ ଓଡ଼ିଆ ନାଟ୍ୟ ଆନ୍ଦୋଳନ କ୍ଷେତ୍ରରେ ଉଲ୍ଲେଖନୀୟ । ସେଗୁଡ଼ିକ-ସ୍ୱର୍ଣ୍ଣଚମ୍ପା, ସିନ୍ଦୁରଟୋପା, ସଂଘର୍ଷ, ପଳାତକ, ଫେରାର୍ ଆସାମୀ, ଧରମ ପୁଅ, ରକ୍ତବିନ୍ଦୁ, ଶୂନ୍ୟ ଆକାଶ ଅମର ଆଖି, ବିଷମ ବାହୁ, ସାତତାଳ ପାଣି, ବନ୍ଦିନୀ, ଦେବଯାନୀ, ଓ ଆଜି ଓ କାଲି ।

ଉତ୍ତର ସତୁରୀର ନାଟକ ଗୁଡ଼ିକରେ ନାଟ୍ୟକାରଙ୍କ ମୁକ୍ତକଧାରାର ନାଟକ ରଚନା ଓ ମଞ୍ଚାୟନ ଓଡ଼ିଆ ନାଟକ କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ଅବଦାନ । ତାଙ୍କର ଶବପଢ଼ିଛି ଘରିଛକ, ସହରର ଅଜଗର, ରାତିକୁକୁର ସୁବର୍ଣ୍ଣ କଙ୍କଣ, ଛେଳିଙ୍କ ମନ୍ତ୍ରୀ, ଦାଦନଶ୍ରମୀକ ପି. ଡବଲ୍ୟୁ ଡ଼ି. ଶରଶଯ୍ୟା, ସ୍ୱର୍ଗକୁ ଯାଅହେ ପାପୀମାନେ, ଏକ ପଳାୟନ ବାଦୀ ପୁରୁଷର ଶେଷ ଚିତ୍କାର ଆଦି ଓଡ଼ିଆ ମୁକ୍ତକ ନାଟକର ପ୍ରତିନିଧି ମୂଳକ ରଚନା । ଗାନ୍ଧୀ-ଲୋହିଆ ସମର୍ଥିତ ଗଣତାନ୍ତ୍ରୀକ ସମାଜବାଦୀ ଚିନ୍ତାଧାରା ଦ୍ୱାରା ତାଙ୍କ ନାଟକାବଳୀ ଅନୁପ୍ରାଣିତ ।

ସେ ହିନ୍ଦୀର ପ୍ରଖ୍ୟାତ ଲେଖକ ଓଁକାର ଶରଦଙ୍କ 'ଡା: ଲୋହିଆ' ହିନ୍ଦୀ ପୁସ୍ତକର ଓଡ଼ିଆ ଅନୁବାଦ କରିଛନ୍ତି । ୧୯୭୧ ରେ ବ୍ରଜମୋହନ ସାହିତ୍ୟ ସମିତି ଦ୍ୱାରା ନାଟ୍ୟରଶ୍ମି

Digitized by srujanika@gmail.com

ଉପାଧିରେ ଭୂଷିତ । କଳାହାଣ୍ଡି ଲେଖକ କଳା ପରିଷଦ, ମହାବୀର ସାଂସ୍କୃତିକ ଅନୁଷ୍ଠାନ, ଓଡ଼ିଆ ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ପୁରସ୍କୃତ । ତାଙ୍କ ନାଟକ କେତୋଟି ହିନ୍ଦୀ ତଥା ପ୍ରାଦେଶିକ ଭାରତୀୟ ଭାଷାରେ ଅନୂଦିତ ।

**ବିପିନ ବିହାରୀ ଖମାରୀ** :- [୧୯୩୩] ଜନ୍ମସ୍ଥାନ ଚୁଗଗାଁ । ସମକାଳୀନ ଓଡ଼ିଆ କବି ରୂପେ ତାଙ୍କ ଲେଖନୀରୁ ସହଯୋଗୀର ଚିଠି, ଆଇବମ [୧୯୭୬] ଷଣ ସଉଜନେ. ନୀଳପଦ୍ମ, ମଧ୍ୟାହ୍ନର ରଙ୍ଗ, ମାନସୀ ଆଦି ପ୍ରକାଶିତ । ପ୍ରବନ୍ଧ ତଥା ଭ୍ରମଣ କାହାଣୀ ସ୍ୱରୂପ ସମବାୟିକା, ସମବାୟ ମଜଲିସ ସମବାୟ ଶିକ୍ଷା, ଅଷ୍ଟ୍ରେଲିଆ ଅନୁଭୂତି ଆଦିର ରଚୟିତା ।

**ନାରାୟଣ ପ୍ରସାଦ ପଟ୍ଟନାୟକ** :- [ ] ଭବାନୀପାଟଣା ସାଂପ୍ରତିକ ଓଡ଼ିଆ କ୍ଷୁଦ୍ର ଗଳ୍ପର ଏକ ସାର୍ଥକ ସ୍ରଷ୍ଟା । ତାଙ୍କ ରଚିତ ବିବର୍ଣ୍ଣ ପୃଥିବୀ ପ୍ରଥମ ଗଳ୍ପ ସଂକଳନ । ଓଡ଼ିଶାର ବହୁ ପ୍ରତିଷ୍ଠିତ ପତ୍ର ପତ୍ରିକାରେ ତାଙ୍କ ଗଳ୍ପ ପ୍ରକାଶିତ । ବ୍ୟକ୍ତି ଜୀବନର ଅସହାୟତା, ମନସ୍ତାତ୍ତ୍ୱିକ ଚିନ୍ତା ଓ ପ୍ରତିବାଦୀ ଚରିତ୍ର ଗୁଡ଼ିକ ତାଙ୍କ ଗଳ୍ପର ମୁଖ୍ୟ ଉପଜୀବ୍ୟ ।

**ଗୀତକାର ଉମାଶଙ୍କର ପଣ୍ଡା** :- [୧୯୩୧] ଓଡ଼ିଶାର ବହୁଚର୍ଚ୍ଚିତ ରୋମାଣ୍ଟିକ କବି, ଉପନ୍ୟାସକାର ଓ ଅନୁବାଦକ । ତାଙ୍କ ଲେଖନୀରୁ କେକା- କୁହୁ-କାକଳି, ନିଃସଙ୍ଗ ନୂପୁର, ଇମନକଲ୍ୟାଣ, ନଦୀ ଉପନଦୀ, ଦୁଇନାରୀ [ଅନୁବାଦ] ତଥା କେତେକ ଶିଶୁ ସାହିତ୍ୟ ପ୍ରକାଶିତ । ମହାବୀର ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ଏବଂ ଓଡ଼ିଆ ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ।

**ବିଷ୍ଣୁମୋହନ ଦାସ** :- [୧୯୪୬] ଜଣେ ଖ୍ୟାତନାମା ଲେଖକ । ପ୍ରକାଶିତ ଗ୍ରନ୍ଥ ମାନେ ହରି ରଖେକିଏ, ଓଢ଼ଣାତଳେ, ବର୍ଣ୍ଣସ୍ତବକ, କୁସୁମ ଦେଇ, ଜର୍ଜ୍ଜ ପ୍ରସୂନ, ନିର୍ଣ୍ଣିଙ୍କାର, ଜାତି ଅଜାତି, ପଞ୍ଚାବଳି, ଅପ୍ରକାଶିତ ରଚନା ମାନଙ୍କ ମଧ୍ୟରେ– ରଖେ ହରି ମାରେ କିଏ, ସରିତପ୍ରତି ଇତ୍ୟାଦି ବାଇଶୋଟି ଗ୍ରନ୍ଥ ।

**ନାରାୟଣ ମିଶ୍ର** :- [ମେଦନପୁର ରାମପୁର] ନାଟ୍ୟକାର, ଅଭିଶପ୍ତ ଚନ୍ଦ୍ର ନାଟକ [୧୯୭୩] ପ୍ରକାଶିତ । ଅପ୍ରକାଶିତ ପୁସ୍ତକ- ବେଶି ସହାର, ଛାୟା ଚଣ୍ଡ ରୁଣି, ଜୟ-ପରାଜୟ, ବୃତ୍ରସଂହାର, ଅପ୍ରକାଶିତ ଅନୁବାଦ ନାଟକ ମାନଙ୍କ ମଧ୍ୟରେ ମହାରାଜ ନନ୍ଦକୁମାର, ଅନାରକଲି ସିରାଜର ସ୍ୱପ୍ନ ।

Digitized by srujanika@gmail.com

**ଯୁଗଳ କିଶୋର ଯୋଷୀ** :- [୧୯୪୧]- ପ୍ରଖ୍ୟାତ କବି ତଥା ଗୀତିକାର । ପ୍ରକାଶିତ ଗ୍ରନ୍ଥ ମନବୀଣା, ଘୁମୁର ଗୀତିକା ମିନିଯାଇଁ କବିତା ।

**ନାରାୟଣ ଭରସା ମେହେର** :- (୧୯୨୧) ସିନାପାଲିର କବି ମନୋହର ମେହେରଙ୍କ ପୁତ୍ର । ସେ ସତ୍ୟନାରାୟଣ ବ୍ରତକଥା, ପଲ୍ଲୀପତନ କାରିକା, ବନ୍ଧ୍ୟାଚିକିତ୍ସା ପଦ୍ଧ, ରବିନାରାୟଣ ସ୍ତବ, ଦଶାବତାର ସ୍ତବ, ମହାଲକ୍ଷ୍ମୀ ସ୍ତୁତି, ସତୀ ସାବିତ୍ରୀ ପୁରାଣ ଆଦି ରଚନା କରିଛନ୍ତି । ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ୧୯୮୦ ରେ ସମ୍ବର୍ଦ୍ଧିତ । ମହିମା ସାଗର, ସର୍ବ ସର୍ବାଗ୍ନିଗୀତ, ନାରାୟଣ ଭଜନାବଳୀ ଓ ଶିଶୁଶିକ୍ଷା ଗୀତ ଅପ୍ରକାଶିତ ।

**ରାଜକିଶୋର ପଣ୍ଡା** :- କୁନାର ଚିଠି ନାମକ ଶିଶୁ ସଂଗୀତ ପୁସ୍ତକର ରଚୟିତା । ଏହାଛଡ଼ା ଅନେକ ଲେଖା ଅପ୍ରକାଶିତ ।

**ମହମ୍ମଦ ସିଦ୍ଧିକ** :- (        ) ଭବାନୀପାଟଣାରେ ଘର । ଛନ୍ଦାହାର ଅଗଷ୍ଟ ପନ୍ଦର, କଳାହାଣ୍ଡି, କବିତାଞ୍ଜଳି ପ୍ରକାଶିତ । ମହାବୀର ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ।

**କୁଶ ବେହେରା** :- (୧୯୧୫) କଦାଳିର ଦାଗ ଭପ ଆସର ପ୍ରଣେତା । ମହାବୀର ସାଂସ୍କୃତିକ ଅନୁଷ୍ଠାନ ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ବର୍ଦ୍ଧିତ । ରାଜ୍ୟ ସରକାରଙ୍କ ଠାରୁ ପ୍ରତିଭାପେନସନ ପ୍ରାପ୍ତ ।

**ରାସବିହାରୀ ବେହେରା** :- ୧୯୬୪ ରେ 'ବିଜୟା' ଉପନ୍ୟାସ ପ୍ରକାଶିତ । ପ୍ରବନ୍ଧ ସଂଗ୍ରହ ପ୍ରକାଶାଧୀନ । ମହାବୀର ସାଂସ୍କୃତିକ ଅନୁଷ୍ଠାନର ପ୍ରତିଷ୍ଠାତା, କଳାହାଣ୍ଡି ଲେଖକ କଳା ପରିଷଦର ସଭାପତି, କଳାହାଣ୍ଡିର ରାଜନୀତି, ସାହିତ୍ୟ, କ୍ରୀଡ଼ା, ସାମାଜିକତା ଓ ଲୋକ ସାଂସ୍କୃତିକ କାର୍ଯ୍ୟକ୍ରମରେ ଉଲ୍ଲେଖନୀୟ କୃତିତ୍ୱ । ସଫଳ ରାଜନୈତିଜ୍ଞ ରୂପେ ରାଜ୍ୟ ଓ କେନ୍ଦ୍ରରେ ପ୍ରତିନିଧିତ୍ୱ ।

**ଚଣ୍ଡୀଚରଣ ବଶି** :- ଗ୍ରାମ ସିଙ୍ଗଝର । ୧୯୮୫ ରେ 'ଗୀତାଜାଗୃତି' ପୁସ୍ତକ ପ୍ରକାଶିତ । ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ୧୯୮୭ ରେ ସମ୍ମାନିତ ।

**ମୋକ୍ଷରାମ ନାୟକ** :- କୁନାଗଡ଼ । ଅପୂର୍ବାନୁପ୍ରାସଯୁକ୍ତ 'ଅମରୀଶ' କାବ୍ୟ ରଚନା ଓ ପ୍ରକାଶନ [୧୯୬୮] ।

**ନୀଳ ଲୋହିତ ସିଂହ ଦେଓ** :- ଖଡ଼ିଆଳ ରାଜପରିବାରର ପଞ୍ଚାୟତ । କବି ସୌରଭ ଅନୁଜଙ୍କ ମଧ୍ୟମ ସନ୍ତାନ । ପ୍ରକାଶିତ କାବ୍ୟ କବିତା ତୃଷ୍ଣା [୧୯୮୩] ଛାୟା

Digitized by srujanika@gmail.com

[୧୯୮୦] ଓ ଅନ୍ତର୍ବ୍ୟଥା [୧୯୮୫] । ଏହାଛଡ଼ା ଅନେକ କବିତା ପତ୍ର ପତ୍ରିକାରେ ପ୍ରକାଶିତ ।

**ଶୁଭେନ୍ଦୁ ମୁଣ୍ଡ** :– [୧୯୫୧– ] ସମକାଳୀନ ଓଡ଼ିଆ କବି ଓ ଗାଳ୍ପିକ । ପ୍ରକାଶିତ କବିତା ସଂକଳନ ଶବ୍ଦ ନିଃଶବ୍ଦ, 'ଛକ' 'ଅଣୁଗଳ୍ପର ସମାହାର] ସାମାବଦ୍ଧ [ଗଳ୍ପ-ସଂକଳନ] ଓଡ଼ିଶାର ପ୍ରତିଷ୍ଠିତ ପତ୍ର ପତ୍ରିକାରେ କବିତା ଓ ଗଳ୍ପ ପ୍ରକାଶିତ । ଯୁବଲେଖକ ସମ୍ମିଳନୀ ୧୯୭୩ ର ସଂପାଦକ ତଥା ଓଡ଼ିଶା ସାହିତ୍ୟ ଏକାଡେମୀ ଓ ଓଡ଼ିଶାର ବହୁ ଅନୁଷ୍ଠାନ ସହ ସଂପୃକ୍ତ ।

**ଶଶାଙ୍କ ଶେଖର ପଣ୍ଡା** :– ପ୍ରକାଶିତ କବିତା ଗ୍ରନ୍ଥ ନୀଳନିର୍ବନ୍ଧ ଓ ଏକାକୀ ଈଶ୍ୱର । ସଂପ୍ରତି INTACH ; ଓଡ଼ିଶାର ସଂଯୋଜକ ।

**ଉତ୍ତମ କୁମାର ପ୍ରଧାନ** :– ପ୍ରତିଷ୍ଠିତ ଓଡ଼ିଆ ଗାଳ୍ପିକ । ପ୍ରଥମ ଗଳ୍ପ ସଂକଳନ 'ବୁଢ଼ିଆଣି ଓ ବୃଦ୍ଧ ପ୍ରଜାପତି' ।

**୬ ଦାଶରଥି ମୁଣ୍ଡ** :– କ୍ୟାକଟସ୍‌ର ସଲିଲକି ନାଟକ ପାଇଁ ମରଣୋପରାନ୍ତ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ପୁରସ୍କୃତ । ଅନେକ ସୃଜନାତ୍ମକ ରଚନା ଅପ୍ରକାଶିତ ।

**ଯଶୋଧାରା ମିଶ୍ର** :– ସମକାଳୀନ ସୁବିଖ୍ୟାତ ଗାଳ୍ପିକା । ତାଙ୍କ 'ଦୁଇ ପୁଅ ଓ ଅନ୍ୟାନ୍ୟ ଗଳ୍ପ' ତଥା 'ପକ୍ଷୀଜନ୍ମ' ଉପନ୍ୟାସ ପ୍ରକାଶିତ । ସାଂପ୍ରତିକ ପତ୍ର ପତ୍ରିକାରେ ଗଳ୍ପ ପ୍ରକାଶିତ ।

**ବିରଂଚି ନାରାୟଣ ପଣ୍ଡା** :– ବାଜମର । ସତ୍ୟସନ୍ଧ ଭୀଷ୍ମ ନାଟକ ପ୍ରକାଶିତ । ପତ୍ର ପତ୍ରିକାରେ ଓଡ଼ିଆ କବିତା ପ୍ରକାଶିତ ।

**ଇରଫାନ ମହମ୍ମଦ** :– ଖଡ଼ିଆଳ । 'ଶକ୍ତି ସଂପନ୍ନା' କାବ୍ୟ ୧୯୮୫ ରେ ପ୍ରକାଶିତ ।

**ମୁନିର ବିଶ୍ୱବନ୍ଧୁ** :– [୧୯୫୩–] କବି ଓ କଥାକାର । ପ୍ରକାଶିତ ଉପନ୍ୟାସ ଅନେକ ଗତି ଓ କବିତା ସଂକଳନ 'ଅରଣ୍ୟ ଶିଖା' । 'ସବୁଜ' ଓ 'ଗୋଲାପ' ପତ୍ରିକାର ସଂପାଦନା । ଓଡ଼ିଶାର ବିଭିନ୍ନ ସାହିତ୍ୟ ପତ୍ରିକାରେ ଗଳ୍ପ ଓ କବିତାଦି ପ୍ରକାଶିତ । ଆକାଶବାଣୀ ଜୟପୁର ତଥା SCERT ଭୁବନେଶ୍ୱର ସହିତ ସାହିତ୍ୟ କର୍ମରେ ସଂପୃକ୍ତ । ବିଭିନ୍ନ ପତ୍ରିକାରେ ଧାରାବାହିକ ଲେଖା ପ୍ରଦାନ ।

Digitized by srujanika@gmail.com

**ଶ୍ରୀମତୀ ରାଜଶ୍ରୀ ଦେବୀ** :- ଖଡ଼ିଆଳର ପ୍ରଜାତାନ୍ତ୍ରିକ ହିତାମିତ୍ର ପ୍ରସାଦ ସିଂହଦେଓଙ୍କ ଯୁବରାଣୀ । କବୟିତ୍ରୀ ଓ ପ୍ରାବନ୍ଧିକା । ୧୯୮୩ ରେ ତାଙ୍କ ରଚିତ 'ଖଡ଼ିଆଳର ଇତିହାସ ପ୍ରବନ୍ଧ ପୁସ୍ତକ ପ୍ରକାଶ । ଝଙ୍କାର, ମାନସ, କୈବଲ୍ୟ, ନବଲିପି, ନଗର ଆଦିରେ କବିତା ପ୍ରକାଶ ।

**ଉମେଶ ଶତପଥୀ** :- ଭବାନୀପାଟଣା । କୋଶଳୀ ଭାଷାରେ ନାଟକ ରଚନା । ବୋବା ଭଉଣି ଦେଲେ, ଦେଖ ଦରପନ କେନ୍ତା ଚକମ, ଇଟା କେଡା ହେଇରେ ଇତ୍ୟାଦି ଛୋଟ ନାଟକ ରଚନା ।

**ଜୟନ୍ତ ବେହେରା** :- ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ କବିତା, ପ୍ରବନ୍ଧ ଓ ଗଳ୍ପ ପ୍ରକାଶିତ । ଓଡ଼ିଶାର ମୁଖ୍ୟ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ସହ ସମ୍ପୃକ୍ତ । ମହାବୀର ସାଂସ୍କୃତିକ ଅନୁଷ୍ଠାନର ସଭାପତି ରୂପେ "ଭାରତ ଉତ୍ସବ" ମସ୍କୋରେ ୧୯୮୭ ରେ ଘୁମୁରା ନୃତ୍ୟର ପ୍ରତିନିଧିତ୍ୱ, ଏହାପୂର୍ବରୁ ୧୯୮୨ ରେ ଘୁମୁରା ଦଳର ଅଧିନାୟକତ୍ୱ । ଘୁମୁରା ନୃତ୍ୟକୁ ସମଗ୍ର ଭାରତ ବର୍ଷରେ ପରିଚିତ କରାଇବାରେ ଅବଦାନ ଅତୁଳନୀୟ । ଓଡ଼ିଶା ସଂଗୀତ ନାଟକ ଏକାଡେମୀ ସଭ୍ୟ । ଓଡ଼ିଆ ସାହିତ୍ୟ ଏକାଡେମୀ ଏବଂ ଓଡ଼ିଆ ଲଳିତ କଳା ଏକାଡେମୀ ପ୍ରତିନିଧିତ୍ୱ । ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ସମ୍ମାନିତ । ଲେଖକ ପଞ୍ଚଯାଞ୍ଜୁତା, ଗିରିଝର, ପତ୍ରିକାର ସମ୍ପାଦନା, ଆକାଶବାଣୀ ଜୟପୁର ତଥା, SCERT କର୍ମଶାଳାରେ ତାଲିମ ପ୍ରାପ୍ତ ।

**ଡଃ ହରେକୃଷ୍ଣ ମେହେର** :- [୧୯୫୬–] ନୈଷଧ କାବ୍ୟରେ ଦର୍ଶନ ଶୀର୍ଷକ ନେଇ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ପିଏଚ୍. ଡ଼ି. ଉପାଧି ପ୍ରାପ୍ତ । ରାମରକ୍ଷା ସ୍ତୋତ୍ର, ଗାୟତ୍ରୀ ସହସ୍ର ନାମ ପ୍ରକାଶିତ । ସମ୍ପ୍ରତି Philosophical Reflections in Naisadha Charita ପୁସ୍ତକ ୧୯୮୯ ରେ କଲିକତାରୁ ପ୍ରକାଶିତ । କାଳିଦାସଙ୍କ କୁମାର ସମ୍ଭବ, ଋତୁସଂହାର ଓ ମେଘଦୂତ କାବ୍ୟର ଓଡ଼ିଆ ଅନୁବାଦ । ଭର୍ତ୍ତୃହରିଙ୍କ ଶୃଙ୍ଗାରଶତକର ପଦ୍ୟାନୁବାଦ । ଗଙ୍ଗାଧରଙ୍କ ତପସ୍ୱିନୀର ଇଂରାଜୀ ଅନୁବାଦ କରିଛନ୍ତି ।

**ଡଃ ଅର୍ଜୁନ ଯୋଶୀ** :- 'ଓଡ଼ିଶାର ସଂସ୍କୃତି ଓ ଐତିହ୍ୟ' ଅସୀମର ଆହ୍ୱାନ, Sculptural Art of Khinjilikolta, History and Culture of Khichhing (Ph. D. thesis) ପ୍ରକାଶିତ ।

**ବଳଭଦ୍ର ମହାଋଷ** :- କବି ଓ ପ୍ରାବନ୍ଧିକ । କବି ଶିବନାରାୟଣ ଏକ ସମୀକ୍ଷା ୧୯୮୩ ରେ ଖଡ଼ିଆଳରୁ ପ୍ରକାଶିତ ।

Digitized by srujanika@gmail.com

